୰ ମହାଦେବ ଦାସ କୃତ

# କାର୍ତ୍ତିକ ମାହାତ୍ମ୍ୟ

ଶ୍ରୀ ଜଗନ୍ନାଥ ସିଂହଙ୍କ ଦ୍ୱାରା
ନୂତନଭାବେ ପ୍ରକାଶିତ



ପ୍ରକାଶକ

## ଓଡ଼ିଶା ଜଗନ୍ନାଥ କମ୍ପାନୀ

ବାଲୁବଜାର, କଟକ-୨

ମୂଲ୍ୟ ଟ ୨.୦୦ ଦୁଇଟଙ୍କା ମାତ୍ର

# କାର୍ତ୍ତିକ ମାହାତ୍ମ୍ୟ

## ପ୍ରଥମ ଅଧ୍ୟାୟ

—ସ୍ତବ—

ଶୁକ୍ଳାମ୍ବରଧରଂ ବିଷ୍ଣୁଂ ଶଶୀବର୍ଣ୍ଣଂ ଚତୁର୍ଭୁଜଂ ।
ପ୍ରସନ୍ନବଦନଂ ଧ୍ୟାୟେତ୍ ସର୍ବବିଘ୍ନୋପଶାନ୍ତୟେ ॥
ବ୍ୟାସାୟ ବିଷ୍ଣୁରୂପାୟ ବ୍ୟାସରୂପାୟ ବିଷ୍ଣବେ ।
ନମୋ ବୈ ବ୍ରହ୍ମନିଧୟେ ବଶିଷ୍ଠାୟ ନମୋନମଃ

—ସ୍ନାନ ମନ୍ତ୍ର—

ବୈକୁଣ୍ଠେ ଚ ପ୍ରୟାଗେ ଚ ତଥା ବଦରିକାଶ୍ରମେ ।
ଇଦଂ ବିଷ୍ଣୁର୍ବିଚକ୍ରମେ ତ୍ରେଧା ସନ୍ନିଦଧେ ପଦଂ ॥
ତୈରେବ ସହିତୈଃ ସର୍ବେ ମୁନିବେଦମଖୈ ନତୈଃ ।
କାର୍ତ୍ତିକେଽହଂ କରିଷ୍ୟାମି ପ୍ରାତଃସ୍ନାନଂ ଜନାର୍ଦ୍ଦନ ।
ପ୍ରୀତ୍ୟର୍ଥଂ ତବ ଦେବେଶ ଦାମୋଦର ମୟା ସହ ।
ଧ୍ୟାତ୍ୱାହଂ ତ୍ୱାଂ ଚ ଦେବେଶ ଜଲେଽସ୍ମିନ୍ ସ୍ନାତୁମୁଦ୍ୟତଃ ॥
ତବପ୍ରସାଦତ୍ ପାପଂ ମେ ଦାମୋଦର ବିନଶ୍ୟତୁ ।
ନିତ୍ୟେ ନୈମିତ୍ତିକେ କୃଷ୍ଣ କାର୍ତ୍ତିକେ ପାପନାଶନଂ ॥

—ଅର୍ଘ୍ୟ ମନ୍ତ୍ର—

ନମଃ କମଳନାଭାୟ ନମସ୍ତେ ଜଳଶାୟିନେ ।
ନମସ୍ତେଽସ୍ତୁ ହୃଷିକେଶ ଗୃହାଣାର୍ଘ୍ୟଂ ନମୋସ୍ତୁତେ ॥

ନମସ୍ତେ ଦେବ ଦାମୋଦର । ଯା ନାମ ଶରଣ ସୋଦର ॥
ଅଶେଷ ବ୍ରହ୍ମାଣ୍ଡର ନାଥ । ଯାର ଚରିତ ପୁଣ୍ୟ ପଥ ॥
ଆରତଜନ ପରିତ୍ରାଣ । ଅଭୟ ପଙ୍କଜ ଚରଣ ॥
କମଳା ଆଶ୍ରେ ରହି ନିତ୍ୟେ । ବ୍ରହ୍ମାଦି ସୁର ମୁନି ଯେତେ ॥
ପୂଜନ୍ତି ଯେଉଁ ପଦ୍ମ ପାଦେ । କାଳ ବଞ୍ଚନ୍ତି ଅପ୍ରମାଦେ ॥
ସେ ପାଦେ ମହାଦେବ ଦାସ । ସ୍ତୁତି ପଠନେ କଲ୍ପ ଆଶ ।
ସ୍ୱଭାବେ ଶୂଦ୍ର କୁଳେ ଜନ୍ମି । ନିରତେ ମାୟା ମୋହେ ଭ୍ରମି ॥
କର୍ମ ଅଜ୍ଞାନ ଜାଲେ ପଡ଼ି । ଆତ୍ମାର ନିଜ ଗତି ଛାଡ଼ି ॥
ଆକୁଳେ ବିସ୍ମରଇ ଚିତ୍ତେ । ସଂସାରୁ ତରିବି କେମନ୍ତେ ॥
ଅଶେଷ ପରମ କାରଣ । ଯା ନାମ ସଙ୍କଟ ତାରଣ ॥
ବିପଦ ମୋଚନ ଯେ ପାଦ । ଆଶ୍ରୟେ ନ ଲାଗେ ପ୍ରମାଦ ॥
ତେଣୁ ମୁଁ ଭବ ଭୟ ତ୍ରାସେ । ଶରଣ ପାଦ ପଦ୍ମ କୋଷେ ॥
ସୁଜନେ ଜନେ କର ଦୟା । ତୁମ୍ଭେ ଯେ ସ୍ୱଭାବେ ନିର୍ମାୟା ॥
ତୁମ୍ଭର ପାଦେ ମୋର ଆଶ । ମୋତେ ରଖିବ ତୁମ୍ଭ ପାଶ ॥
ତୁମ୍ଭର ଦୟା ଅପ୍ରମିତେ । ହରି ଚରିତ ରସ ଗୀତେ ॥
ଥୋକାଏ ବଖାଣିବି ପଦ । ଏଥିରେ ନ କରିବ ବାଦ ॥
କୃଷ୍ଣର ମହିମା ଅପାର । ଦେବ ଦାନବେ ଅଗୋଚର ॥
ବ୍ରହ୍ମା ଯେ ଲୋକ ପରିତ୍ରାଣେ । ମହିମା ଚତୁର୍ବେଦ ଭଣେ ॥
ତାହାର ଅଗୋଚର ଯେଣୁ । ନିଗମ ନାମ ଦେଲେ ତେଣୁ ॥
ପୁଣି ସଂସାର ଅନୁସରେ । ବିସ୍ତାର କଲେ ଶାସ୍ତ୍ର ଯୋଗେ ॥
ମନୁ ପୁରୁଷେ ତାହା ଦେଇ । ସେ ତହୁଁ ସ୍ମୃତି ତିଆଇ ॥
ସେ ସ୍ମୃତି ପାଇ ମୁନିଗଣେ । ବିସ୍ତାରି ରଚିଲେ ପୁରାଣେ ॥
ସେ ପୁଣ୍ୟେ ଇତିହାସ ବାଣୀ । ସୁଜନଜନେ ତାହା ଶୁଣି ॥
ଯେ ସାଧୁ ବିବେକ ପଣ୍ଡିତ । ପୁରାଣ ଅର୍ଥ କଲେ ଗୀତ ॥

ଛତିଶ ଘରେ ହରି ଲୀଳା । ବାନ୍ଧିଲେ ଭବ ଜଳେ ଭେଳା ॥
ସେ ଭେଳା ଶ୍ରୁତିପଥେ ଧରି । ପ୍ରାଣୀ ତରିବେ ଭବ ବାରି ॥
ବିଷ୍ଣୁ ଚରିତ ଗୀତ ଗାଇ । ଅନ୍ତେ କୈବଲ୍ୟ ମୁକ୍ତି ପାଇ ॥
ଦୁଷ୍ଟେ ତରନ୍ତି ଅପ୍ରମାଦେ । ଚଞ୍ଚଳ ବେଦ ପରସାଦେ ॥
ଏହା ବିସ୍ମିତ ମୋର ମନେ । କୃଷ୍ଣ ଚରିତ ଗୁଣ ଗାନେ ॥
ମୂର୍ଖ ସ୍ୱଭାବେ ଭଣି ଗୀତେ । ସୁଜନଜନଙ୍କ ଅଗ୍ରତେ ॥
କହଇ ଶ୍ରୀକୃଷ୍ଣ ମହିମା । ଅପୂର୍ବ ରସ ଗୁଣସୀମା ॥
ପୂର୍ବେ ମେ ନୈମିଷା ଅରଣ୍ୟେ । ସୂତ ସନ୍ନିଧେ ମୁନିଜନେ ॥
ସକଳେ ଏକ ମେଳ ହୋଇ । ହରି ଭକତି ହୃଦେ ନେଇ ॥
ପୁଚ୍ଛନ୍ତି କୋମଳ ବଚନେ । ହେ ସୂତ ଶୁଣ ସାବଧାନେ ॥
ଯେତେ କହିଲେ ଧର୍ମକଥା । ହରି ଚରିତ ଗୁଣଗାଥା ॥
ଶୁଣିଲୁ ତୁମ୍ଭ ପରସନ୍ନେ । ଆମ୍ଭେ ଅଶେଷ ଜନ୍ମ ପୁଣ୍ୟେ ॥
ଏବେ ପଚାରୁ ଜନ ହିତେ । ସଂସାରେ ଧର୍ମ ସାର ଯେତେ ॥
ଯଜ୍ଞାଦି ବ୍ରତ ତପ ଦାନ । ତୀର୍ଥ ସେବନେ ଯେତେ ପୁଣ୍ୟ ॥
ଯୋଗ ସମାଧି କ୍ରିୟା କର୍ତ୍ତି । ଚତୁର ଆଶ୍ରମ ଯେ ଗତି ॥
ଏ ସର୍ବ ଧର୍ମ ପରେ ଶ୍ରେଷ୍ଠ । କି ଅଛି କହ ତତ୍ତ୍ୱନିଷ୍ଠ ॥
ଗୃହ ଆଶ୍ରମେ ତପ କରି । ବିଷ୍ଣୁ ତୋଷନ୍ତି ନରନାରୀ ॥
ଅଶେଷ ଜନ୍ମ ବନ୍ଧ ନାଶି । ଅନ୍ତେ ବୈକୁଣ୍ଠପୁରେ ବସି ॥
ବିଷ୍ଣୁ କୈବଲ୍ୟ ଭୋଗ କରେ । କି ଧର୍ମ ସଂସାରେ ପ୍ରଚୁରେ ॥
ଏମନ୍ତ ଧର୍ମ ଅଛି ସର୍ବେ । ଭୋ ମୁନି କହ ଦୟା ବିହ୍ୱେ ॥
ଏମନ୍ତେ ମୁନିଙ୍କର ପ୍ରଶ୍ନେ । ସୂତ କହନ୍ତି ତୋଷ ମନେ ॥

ସୂତ ଉବାଚ

ବୋଲନ୍ତି ଶୁଣ ବୁଧଗଣେ । ଯେ ଧର୍ମ ପଙ୍କଜ ପୁରାଣେ ।
ଉତ୍ତର ଖଣ୍ଡେ ଯେଉଁ ବାଣୀ । ବ୍ୟାସଙ୍କ ମୁଖୁ ଅଛି ଶୁଣି ॥

ଯେ ବିଷ୍ଣୁ ସ୍ୱୟଂ ବ୍ୟାସରୂପୀ । ଯେ ବ୍ୟାସ ଶ୍ରୀକୃଷ୍ଣ ସ୍ୱରୂପୀ ॥
ସେ ବ୍ୟାସ ମୁଖରୁ ନିର୍ଗତ । କାର୍ତ୍ତିକ କୃତ୍ୟ ମହାବ୍ରତ ॥
ସକଳ ଧର୍ମେ ସାର ଯେହୁ । ତହିଁରେ ତୋଷ ଭବଗ୍ରାହୀ ॥
ବିଷ୍ଣୁର ଅତିଅନ୍ତ ପ୍ରୀତି । ଯହୁଁ ପ୍ରସନ୍ନ ବେଦପତି ॥
ଶିବ ସନ୍ତତେ ହିତପାଳେ । ସନ୍ତୋଷ ଯେଉଁ ବ୍ରତ ଫଳେ ॥
ସକଳ ପାପ ଯହିଁ ହରି । ମୁକ୍ତି ଲଭନ୍ତି ନରନାରୀ ॥
ଯେ ବ୍ରତେ ହୁଏ ରୋଗ ନାଶ । ସକଳ ପାପ ଯାଏ ଧ୍ୱଂସ ॥
ମିଳେ ଉତ୍ତମ ପୁତ୍ର ନାତି । ବଢ଼ଇ କୁବେର ସମ୍ପତ୍ତି ॥
ସକଳ ତୀର୍ଥ ଫଳ ପାଏ । ଅନ୍ତେ ବୈକୁଣ୍ଠ ପୁରେ ଯାଏ ॥
ସେ ଧର୍ମ ଶୁଣ ଦିବ୍ୟଜ୍ଞାନେ । ସଂଶୟ ଦୂର କରି ମନେ ॥
ପୂର୍ବେ ଯେ ଦ୍ୱାରିକା ପୁରେ । ଶ୍ରୀକୃଷ୍ଣ ସତ୍ୟା ସଙ୍ଗତରେ ॥
ଆରୋହି ବିନତାର ବତ୍ସା । ହେବା ଭ୍ରମଣେ କଲେ ଇଚ୍ଛା ॥
ସତ୍ୟଭାମାଙ୍କ ଇଚ୍ଛା ଯହିଁ । ସୁପର୍ଣ୍ଣ ବେଗେ ମିଳେ ତହିଁ ॥
ବିବିଧ କଥା କହି ହରି । ପ୍ରିୟାର ମନ ତୋଷ କରି ॥
ଏମନ୍ତ ଚତୁର୍ଦ୍ଦଶ ପୁରେ । ଦୁର୍ଲଭ ସ୍ଥାନ ଯେତେ ଠାରେ ॥
ବ୍ରହ୍ମା ଶଙ୍କର ଆଦି ସୁର । ବାସବ ବାସୁକୀ ନଗର ॥
ଦେଖି ଆନନ୍ଦ ବିଷ୍ଣୁ ପ୍ରିୟା । ଜଗଦ୍‌ବଲ୍ଲଭ ଅନୁଜାୟା ॥
ସପତ ଦ୍ୱୀପ ବସୁମତୀ । ଭ୍ରମି ଆସନ୍ତେ ଦ୍ୱାରାବତୀ ॥
ଭୁଜଙ୍ଗାଶନ ପୃଷ୍ଠେ ବସି । ଶ୍ରୀକୃଷ୍ଣ ଗୁଣ ମୁଖେ ଘୋଷି ॥
ଆନନ୍ଦେ ଶତ୍ରାଜିତ ଜେମା । ନାମ ଯାହାର ସତ୍ୟଭାମା ॥

### ସତ୍ୟଭାମା ଉବାଚ

ଶ୍ରୀପୁରଂ ପ୍ରାପ୍ୟ ତନ୍ଥାମନ୍ତ୍ର୍ୟ ଗତେ ଦେବର୍ଷିସତ୍ତମେ ।
ହର୍ଷୋତ୍‌ଫୁଲ୍ଲମନାଃ ସତ୍ୟା ବସୁଦେବମଥାବ୍ରବୀତ୍ ॥
ଧନ୍ୟାସ୍ମି କୃତ୍ୟକୃତ୍ୟାସ୍ମି ସଫଳଂ ଜୀବିତଂ ଚ ମେ ।

ମତ୍ନନ୍ଦନ ନନ୍ଦାନୌ ଚ ଧନ୍ୟୌ ତୌ ପିତରୌ ମମ ।
ଯୋ ମାଂ ତ୍ରୈଲୋକ୍ୟ ସୁଭଗଂ ଜନୟା ମାସତ୍ତୁ ଧ୍ରୁବଂ ।
ଷୋଡ଼ଶସ୍ତ୍ରୀ ସହସ୍ରାଣାଂ ବଲ୍ଲଭାହଂ ଯତସ୍ତବ ।

ପଡ଼ି ଚରଣେ ଧରି କରେ । ଭକତି ଭାବେ ଦେଇ ଶିରେ ॥
କହନ୍ତ୍ର ଲଳିତ ବଚନ । ହେ ପ୍ରଭୁ କମଳ ଲୋଚନ ॥
ଦେବଙ୍କ ଦେବ ଦୀନବନ୍ଧୁ । ସୁକୃତ ଜନ କୃପାସିନ୍ଧୁ ॥
ଜୀବ ପରମ ଆତ୍ମା ତୁହି । କେ ପାରେ ତୋର ଗୁଣ କହି ॥
ଅନେକ ମତେ ତୋର ଭାବ । ତୋତେ ନ ଚିହ୍ନି ମୂଢ଼ ଜୀବ ॥
ସଂସାରେ ଭ୍ରମେ ଜାତ ହୋଇ । ଚଉଦ ରଥ ପ୍ରାପ୍ତ ମହୀ ॥
ଏ ତୋର କଉତୁକ ଗତି । ବିଶ୍ୱ ସମ୍ପଦ ବିଶ୍ୱପତି ॥
ବିଶ୍ୱ ସଂସାରେ କରୁ ଲୀଳା । ତୋର ମହିମା ଅଗୋଚରା ॥
କାହାକୁ କେଉଁ ଭାବେ ଦୟା । କେ ଜାଣିପାରେ ତୋର ମାୟା ॥
ଷୋଳ ସହସ୍ର ଯେତେ ନାରୀ । କମଳା ଅଂଶେ ଅବତରି ॥
ଅପରେ ଅଷ୍ଟ ପାଟରାଣୀ । ରୁକ୍ମିଣୀ ଦେବୀ ସ୍ୱରୂହଂସୀ ॥
ଏ ସବୁ ତୁମ୍ଭର ଭାବନା । ଭଜନ୍ତି ତୁମ୍ଭ ପ୍ରୀତି ଯେଣ ॥
ତୁମ୍ଭେ ତାଙ୍କଠାରେ ସଦୟ । ଦଶାରେ ପୂର୍ଣ୍ଣ ଇନ୍ଦୁ ପ୍ରାୟ ॥
ଏକଥା ଭଲେ ଅଛୁ ଜାଣି । ତଥାପି ମୋହଠାରେ ପୁଣି ॥
ବହୁତ କର ଅନୁଗ୍ରହ । ମୁହିଁ ଜାଣଇଁ ତୁମ୍ଭ ସ୍ନେହ ॥
ଯେଉଁ କଥାକୁ ଶ୍ରଦ୍ଧା ମୋର । ତୁମ୍ଭେ ତା ଅନ୍ୟଥା ନକର ॥
ଏ ବଡ଼ ଭାଗ୍ୟ ମୋର କର୍ମ । ପୂର୍ବେ ମୁଁ କଲି କେଉଁ ଧର୍ମ ॥
କି କୁଳେ ହୋଇଥିଲି ଜନ୍ମ । କେବଣ ତୀର୍ଥେ ତପୋଦାନ ॥
କେଉଁ ଦେବତା ପୂଜା କରି । ତୁମ୍ଭ ଚରଣେ ପରିସ୍ତୁସି ॥
ତୁମ୍ଭର ଅନୁରାଗ ମୋରେ । ଏ ଅତି ଦୁର୍ଲଭ ସଂସାରେ ॥
କି ଭାବେ ଲଭିଲି ମୁଁ ଏହା । ବସ୍ତୁର କହ ଲକ୍ଷ୍ମୀନାହା ॥

ଶ୍ରୀ ଭଗବାନୁବାଚ

ଇତି ପ୍ରିୟାବଚଃ ଶ୍ରୁତ୍ୱା ସ୍ମେରାସ୍ୟଃସ ଗଦାଧରଃ
ସତ୍ୟକରଂ କରେ ଧୃତ୍ୱାଽ ଗମତ୍କଳ୍ପତରୋସ୍ତଳଂ ॥

ଏମନ୍ତ ବାକ୍ୟ ଦେବୀ ଭଣି । ଶୁଣି କହନ୍ତି ଚକ୍ରପାଣି ॥
ପ୍ରିୟା ବଚନେ ସେନ୍ହ ବନ୍ଧ । ବୋଲନ୍ତି ଶୁଣ ପ୍ରାଣ ସନ୍ଧ ॥
ଯେଣେ ଶାରଧା ତୋର ମନ । ମୁଁ ତାହା ନ କରଇ ଆନ ॥
ଭୂମି ପିଅଇ ଅପମାନୁ । ରଣେ ନିବାରି ଶତଧନୁ ॥
ପାରିଜାତକ ପୁଷ୍ପ ପାଇଁ । କିବା ନ କଲି ସ୍ୱର୍ଗେ ମୁହିଁ ॥
ସମରେ ଜିଣି ସର୍ବ ସୁର । ଗର୍ବ ଗଞ୍ଜିଲି ସୁନାଶୀର ॥
ବଳେ ଉପାଡ଼ି ସୁର ବୃକ୍ଷ । ତୋ ପୁରେ ରୋପିଲି ପ୍ରତ୍ୟକ୍ଷ ॥
ଅମର ବୃକ୍ଷ ମର୍ତ୍ତ୍ୟପୁରେ । ଦେଖିଲି ମାନବ ଗୋଚରେ ॥
ପୁତ୍ରକାମନା ଅର୍ଥେ ତୋର । ସେବ ନାରଦ ମୁନିବର ॥
ପ୍ରଦ୍ୟୁମ୍ନ ପ୍ରାପ୍ତ ଦଶପୁତ୍ର । ହୋଇଲେ ତୋର ଗର୍ଭଜାତ ॥
ଆବର ଶ୍ରଦ୍ଧା କରୁ ଯାହା । ମୁହିଁ କି ନ ଦିଅଇ ତାହା ॥
ଏବେ ପୃଚ୍ଛିଲୁ ଯେଉଁ କଥା । କହିବା ପୂର୍ବ କର୍ମ କଥା ॥
ଚାଲ ଉତ୍ତମ ସ୍ଥାନେ ବସି । ନିଗମ କହିବା ବିଶେଷି ॥
ଏମନ୍ତ ବୋଲି ଚହୁଁ ଚଳି । ଦ୍ୱାରକା ଉପବନେ ମିଳି ।
ଗରୁଡ଼ କନ୍ଧରୁ ଉତ୍ତରି । ଯା ବୋଲି ଆଜ୍ଞା ଦେଲେ ହରି ॥
କୃଷ୍ଣର ଆଜ୍ଞା ଅନୁରୂପେ । ଚଳିଲା ସେ ରମ୍ୟକ ଦ୍ୱୀପେ ॥
ସତ୍ୟଭାମାଙ୍କ ଭୁଜ ଧରି । ଶ୍ରୀକୃଷ୍ଣ ଆନନ୍ଦେ ବିହରି ॥
ପ୍ରବେଶ କଳ୍ପଦ୍ରୁମ ତଳେ । ଯହିଁ ସକଳ ସୁଖ ମିଳେ ॥
ବସନ୍ତ ଆଦି ଷଡ଼ଋତୁ । ଯେ ଯାହା ନିଜଗୁଣ ହେତୁ ॥
ବନେ ସେବନ୍ତି କୃଷ୍ଣ ଆଣେ । ସଦା ବସନ୍ତ ଫଳପୁଷ୍ପେ ॥
ସାଙ୍ଗ ଶୁକ ଯେ ପିକ ଭୃଙ୍ଗେ । ଯେ ଯାହା ଧ୍ୱନି ଅନୁସଙ୍ଗେ ॥

ବନେ କ୍ରୀଡ଼ନ୍ତି ପକ୍ଷୀଗଣେ । ଯେ ଯାହା ନାଦ ହରଷଣେ ॥
ଦୁର୍ଲ୍ଲଭ ପୁଷ୍ପଶ୍ରେଣୀ ତଟେ । ଅପୂର୍ବ ଶୋଭା ବୃକ୍ଷ ବଟେ ॥
ତା ତଳେ ସିଦ୍ଧ ସର୍ବ କାମ । ତେଣୁ ତା ନାମ କଳ୍ପଦ୍ରୁମ ॥
ମୂଳେ ତା ମର୍କତର ବେଦୀ । ସୁବର୍ଣ୍ଣ ମେଖଳା ଆଚ୍ଛାଦି ॥
ରକତବର୍ଣ୍ଣ ତରୁ ଶୋଭା । ଆକୃତି ପଦ୍ମପତ୍ର ପ୍ରଭା ॥
ପଲ୍ଲବ ଶିଖ ପୃଷ୍ଠେ ଧରେ । ନକତେ ସୁଧାରସ ଝରେ ॥
ଚନ୍ଦନ ପ୍ରାପ୍ତ ତରୁ ବାସ । ସନ୍ନିଧେ ଛନ୍ତି ନାନାପୁଷ୍ପ ॥
ଏମନ୍ତେ କଳ୍ପଦ୍ରୁମ ତଳେ । ଗୋବିନ୍ଦ ସତ୍ୟଭାମା ମେଳେ ॥
ମର୍କତ ବେଦୀକାରେ ବସି । ଯେସନ୍ତେ ବୈକୁଣ୍ଠେ ବ୍ରହ୍ମବଶି ॥
ସଙ୍ଗତେ ବରୁଣର ଜେମା । ଯେସନ୍ତେ ଶ୍ରୀକୃଷ୍ଣ ସତ୍ୟଭାମା ॥

ଶ୍ରୀକୃଷ୍ଣ ଉବାଚ

ଶୃଣୁଷ୍ୱୈକମନା କାନ୍ତେ କଥା ତ୍ୱଂ ପୂର୍ବଜନ୍ମନ ।
ପୁଣ୍ୟ ବ୍ରତଂ କୃତବତୀତ ଯଦଂ କଥୟାମି ତେ ॥
ଆସୀତ୍ କୃତଯୁଗସ୍ୟାନ୍ତେ ମାୟାପୁର୍ଯ୍ୟାଂ ଦ୍ୱିଜୋତ୍ତମଃ ।
ଆତ୍ରେୟୋ ଦେବଶର୍ମେତି ବେଦ ବେଦାଙ୍ଗପାରଗଃ ॥

ହସି କହନ୍ତି ନାରାୟଣ । ହେ ପ୍ରିୟେ ସାବଧାନେ ଶୁଣ ॥
ଯେ ତୁମ୍ଭ ପୂର୍ବ ଜନ୍ମ ଧର୍ମ । ଯମ ନିୟମ କୃତ କର୍ମ ॥
ସକଳ କହିବା ତୁମ୍ଭଙ୍କୁ । ଯଦ୍ୟପି ପୁଚ୍ଛିଲ ଆମ୍ଭଙ୍କୁ ॥
ପୂର୍ବେ ସେ ସତ୍ୟଯୁଗ ଅନ୍ତେ । ଉତ୍ତର ହିମାଳୟ ପ୍ରାନ୍ତେ ॥
ହରିପ୍ରିୟ ଥିଲା ମାୟା ପୁରେ । ତା ଜନ୍ମ ଆତ୍ରେୟ ବଂଶରେ ॥
ନାମ ତାହାର ଦେବ ଶର୍ମା । ସକଳ ଗୁଣେ ମହାତମା ॥
ତାର ଦୁହିତା ଗୁଣବତୀ । ଜନ୍ମରୁଁ ମାତୃହୀନେ ବର୍ତ୍ତି ॥
ଅତି ଯତନେ ପିତା ପାଳି । ପ୍ରଦାନ ଅର୍ଥେ ମନେ ଭାଳି ॥
ଦ୍ୱିଜ କୁମରେ ଅରକ୍ଷିତ । ନାମ ତାହାର ଚନ୍ଦ୍ର ହୋଇ ॥

ତାହାଙ୍କୁ ନିଜ ପୁରରେ ନେଇ । ଘୃତାଦି ନାନା ଦ୍ରବ୍ୟ ଦେଇ ॥
ଦୁହିତା କଲା ତାଙ୍କୁ ଦାନ । ଚନ୍ଦ୍ର ରୋହିଣୀ ପ୍ରାପ୍ତ ଶୋଭ ॥
ଶିଷ୍ୟ ଜ୍ୱାଇଁଙ୍କୁ ଘେନି ପାଶେ । ବିପ୍ର ବଞ୍ଚଇ ଗୃହ ବାସେ ॥
ଏମନ୍ତେ କେତେ ଦିନ ଅନ୍ତେ । ଅନଳ ଅର୍ଚ୍ଚନା ନିମନ୍ତେ ॥
ଦିନେ ଦୁହିତା ପତିମେଳେ । ବ୍ରାହ୍ମଣ ଗଲା ବନ୍ଧ୍ୟାଚଳେ ॥
ଘୋର ଗହନ ବନେ ପଶେ । ସମିଧ କାଷ୍ଠ ଅଭିଳାଷେ ॥
ଖୋଜନ୍ତେ ଲତାଗୃହ ଦେଶ । ଭ୍ରମନ୍ତ ମିଳିଲା ରାକ୍ଷସ ॥
କୁଳିଶ ଦଣ୍ଡ କରେ ଧରି । ବେନି ବିପ୍ରଙ୍କୁ ବଧକରି ॥
ରାକ୍ଷସ ତହୁଁ ଗଲା ଚଳି । ମୋହର ଦୂତେ ଆସି ମିଳି ॥
ତାଙ୍କୁ ବିମାନେ ବସାଇଲେ । ବୈକୁଣ୍ଠ ଭୁବନକୁ ନେଲେ ॥
ସେ ଦୁଇ ବିପ୍ର ଜାଣ ନିତି । ଭକ୍ତିରେ ସୂର୍ଯ୍ୟଙ୍କୁ ପୂଜନ୍ତି ॥
ତେଣୁ ସନ୍ତୋଷ ମୋର ମନ । ସେ ମୋର ଭକତ ପ୍ରଧାନ ॥
ଯେ ସୌର ଗାଣପତ୍ୟ ଶୈବ । ଶାକ୍ତ ଆବର ଯେ ବୈଷ୍ଣବ ॥
ମୂର୍ତ୍ତିଟି ପଞ୍ଚଆତ୍ମା ହୋଇ । ସଂସାର ତନ୍ତରେ ଖେଳଇ ॥
କର୍ମବଳେ ସେ ବିପ୍ର ବେନି । ମୋକ୍ଷ ପାଇଲେ ଗୋ ଭାମିନୀ ॥
ଶୁଣିଣ ସତ୍ୟା ହେଲେ ତୋଷ । କହଇ ମହାଦେବ ଦାସ ॥

ଇତି ଶ୍ରୀ ପଦ୍ମପୁରାଣେ ଉତ୍ତରଖଣ୍ଡେ କାର୍ତ୍ତିକ ମାହାତ୍ମ୍ୟେ
ଦେବଶର୍ମା ଚନ୍ଦ୍ର ହୋତୃ ମୋକ୍ଷଣଂ
ନାମ ପ୍ରଥମୋଽଧ୍ୟାୟଃ ।

—*—

## ଦ୍ୱିତୀୟ ଅଧ୍ୟାୟ

ଶ୍ରୀ ଭଗବାନୁବାଚ

ତତୋ ଗୁଣବତୀ ଶ୍ରୁତ୍ୱା ରାକ୍ଷସେନ ହତାବୁଭୌ ।
ପିତୃଭର୍ତ୍ତୃତ ଦୁଃଖାର୍ତ୍ତ କରୁଣଂ ପର୍ଯ୍ୟଦେବଦ୍ୟୁତ ॥

ଦୂରେ ନିଷାଦଗଣ ଥିଲେ । ପଳାଇ ସନ୍ଦେଶ କହିଲେ ॥
ପତି ପିଅର ହତ ଶୁଣି । ସେ ଚନ୍ଦ୍ର ହୋତ୍ରର ଘରଣୀ ॥
ବିକଳେ କରଇ ରୋଦନ । ହେ ସ୍ୱାମି କଲୁ ତୁ ଏସନ ॥
ପିତା ଗୃହସ୍ଥ ଏକାବେଳେ । ନିଧନ ମୋର ପାପଫଳେ ॥
ଗୃହେ ମୋହର କେହି ନାହିଁ । କେମନ୍ତେ ଧରିବି ମୁଁ ଦେହି ॥
ଯୁବତ୍ୱେ ଅଳପ ବୟସ । ବିପଦ ପଡ଼ିଲା ଅଶେଷ ॥
ପୋଡ଼ୁ ମୋହର କର୍ମଫଳ । ତୁମ୍ଭୁ ଅସ୍ତଗଲା ବେଳ ॥
ଘୋର ଗହନ ବନେ ରଖି । ଦଇବ ନେଲା ବେନି ଆଖି ॥
ବୁଢ଼ି ତ ନ ହସଇ ଆଉ । ଧିକ ମୋହର ଜୀବ ଯାଉ ॥
କେମନ୍ତେ ସହିବ ମୋ ମନ । ହେ ପିତା ତୁ ମୋର ଜୀବନ ॥
କ୍ଷଣେ ନ ଦେଖୁ ମୋର ଦୁଃଖ । ଏବେ ତ ହୋଇଲୁ ନିରଖ ॥
ମନର ଶୂନ୍ୟ ହେବା ଆଶେ । ମୋତେ ନ ନେଲ ଅନ୍ୟ ଦେଶେ ॥
ପର କୁମର ଗୃହେ ବରି । ପାଳିଲ ପ୍ରାଣ ପ୍ରାୟ କରି ॥
ମୋତେ ତାହାଙ୍କୁ ବିଭା ହେଲ । ଏବେ ସଙ୍ଗତେ ଘେନିଗଲ ॥
ଅନାଥା କରିଗଲ ମୋତେ । ମୁଁ ଯାନ୍ତି ସ୍ୱାମୀଙ୍କ ସଙ୍ଗତେ ॥
ଉଭୟକୁଳ ଜ୍ଞାତିଶୂନ୍ୟ । କେ ଦେବ ଜଳ ତିଳ ଦାନ ॥
ପ୍ରେତ କେ ପବନ କରିବ । ଏଣୁ ରଖିବି ମୋର ଜୀବ ॥
ଏମନ୍ତ ଭାଳି ଗୁଣବନ୍ତି । ଶୋକ ସମ୍ଭାଳି ହେଲା ଶାନ୍ତ ॥
ସଂସାର ଭାବ ମନେ ଗୁଣି । ସର୍ବ ଅସତ୍ୟ ପ୍ରାୟ ମଣି ॥
ବିଷ୍ଣୁର ଲୀଳା ସର୍ବ ଦେହି । ତା ବିନୁ ଅନ୍ୟ ଗତି ନାହିଁ ॥
ତେଣୁ ହୋଇବ ଅନୁଚିତ । ଏବେ ସାରିବି ପ୍ରେତକୃତ୍ୟ ॥
ପିତା ପତିଙ୍କ ଗତି ହେଇ । ଶରଣ ଯିବି ଲକ୍ଷ୍ମୀସାଇଁ ॥
ଏତେ ବିଚାରି ଦ୍ୱିଜ ନାରୀ । ବିପ୍ର ବଚନେ କ୍ଷିପ୍ରା କରି ॥
ନିସ୍ତାରି ବେନିକୁଳ ଜନ । ଗୃହେ ତା ଥିଲା ଯେତେ ଧନ ॥

ସେ ଦେଶ ରଜା ତାହା ନେଲା । ଯେଣୁ ତା ରକ୍ଷକ ନ ଥିଲା ॥
ଅନ୍ୟ ବ୍ରାହ୍ମଣ ଜଣେ ହୁଡ଼ି । ଦାନେ ହରଲା ଉଦ୍ଧ ବାଡ଼ି ॥
ତା ଦେଖି ଦେବଶର୍ମା ସୁତା । ମନେ ନ କଲା କିଛି ଚିନ୍ତା ॥
ବିପ୍ରଙ୍କୁ ମାଗି ପ୍ରିୟ ପଣେ । ସନ୍ନିଧେ ରଚି ଗୃହ କୋଣେ ॥
ଭିନ୍ନ କରିଣ ଦ୍ୱାର କାଟି । ଚାଳ ବରଡ଼ା କଲା ଚାଟି ॥
ଉଦର ପୋଷଣେ ଜୀବିକା । କାର୍ପାସ ସୂତ କରେ ବିକା ॥
ତନୁ ଲବଧେ ଆତ୍ମା ପୋଷି । ରାମ ଗୋବିନ୍ଦ ନାମ ଘୋଷି ॥
ପୂର୍ବେ ପୁରାଣ ଥିଲା ଶୁଣି । ଆତ୍ମାର ଲାଭ ମନେ ଗୁଣି ॥
ବିଷ୍ଣୁର ଅତି ପ୍ରିୟ ବ୍ରତ । କାର୍ତ୍ତିକ ବିଧି ଯଥା କୃତ୍ୟ ॥
ସକଳୁ କଲା ତାହା ବାଳୀ । ସ୍ୱଭାବେ ଏକାଦଶୀ ପାଳି ॥
ପାପ ପ୍ରମାଦ ଭୟ ରତ । ମିଥ୍ୟା ନ ଭାଷି କହେ ସତ୍ୟ ॥
ବିଧି ସକଳେ ଉପବାସୀ । କରଇ ବ୍ରତ ଏକାଦଶୀ ॥
ଅବେତ ପୂର୍ଣ୍ଣମାସୀ ଜାଣି । କାର୍ତ୍ତିକ କୃତ୍ୟ ଯାହା ଭଣି ॥
ସ୍ନାନ କରିଣ ପ୍ରାତଃକାଳେ । ବିଷ୍ଣୁର ନାମ ଶିବ ସ୍ଥଳେ ॥
ବସି ଜପଇ ରତ ଶୁଦ୍ଧି । ପୂଜଇ ମାନସିକ ବିଧି ॥
ନିଜ ଆଶ୍ରମେ ତହିଁ ଯାଇ । ତୁଳସୀ ବୃକ୍ଷ ଆରାଧଇ ॥
ଲେପନ ସେଚନ ସୁରେଖେ । ପଞ୍ଚବର୍ଣ୍ଣ ମୁରୁଜ ଲେଖେ ॥
ଦୀପ ବସାଇ ସାୟଂ କାଳେ । ହବିଷ୍ୟ ଅନ୍ନ ଏକବେଳେ ॥
ନିୟତ କର୍ମ କରି ତେଜ୍ୟା । ଶୟନ କାଳେ ତୃଣଶଯ୍ୟା ॥
ଏମନ୍ତେ କେତେ ଦିନ ଗଲା । ତା ଅଙ୍ଗେ ଜ୍ୱର ପ୍ରବେଶିଲା ॥
କାର୍ତ୍ତିକ ମାସ ପ୍ରାତଃକାଳେ । ସ୍ନାନ କରଇ ଶୀତ ଜଳେ ॥
ଜଠର ଅଗ୍ନି ତେଜହୀନେ । ରୋଗ ଆକର୍ଷେ ଦିନୁ ଦିନେ ॥
ଜ୍ୱରେ କମ୍ପଇ ତାର ଦେହ । ତଥାପି ବିଷ୍ଣୁ ବ୍ରତେ ସ୍ନେହ ॥
ନିତ୍ୟେ ପ୍ରଭାତେ ସ୍ନାନ କରେ । ଏମନ୍ତେ ସୁବନଧା ଛାରେ ॥

ଅଙ୍ଗେ ବ୍ୟାପିଲା ସନ୍ନିପାତ । ତକ୍ଷଣେ ପାଇଲା ପଞ୍ଚତ୍ୱ ॥
ଆତ୍ମା ତା ଅନ୍ତରୀକ୍ଷେ ଯାଇ । ଜ୍ୟୋତିର୍ମୟମାନ ଦେହ ପାଇ ॥
ବସିଲା ହେମମୟ ରଥେ । ମଙ୍ଗଳଧ୍ୱନି କରି ପଥେ ॥
ବିଷ୍ଣୁ କଙ୍କରେ ତହିଁ ମିଳି । ଯେଣେ ବୈକୁଣ୍ଠେ ଗଲେ ଚଳି ॥
ବିଷ୍ଣୁଙ୍କୁ କଲା ଦରଶନ । ସ୍ୱମୂରେ ପାଇ ସନମାନ ॥
ଲକ୍ଷ୍ମୀ ସଙ୍ଗତେ ସଖୀ ହୋଇ । ରହିଲା ଦିବ୍ୟ ଭୋଗ ପାଇ ॥
ପୁଣି ଲଭିଲା ଯେଉଁ ଗତି । ସେ କଥା ଶୁଣ ସତ୍ୟାସତୀ ॥
ଏବେ ଦ୍ୱାପର ଯୁଗେ ପୁଣ । ବିଷ୍ଣୁ ସ୍ୱରୂପେ ନାରାୟଣ ॥
ସ୍ୱୟଂ ପ୍ରକାଶ ଆମ୍ଭେ ଆସି । ଅବନୀ ଭାରଭର ନାଶି ॥
ରୁକ୍ମିଣୀ ଲକ୍ଷ୍ମୀ ଉତପତ୍ତି । ତୁମ୍ଭେ ଯେ ପୂର୍ବେ ଗୁଣବତୀ ॥
ଏବେ ହୋଇଲ ସତ୍ୟଭାମା । କହନ୍ତି ପୁରୁଷ ଉତ୍ତମା ॥
ଯେ ଚନ୍ଦ୍ରହୋତ୍ର ଦ୍ୱିଜବର । ସେ ଏବେ ଭକତ ଅକ୍ରୂର ॥
ଯେ ଦେବଶର୍ମା ତୁମ୍ଭ ତାତ । ସେ ଏବେ ନାମେ ଶତ୍ରାଜିତ ॥
ଯେ ତୁମ୍ଭ ପାଳିତ ତୁଳସୀ । ସେ କଳ୍ପଦ୍ରୁମ ହେଲା ଆସି ॥
ଏ ସର୍ବ ତୁମ୍ଭ ଧର୍ମ ଫଳ । ତହିଁ ତାରିଲ ବେନିକୂଳ ॥
କାର୍ତ୍ତିକ ବ୍ରତ ଫଳ ଶ୍ରୁତି । ଯେଣୁ ମୁଁ ତୁମ୍ଭ ପ୍ରିୟ ଅତି ॥
ପୂର୍ବେ ଯେ କରିଥିଲ ତପ । ନଶି ଆଗମେ ଜାଳି ପାପ ॥
ତେଣୁ ସନ୍ତୋଷ କମଳମୀ । ତୁମ୍ଭେ ଯେ ତାଙ୍କ ସପତ୍ନୀ ॥
ମନେ ନ ଘେନ ଅହଂକାର । ପ୍ରସନ୍ନେ ଦେଇଛନ୍ତି ବର ॥
କହନ୍ତି କରୁଣା ଜଳଧି । ଗଦ୍ୟପୁରାଣେ ଯଥାବିଧି ॥
କାର୍ତ୍ତିକ ମହିମା ବର୍ଣ୍ଣନେ । ଉତ୍ତର ଖଣ୍ଡେ ଅଧ୍ୟମାନେ ॥
ଶୁଣି ସନ୍ତୋଷ ସତ୍ୟା ସତୀ । ଯେ ପ୍ରଭୁ ତାଙ୍କ ପ୍ରାଣପତି ॥
ସେ ପ୍ରଭୁ ଚରଣେ ବିଶ୍ୱାସ । ଶରଣ ମହାଦେବ ଦାସ ॥

ଇତି ଶ୍ରୀପଦ୍ମପୁରାଣେ ଉତ୍ତରଖଣ୍ଡେ ଗୀତପ୍ରବନ୍ଧେ କାର୍ତ୍ତିକ ମାହାତ୍ମ୍ୟେ
ସତ୍ୟଭାମା ପୂର୍ବଜନ୍ମ କଥନେ ନାମ ଦ୍ୱିତୀୟୋଽଧ୍ୟାୟଃ ।

---

## ତୃତୀୟ ଅଧ୍ୟାୟ

### ସତ୍ୟଭାମା ଉବାଚ

ସର୍ବେଽପି କାଳାବୟବା ସ୍ତବ କାଳ ସ୍ୱରୂପିଣଃ ।
ମାସାନାଂ ତୁ କଥଂ ନାଥ ସ ମାସଃ କାର୍ତ୍ତିକୋ ବରଃ ।

ଶୁଣ ସକଳ ମୁନିଜନେ । ସତ୍ୟା ସେ ଶ୍ରୀକୃଷ୍ଣ ବଚନେ ॥
ଆପଣା ପୂର୍ବ କର୍ମ ଶୁଣି । ଆନନ୍ଦେ ମନେ ମନେ ଗୁଣି ॥
ପତି ଚରଣ ତଳେ ପଡ଼ି । କହଇ ଦେବୀ କର ଯୋଡ଼ି ॥
ହେ ନାଥ କର ଅନୁଗ୍ରହ । କାର୍ତ୍ତିକବ୍ରତ କଥା କହ ॥
ପୂର୍ବେ ପ୍ରକାଶ ହେଲା ଜାହିଁ । ତୁମ୍ଭର ଏତେ ପ୍ରିୟ ଯହିଁ ॥
ତେଣୁ ଶୁଣିବା ଶ୍ରଦ୍ଧା ମୋର । ହେ ପ୍ରଭୁ ଅନୁଗ୍ରହ କର ॥
ସତ୍ୟା ବଚନେ ହୃଷୀକେଶ । କାର୍ତ୍ତିକ ମହିମା ବିଶେଷ ॥
କହନ୍ତି ପୂର୍ବ କଳ୍ପ କାର୍ତ୍ତି । ବୋଲନ୍ତି ଶୁଣ ସତ୍ୟା ସଖି ॥
ପୂର୍ବେ ସେ ପୃଥୁ ଦଣ୍ଡଧାରୀ । ନାରଦ ପାଦ ପୂଜା କରି ॥
ଏ ପ୍ରଶ୍ନ କରିଥିଲେ ତାଙ୍କୁ । ସେ କହିଥିଲେ ନୃପତିଙ୍କୁ ॥
ତାହା କହୁଛୁ ଶୁଣ ଏବେ । କାର୍ତ୍ତିକ ବ୍ରତର ପ୍ରଭାବେ ॥
କଳ୍ପ ଅନ୍ତରେ କୃତଯୁଗେ । ଧରଣୀ କର୍ମ ଭୋଗାଭୋଗେ ॥
ଅନନ୍ତ କୋଟି ଜୀବ ଜାତ । ପାଳନେ ଦେବ ଦଇବତ ॥
ସଂସାରେ ହେଲେ ଅବତାର । ସିନ୍ଧୁ ନନ୍ଦନ ଶଙ୍ଖାସୁର ॥
କର୍ମେ ଅସୁର ବୁଦ୍ଧି ଯେନ । ବଳେ ଜିଣିଲା ଲୋକ ତିନ ॥
ବ୍ରହ୍ମାଦି ସୁର ସାଧ୍ୟ ଜରି । ସର୍ବ ସମ୍ପଦ ଅର୍ଥ ହରି ॥
ବେଦ ପୁରାଣେ ଶାସ୍ତ୍ରମୂଳେ । ଜିଣି ଆଣିଲା ଭୁଜବଳେ ॥

ଗୁପତେ ରଖି ସିନ୍ଧୁ ମଧ୍ୟେ । ନଚେ୍ୟ ଅଇର କୁଳ ସାଧେ ॥
ଦେବ ଉରଗ ଯକ୍ଷ ନର । ସବୁନ୍ତ ହେଲା ଦୁଃଖ ଘୋର ॥
ବେଦ ବିହୀନେ ମୁନିଜନେ । ହୋମ ନ କଲେ ହୁତାଶନେ ॥
ହୋମ ନ ପାଇ ସୁରଲୋକେ । ବଞ୍ଚନ୍ତି ଦୁଃଖେ ଅତିରେକେ ॥
ସଂସାର ନ ପାଳନ୍ତି ଭଲେ । ଶସ୍ୟ ବିହୀନେ ଜନ୍ତୁ ମଲେ ॥
ତା ଦେଖି ଦେବ ପରମେଷ୍ଠୀ । ବେଦ ବିହୁନେ ମନେ କଷ୍ଟି ॥
ସକଳ ସୁର ମୁନି ଭୁଲେ । ବୈକୁଣ୍ଠ ଭୁବନକୁ ଗଲେ ॥
ବିଷ୍ଣୁର ଯୋଗ ନିଦ୍ରାକାଳେ । ସମସ୍ତେ ଶ୍ରୀଚରଣ ତଳେ ॥
ପଦ ଉଭରି ଶିରେ କର । ସ୍ତୁତି କରଇ ବେଦଧର ॥
ନମସ୍ତେ ପ୍ରଭୁ ବ୍ରହ୍ମରାଶି । ଅଶେଷ ଗୁଣ ଗ୍ରାମବାସୀ ॥
ସକଳ ଲୋକପରେ ରକ୍ଷି । ଭାବ ବିଷ୍ଟରେ ଭାବଗ୍ରାହୀ ॥
ତୁ ଅନ୍ତର୍ଗତ ବାଞ୍ଛା ଜାଣୁ । ତୋତେ ଗୋଚର ସର୍ବ ତେଣୁ ॥
ଯେ ଜନ ମହାଭୟ ପାଇ । ତୋର ଚରଣେ ଚିତ୍ତ ଦେଇ ॥
ଶରଣ ପାନ୍ତି ତୋର ପାଦେ । ତୁ ତାଙ୍କୁ ରଖୁ ଅପ୍ରମାଦେ ॥
ବିନାଶୁ ବିପଦ ବେଦନା । ତେଣୁ ତୋ ନାମ ବଜ୍ର ସେହ୍ନା ॥
ତେଣୁ ସକଳ ଲୋକପାଳେ । ଶରଣ ତୋ ପାଦ କମଳେ ॥
ପ୍ରସନ୍ନ ହୋଇ ଦୁଃଖୀ ଦେଖି । ଘୋର ଅସୁର ଦଣ୍ଡ ରଖି ॥
ସାଗର ସୁତ ଶଙ୍ଖାସୁର । ବଳେ ହରିଲା ବେଦ ମୋର ॥
ରଖିଲା ଦୁର୍ଗମ ଜଳଧି । ତେଣୁ ସରିଲା ମୋର ବୁଦ୍ଧି ॥
ଆଜ ଉପାୟ କିଛି ନାହିଁ । ତୋ ବିନୁ ଆହେ ଭାବଗ୍ରାହୀ ॥
ଆସୁ ଗୁହାର କର୍ଣ୍ଣେ ଶୁଣ । ଅସୁର ମାରି ବେଦ ଆଣ ॥
ବେଦାଙ୍ଗ ନାମ ତୋର ବନ୍ଧୁ । ମୋତେ ଉଦ୍ଧାର ନାଥ ଭୁନ୍ଧୁ ॥
ଏମନ୍ତ ବୋଲି ସ୍ତୁତି ଭଣି । ଜାଗିଲେ ପ୍ରଭୁ ଚକ୍ରପାଣି । ୪୦ ॥
ନିଦ୍ରା ଉପେକ୍ଷି ନରହରି । ପଦ୍ମ ଆସନେ ବିଜେ କରି ॥

ବସିଷ୍ଠ ଉବାଚ

ବ୍ରହ୍ମାର ମୁଖ ଗୁଣି ଧୀରେ । ବୋଲନ୍ତି ଶୁଣ ସର୍ବ ସୁରେ ॥
ଯେଉଁ ନିମନ୍ତେ ଅଛ ଆସି । ଆମ୍ଭେ ଜାଣିଲୁ ତା ବିଶେଷି ॥
ଯେ ହରି ଅଛୁ ତୁମ୍ଭ ଶିରୀ । ସାଗର ଅଂଶେ ଅବତରି ॥
ମୁଣ୍ଡି ହରିବ ତାର ପ୍ରାଣ । ଏବେ ସମସ୍ତେ ତୁମ୍ଭେ ଶୁଣ ॥
ଆଜଠାରୁ ଏ ଦେବଗଣ । କରିବେ ପଞ୍ଚ ଆଚରଣ ॥
କାର୍ତ୍ତିକ ମାସେ ପ୍ରାତଃସ୍ନାନ । ଆବର ତୁଳସୀ ସେବନ ॥
ହୋଇବେ ନିରାମିଷ ଭୋଜୀ । କ୍ରୋଧ ମତ୍ସର ମୋହ ତେଜି ॥
ସକଳ ବିଘ୍ନ ଯିବ କ୍ଷୟ । ମଣିବ ସେ ଦନୁ ତନୟ ॥
କହଇ ମହାଦେବ ଦାସ । କାର୍ତ୍ତିକବ୍ରତେ ହରି ତୋଷ ॥
ଧନ ମର୍ଯ୍ୟାଦାବନ୍ତ ହେବ । ଶ୍ରୀହରି ରୂପକୁ ପାଇବ ॥

ଇତି ଶ୍ରୀ ପଦ୍ମପୁରାଣେ ଉତ୍ତର ଖଣ୍ଡେ କାର୍ତ୍ତିକ ମାହାତ୍ମ୍ୟେ
ଶ୍ରୀକୃଷ୍ଣ ସତ୍ୟଭାମା ସମ୍ବାଦେ ଶଙ୍ଖାସୁର ବେଦ
ହରଣେ ନାମ ତୃତୀୟୋଽଧ୍ୟାୟଃ ।

---

## ଚତୁର୍ଥ ଅଧ୍ୟାୟ

ନାରଦ ଉବାଚ

ଇତ୍ୟୁକ୍ତ୍ୱା ଭଗବାନ୍ କୃଷ୍ଣଃ ସଫରୀତୁଲ୍ୟ ରୂପଧୃକ୍ ।
ଉତ୍ପପାତାଞ୍ଜଳୌ ବିନ୍ଧ୍ୟବାସିନଃ କଶ୍ୟପସ୍ୟ ସଃ ॥

ଆସନ୍ତା କାଲି ଏକାଦଶୀ । ଆଶ୍ୱିନ ଶୁକ୍ଳ ମୃଗଶିରୀ ॥
ତୁମ୍ଭ ଧନିଷ୍ଠା ପୁଣ୍ୟକାଳ । ସର୍ବ ମଙ୍ଗଳ ଯୋଗେ ଚଳ ॥
ମୀନ ସ୍ୱରୂପେ ସିନ୍ଧୁ ମାରେ । ପ୍ରବେଶ ହୁଅ ଯେ ଯାହାରେ ॥
ମୁଣ୍ଡି ହୋଇବ ମତ୍ସ୍ୟ ରୂପୀ । ନଦୀ ସରିତ ସିନ୍ଧୁ ବ୍ୟାପି ॥
ଖୋଜ ମାଟିବ ବେଦ ତୀରେ । ଯାଅ ସଣସ୍ତ କର ଦୂର ॥

ହରି ଆଦେଶ ଶିରେ ଘେନ । ବ୍ରହ୍ମା ଶଙ୍କର ସୁର ମୁନ ॥
ତଦବଧି ମୀନ ରୂପ ଧରି । ପ୍ରବେଶ ହୋଇଲେ ଲୁଣିବାରି ॥
ଏଥିଅନ୍ତେ ଯେ ଶୁଣ ସଖି । ଏ ଆଦ୍ୟ ଅବତାର କାର୍ତ୍ତି ॥
କଶ୍ୟପ ନାମେ ତପସ୍ୱିର । ବିନ୍ଧ୍ୟ ପର୍ବତେ ବାସ କରି ॥
ବସ୍ତୁ ସନ୍ତୋଷ ପ୍ରତିଆଶେ । ରହି ଯେ ଥିଲେ ଚତୁର୍ମାସେ ॥
ସେ ସ୍ଥାନେ ସରସ୍ୱତୀ ନଦୀ । ବିନ୍ଧ୍ୟ ପର୍ବତ ମୂଳୁ ଭେଦି ॥
ଦକ୍ଷିଣ ସାଗର ଗାମିନୀ । ସେ ଜଳେ ପ୍ରାତଃସ୍ନାନ ମୁନି ॥
ଅଣ ଉଦୟେ ସ୍ନାନ ସାରି । ସୂର୍ଯ୍ୟ ପ୍ରକାଶେ ସନ୍ଧ୍ୟା କରି ॥
ଦେବତା ପିତୃ ଆବାହନେ । ସନ୍ତୋଷ କରି ଜଳ ଦାନେ ॥
ଆଦିତ୍ୟ ଅର୍ଥେ ଅର୍ଘ୍ୟ ତୋଳି । ଘେନଲେ ହୃଦକ ଅଞ୍ଜଳି ॥
ଏହି ସମୟେ ନରହରି । କ୍ଷୁଦ୍ର ସଫରୀ ରୂପ ଧରି ॥
ଋଷିଙ୍କ କରେ ଉତପତି । ଦେଖି ସନ୍ତୋଷ ମହାଯତି ॥
ମନେ ବିଚାରି ମହାଋଷି । ଏ ମୀନ ମୀନ ଭୟେ ଆସି ॥
ଶରଣ ମୋର କରିଅଛନ୍ତି । ଯତ୍ନେ ରଖିବି କମଣ୍ଡଳେ ॥
ଏମନ୍ତ ବିଚାରି ମନରେ । ରଖିଲେ କମଣ୍ଡଳ ମଧ୍ୟରେ ॥
ପୁଣି ପ୍ରବେଶ ଜଳେ ଯାଇ । ସେ ମୀନ କମଣ୍ଡଳେ ଥାଇ ॥
ଡାକଇ ଋଷି ତପଃଶୀଳ । ଏବେ ସଂକୀର୍ଣ୍ଣ କମଣ୍ଡଳ ॥
ଉତ୍ସର୍ଗ ହେଲେ ମୋର କାୟେ । ମନେ ଉପୁଜେ ମହା ଭୟେ ॥
ସାରସ ଗଣେ ଦେଖି ନେବେ । ତୁ ମୋତେ ରଖି ଭଲ ଠାବେ ॥
ଶୁଣି କଶ୍ୟପ ମହାଋଷି । ସେ ମୀନ କୂପରେ ନବେଶି ॥
ତହିଁ ପୂରିଲା କଳେବର । ତା ଦେଖି ମନେ ଚମତ୍କାର ॥
ମତ୍ସ୍ୟକୁ ଉଦ୍ଧରି ତୁରିତ । ସନ୍ନିଧେ ଥିଲା ଯେ ସରିତ ॥
ତହିଁ ପ୍ରବେଶ ନେଇ କଲା । ସେ ମୀନ ସରିତେ ବଢ଼ିଲା ॥
ଦେଖି ଆଶ୍ଚର୍ଯ୍ୟ ତପସ୍ୱୀ । ବହୁତ ବପ୍ର ଠୂଳ କରି ॥

ମୀନକୁ ଧରି ଧର୍ମ ବୃକ୍ଷେ । ମେଲିଲେ ସରୋବର ଜଳେ ॥
ଚର୍ଵିଂ ହୋଇଲା ସନ୍ଧ୍ୟା ଠାବ । ମୀନ ଡାକଇ ରଖ ଜୀବ ॥
ଶୁଣି ବିସ୍ମୟ ବିପ୍ରଗଣ । ମନେ ସୁମରି ନାରାୟଣ ॥
ମୀନକୁ ସରୋବରୁ ନେଇ । ଗମ୍ଭୀର ନଦୀ ମାର୍ଗେ ଥୋଇ ॥
ଚର୍ଵିଂ ପୂଜିଲେ ମୀନ କାୟା । ବିପ୍ରେ ଜାଣିଲେ ବିଷ୍ଣୁ ମାୟା ॥
ବେଦ ବଚନେ ସ୍ତୁତି ଗାଇ । ମତ୍ସ୍ୟକୁ ସିନ୍ଧୁ ଜଳେ ନେଇ ॥
ଦେବଙ୍କ ହିତେ ଦଇତାରି । ସାଗରେ ବିଶ୍ୱରୂପ ଧରି ॥
ସୁବର୍ଣ୍ଣମୟ ମତ୍ସ୍ୟ ବେହୀ । ରୂପକୁ ପ୍ରତିତୁଲ୍ୟ ନାହିଁ ॥
ରଙ୍ଗ ଲୋଚନ ବେନି ଶୋଭା । ଯେସନେ ବାଳଅର୍କ ପ୍ରଭା ॥
ରଙ୍ଗ ଅଧର ରଙ୍ଗ ପୃଷ୍ଠ । ମେରୁ ସମାନ ମହା ମୋଟ ॥
ଗିରି ସଦୃଶ ପୃଚ୍ଛମାନ । ଗର୍ଜ୍ଜନେ ଆକ୍ରାନ୍ତ ଗଗନ ॥
ଧରଣୀ ହୋଏ ଟଳମଳ । ସିନ୍ଧୁ ଉଚ୍ଛୁଳ ଲଙ୍ଘେ କୂଳ ॥
ନିଶ୍ୱାସ ପବନ ବିତାସେ । ପର୍ବତେ ଉଡ଼ିଲେ ଆକାଶେ ॥
ଗ୍ରହ ନକ୍ଷତ୍ର ମେଘମାନେ । ରହି ନ ପାରି ଅନ୍ତରୀକ୍ଷେ ॥
ଲୁଚିଲେ ଅତି ଊର୍ଦ୍ଧ୍ୱ ଦେଶେ । ଭୟେ କମ୍ପନ୍ତି ଦଶଦିଶେ ॥
ସମୁଦ୍ରେ ପଶି ମହାମୀନ । ଚହଟି କରଇ ଗର୍ଜନ ॥
ଜୁହୁଙ୍କ ଦିଶେ କଳେବର । ଚଡ଼ାଗେ ଯେସନେ ମନ୍ଦର ॥
ଜଳଧି ତେସନକ ମତେ । ରହିଲା ମତ୍ସ୍ୟ ପୃଚ୍ଛଘାତେ ॥
ସିନ୍ଧୁ ହୋଇଲା ଜଳଶୂନ୍ୟ । ଶୁଖି ଦିଶନ୍ତି ସର୍ବ ମୀନ ॥
ତାହାଙ୍କ ମଧ୍ୟେ ଶଙ୍ଖାସୁର । ଦେଖି ଆନନ୍ଦ ଚକ୍ରଧର ॥
ତକ୍ଷଣେ ନିଜ ରୂପ ଧରି । ନିଗମ-ଚୋରର ବଧ କରି ॥
ମିଳିଲେ ବଦରିକା ବନେ । ଦୈତ୍ୟ କମ୍ପଇ ଭୟମନେ ॥
ଗୋବିନ୍ଦ ତା'ର ଭୁଜ ଧରି । ବଦନେ ବଦନ ସଞ୍ଚାରି ॥
ପବନ ପୂର୍ଣ୍ଣ କଲେ ଅଙ୍ଗେ । ତକ୍ଷଣେ ଶଙ୍ଖ ତନୁ ଭାଙ୍ଗେ ॥

ମାଂସ ଶୋଣିତ ଚର୍ମ କେଶ । ଉଡ଼ ପଡ଼ିଲେ ନାନା ଦେଶ ॥
ତା ଜୀବ ଲଭିଲା ମୁକତି । ରହିଲା ଆଗେ କର ଅସ୍ଥି ॥
ଦେଖି ସନ୍ତୋଷ ବନମାଳୀ । ଧେନଲେ ବାମକରେ ତୋଳି ॥
ମଧୁରେ କଲେ କମ୍ବୁସ୍ୱର । ଧ୍ୱନି ଶୁଭିଲା ତିନପୁର ॥
ଶବଦ ଶୁଣି ସୁରଗଣ । ସନ୍ନିଧେ ମିଳିଲେ ତକ୍ଷଣ ॥
ଗୋପ୍ୟ ଯେ ଥିଲେ ବେଦ ସ୍ୱର । ତକ୍ଷଣେ ନିଜ ରୂପ ଧରି ॥
ଶାସ୍ତ୍ର ସହିତେ ଇତିହାସ । ମିଳିଲେ ନାରାୟଣ ପାଶ ॥
ଦେଖି ଆନନ୍ଦ ଲକ୍ଷ୍ମୀନାହା । ବ୍ରହ୍ମାଙ୍କୁ ସମର୍ପିଲେ ତାହା ॥
ବିଧାତା ପାଇ ନିଜ ପଦ । ସଂସାରେ ଉଦେ଼କଲେ ବେଦ ॥
ପୁଣି ବିଷ୍ଣୁଙ୍କୁ ତୋଷ ମନେ । ପୂଜିଲେ ବଦରିକା ବନେ ॥
ଜଗନ୍ନାଥଙ୍କ ମନ ତୋଷି । ରହିଲେ ବିଷ୍ଣୁ ଏକାଦଶୀ ॥
ଶିବ ସହିତେ ସୁରଗଣେ । ଜଣାଇ ଗୋବିନ୍ଦ ଚରଣେ ॥
ବୋଲନ୍ତି ଶୁଣ ପଦ୍ମମୁଖ । ତୁମ୍ଭ ପ୍ରସାଦେ ଆମ୍ଭ ଦୁଃଖ ॥
ଶଙ୍ଖରୁ ଦୂର ହୋଇଗଲା । ସାଗର ସୁତ ଯତ୍ନ ମଲା ॥
ଏ ତୁମ୍ଭ ଦୁର୍ଲ୍ଲଭ କୀରତି । ପ୍ରାଣୀଙ୍କି ଦେଇ ସଦଗତି ॥
ଯେବଣ କାଳେ ଭଗବାନ । ଆମ୍ଭଙ୍କୁ ହୋଇଲେ ପ୍ରସନ୍ନ ॥
ଆରେକ ଦିନେ ଅବତରି । ସାଗରେ ମୀନ ରୂପ ଧରି ॥
ବେଦ ଉଦ୍ଧରି ଦୈତ୍ୟ ନାଶି । ଅଶେଷ ଜନ ମନ ତୋଷି ॥
ଏତେ ଦୁର୍ଲ୍ଲଭ ଯତ୍ନ ଜାତ । ଯେ ଦିନୁ ହେଲା ମହାବ୍ରତ ॥
ଦଶମୀ ତିଥି ଆଦି କରି । ଦ୍ୱାଦଶୀ ମଧ୍ୟେ ବ୍ରତାସ୍ତରି ॥
ମଧ୍ୟ ଦିବସ ଉପବାସୀ । ବ୍ରତ କରିବେ ଏକାଦଶୀ ॥
ବେନି ପକ୍ଷରେ ବେନି ବାର । ବ୍ରତ ପାଳିବେ ସୁର ନର ॥
ସଙ୍କଳ୍ପେ ତୁମ୍ଭ ନାମ ଚିନ୍ତି । ଖଣ୍ଡିବେ ତ୍ରିଗୁଣ ବିପତ୍ତି ॥
ଅନ୍ତେ ଲଭିବେ ତୁମ୍ଭ ପୁରୀ । ଏମନ୍ତ ଆଜ୍ଞା ଦେବା ହରି ॥

ଶୁଣି ସନ୍ତୋଷ ଦୟାନିଧି । ବୋଇଲେ ବ୍ରତ ହେଉ ସିଦ୍ଧି ॥
ଏମନ୍ତ ବୋଲି ଚତୁର୍ଭୁଜ ଚଳି । ପ୍ରୟାଗ ତୀର୍ଥେ ଯାଇ ମିଳି ॥
ପବିତ୍ର ଜଳେ ସ୍ନାନ କରି । ବେଗେ ପୂଜିଲେ ଦଇତାରି ॥
ବ୍ରହ୍ମା ବହିଲେ ପୁଣି ବ୍ରତେ । ସର୍ବ ଦେବଙ୍କ ସନ୍ନିମତେ ॥
କାର୍ତ୍ତିକ ମାସ ଆଗମନେ । ଜଣାଇ ଚତୁର୍ଭୁଜ ସନ୍ନିଧାନେ ॥
ବୋଲନ୍ତି ଏ କାର୍ତ୍ତିକ ମାସ । ତୁମ୍ଭେ କରିବ ଜଳେ ବାସ ॥
ଯେବଣ ଜନ ପ୍ରାତଃକାଳେ । ସ୍ନାନ କରିବେ ଯାଇ ଜଳେ ॥
ଅଧମେ ହେବେ ବ୍ରତାବୃତ୍ତ । ହବିଷ ଅନ୍ନ ଭୋଗକରି ॥
କରିବେ ତୁମ୍ଭ ନାମ ଜପ । ଖଣ୍ଡିବେ ଶତଜନ୍ମ ପାପ ॥
ପାଇବେ ପରମ ମୁକତି । ଏ ଆଜ୍ଞା ଦେଲ ଲକ୍ଷ୍ମୀପତି ॥
ହେଉ ବୋଇଲେ ନାରାୟଣ । ଶୁଣି ସନ୍ତୋଷ ସୁରଗଣ ॥
ପୁଣି ସେଠାରୁ ବିଜେ କରି । ମିଳିଲେ ବାରାଣସୀ ପୁରୀ ॥
ସେ ସ୍ଥାନେ ଶିବ ପୂଜା କରି । ବ୍ରହ୍ମାଙ୍କୁ ଗୁହାରି ନରହରି ॥
ବୋଲନ୍ତି ଶୁଣ ବେଦକର । ଏ ତିନ କ୍ଷେତ୍ର ପ୍ରିୟ ମୋର ॥
ପ୍ରୟାଗ ବଦରିକା କାଶୀ । ଯେବଣ ଜନ ଏଥେ ଆସି ॥
ତୀର୍ଥେ ସ୍ନାହାନ କରି କ୍ଷେତ୍ରେ । ସେବା ରହିବ ଦିନ ମାତ୍ରେ ॥
ତାହାକୁ ନ ଦଣ୍ଡିବ ଯମ । ଅନ୍ତେ ସେ ଯିବ ମୋର ଧାମ ॥
ଏମନ୍ତ ଆଜ୍ଞା ପରମାଣେ । ବିଧାତା ଲଭିଲେ ପ୍ରମାଣେ ॥
କାର୍ତ୍ତିକ ବ୍ରତ ଏକାଦଶୀ । ମହିମା ଲଭିଲେ ବିଶେଷି ॥
ସଂସାର ଜନଙ୍କୁ ନିସ୍ତାରି । ଯେ ଯାହା ପୁରେ ବିଜେ କରି ॥
କଥା ପ୍ରସଙ୍ଗେ ନାରାୟଣ । କହିଲେ ପବିତ୍ର ପୁରାଣ ॥
ପ୍ରକାଶ ପଦ୍ମମୁଖୁ ଯେଣୁ । ପଦ୍ମ ପୁରାଣ ନାମ ତେଣୁ ॥
ଉତ୍ତର ଖଣ୍ଡେ ଯେ ମହିମା । ଶୁଣି ସନ୍ତୋଷ ସତ୍ୟଭାମା ॥
ତାଙ୍କ ବଲ୍ଲଭ ପାଦତଳେ । ଅଶେଷ ଭକ୍ତଜନ ମେଳେ ॥

ଭଣଇଁ ମହାଦେବ ଦାସ । ଦୟାସାଗର ପୀତବାସ ।୧୦୨।।

ଇତି ଶ୍ରୀ ପଦ୍ମ ପୁରାଣେ ଉତ୍ତରଖଣ୍ଡେ କାର୍ତ୍ତିକ ମାହାତ୍ମ୍ୟ ମହିମା ବତାର
ମତ୍ସ୍ୟମା କଥନେ ବେଦଚୌର ଶଙ୍ଖାସୁର ବଧୋ
ନାମ ଚତୁର୍ଥୋଽଧ୍ୟାୟଃ

---

## ପଞ୍ଚମ ଅଧ୍ୟାୟ

### ଶୁକ ଉବାଚ

ଏମନ୍ତେ କୃଷ୍ଣ ବାକ୍ୟ ଶୁଣି । ସେ ଶତ୍ରାଜିତର ଦୁଲଣୀ ।।
ପୁଚ୍ଛନ୍ତ ପତି ସ୍ନେହ ଯେନ । ହେ ନାଥ କହ ପୁଣ୍ୟ ଧ୍ୱନ ।।
କାର୍ତ୍ତିକ ମାହାତ୍ମ୍ୟ ଦୁର୍ଲ୍ଲଭ । ଯେ ଧର୍ମ ସଂସାରେ ସୁଲଭ ।।
ଯେ ଧର୍ମ କଥା ବଧିକୃତ । କହ ସନ୍ତୋଷ କର ଚିତ୍ତ ।।
କହନ୍ତ କରୁଣା ସାଗର । ହେ ପ୍ରିୟେ ଶୁଣ ଧର୍ମସାର ।।
ପୂର୍ବେ ଯେ ପୃଥୁ ଚକ୍ରବର୍ତ୍ତୀ । ସୂର୍ଯ୍ୟ ବଂଶରେ ଉତପତ୍ତି ।।
କୃତ ଯୁଗରେ ମହାରାଜା । ସୁଖେ ପାଳଇ ଜନପ୍ରଜା ।।
ଧରଣୀ ଶସ୍ୟପୂର୍ଣ୍ଣ କରି । ଦୁଷ୍ଟ ଦାନବ ଦର୍ପ ହରି ।।
ବିଷ୍ଣୁର ଅଙ୍ଗ ଅବତାର । ତେଣୁ ବିବେକ ନୃପବର ।।
ନାରଦ ମୁନିଙ୍କ ଅଗ୍ରତେ । ଧର୍ମ ପୁଚ୍ଛଇ ନିତ୍ୟେ ନିତ୍ୟେ ।।
ଦିନେକି ଆସ୍ଥାନେ ବସାଇ । ମୁନିଙ୍କି ବୋଲେ ନରସାଇଁ ।।
ହେ ମୁନି ବିଷ୍ଣୁ ପରାୟଣ । ତୁମ୍ଭେ ସକଳ ଧର୍ମ ଜାଣ ।।
କହ କେବଣ ଧର୍ମେ ପ୍ରାଣୀ । ଅନ୍ତେ କୃତାନ୍ତ ଲୋକ ଜିଣି ।।
ବସନ୍ତି ଗୋବିନ୍ଦ ମନ୍ଦିରେ । ପୁଣ ନ ପଡ଼ନ୍ତି ସଂସାରେ ।।

### ନାରଦ ଉବାଚ

ତ୍ୱଂ ବିଷ୍ଣୋର୍ବଂଶଭୂତସ୍ତ ନାଜ୍ଞାତଂ ବିଦ୍ୟତେ ତବ
ତଥାପି ବଦତଃ ସମ୍ୟକ୍ ମାହାତ୍ମ୍ୟଂ ଶୃଣୁ ବେନଜଃ ।

କେହ୍ବା କେମନ୍ତେ ଧର୍ମ ପୁଣ | ମୁନି କହନ୍ତି ବତ୍ସେ ଶୁଣ ||
କାର୍ତ୍ତିକ ବ୍ରତ ଧର୍ମ ଫଳେ | ମୁକତି ଲଭନ୍ତି ନିଶ୍ଚଳେ ||
ଅଶେଷ ଜନ୍ମ ପାପ ହରେ | ନିଶ୍ଚିନ୍ତେ ବସେ ବିଷ୍ଣୁ ପୁରେ ||
ଏମନ୍ତ ଧର୍ମ ସର୍ବ ସିଦ୍ଧି | ଶୁଣ ସେ ବ୍ରତରାଜ ବିଧି ||
ପୂର୍ବେ ବିଧାତା ପଦ୍ମ ଯୋନି | ବିଷ୍ଣୁ ଆଦେଶ ଶିରେ ଘେନି ||
ଅମର ସଭା ମଧ୍ୟେ ବସି | କାର୍ତ୍ତିକ ଧର୍ମ ପ୍ରକାଶି ||
ଯାହା କହିଲେ ବିଧିମତେ | ସେ କଥା ଶୁଣ ଏକଚିତ୍ତେ ||
ଆଶ୍ୱିନ ଶୁକ୍ଳ ଏକାଦଶୀ | କାର୍ତ୍ତିକ କୃଷ୍ଣ ଉପବାସୀ ||
ବ୍ରତ କରିବେ ଯେଉଁ ଜନ | ସଂକଳ୍ପ ଇଚ୍ଛି ହେବ ଦିନ ||
ରଜନୀ ପ୍ରାନ୍ତକାଳ ଦେଖି | ଶଯ୍ୟାରେ ଶୟନ ଉଠେଷି ||
ଗ୍ରାମ ଉପାନ୍ତେ ନୈଋତେ | ଗମିବ କର୍ମାଣି ନିମନ୍ତେ ||
ସେହି ଦିଗକୁ ମୁଖ କରି | ଉତ୍ତରେ ତିନି ତାଳ ମାରି ||
ଅଧୋବଦନେ ତୃଣାସନେ | କର୍ମାଣି ବସିବ ମଉନେ ||
ପାଶେ ଉଦକ ଥିବ ନେଇ | ମୃତ୍ତିକା କଟୁ ଥିବ ଥୋଇ ||
ଶଉଚ ହେବ ବେନି ଯୋଗେ | ସ୍ୱୟୁ ଗୁହ୍ୟରେ ଏକ ଲିଙ୍ଗେ ||
ବାମ ହସ୍ତରେ ଦଶବାର | ସପତ ବେନି କରସ୍ଥଳ ||
ପାଦ ଯୁଗରେ ତିନି ତିନି | ଶୌଚେ ମୃତ୍ତିକା ଜଳ ଘେନି ||
ପୁଣି ପ୍ରବେଶ ହୋଇ ଘରେ | ବାସ ଆସନ ଘେନି କରେ ||
ପ୍ରବେଶ ହୋଇ ଜଳ ଘାଟେ | ଯେ ସେ ବିହିତ କର୍ମପାଠେ ||
ଆଣିବ ଦାନ୍ତକାଠି ଖୋଜ | ବନପ୍ରାନ୍ତରେ ଯେତେ ବର୍ଜି ||
ସମିଧ କଣ୍ଟକ ଦୁର୍ଗନ୍ଧ | ଯେ ଦେବ ସ୍ଥାନର ପ୍ରସିଦ୍ଧ ||
ଖର ସମିଧ ଲତା ତୃଣ | ଏତେ ଉତପଷି ଅନେ ଆଣ ||
ଯଦ୍ୟପି ବୃକ୍ଷ ନ ମିଳିବ | ରସାଳ ପତ୍ରରେ ଘଷିବ ||
ଆପେ ବେପିଲା ବୃକ୍ଷ ଗୁଡ଼ | ପତ୍ର ତୋଳିବ ମନ୍ତ୍ର ପଢ଼ି ||

ଦନ୍ତ ମାଜିବ ଯତ୍ନ କରି । ଚତୁର୍ଥୀ ଦିନ ଅପହରି ॥
ଉଆଁସ ଷଷ୍ଠୀ ଏକାଦଶୀ । ଯେବେ ଗ୍ରହଣ ରବି ଶଶି ॥
ଏ ଦିନ ନ ଘଷିବ ଦନ୍ତ । ଦ୍ୱାଦଶବାର ଜଳେ ଧୌତ ॥
ନୋହିଲେ ଦିନ ଅନୁସରି । ରଜଣୀ ଥାଉଁ ଶୁଦ୍ଧ କରି ॥
ବିଶେଷ ଗ୍ରହଣ ବର୍ଜିତ । ତିଳ ଅର୍ଦ୍ଧକା ଏହି ମତ ॥
ନାଭି ପ୍ରମାଣେ ଜଳେ ପଶି । ସ୍ନାନ କରିବ ମନ୍ତ୍ର ଘୋଷି ॥
ସୁନ୍ଦର ଦେବ ଜନାର୍ଦ୍ଦନ । ବ୍ରତ କରିବ ନିବେଦନ ॥
ହେ ଦେବ ଦେବ ଲକ୍ଷ୍ମୀପତି । ଏ ମୋର ବ୍ରତ ତୁମ୍ଭ ପ୍ରୀତି ॥
କାର୍ତ୍ତିକ ପ୍ରାତଃସ୍ନାନ ଫଳ । ସୁଦୟା କର ଆଦିମୂଳ ॥
ଅଶେଷ ଜନ୍ମ ପାପ ହର । ଦୁଃଖନାଶନ ବାନା ତୋର ॥
ଏମନ୍ତ ବୋଲି ସ୍ନାନ ସାରି । ସୂର୍ଯ୍ୟ ଅବଲୋକନ କରି ॥
ସ୍ତୁତି କରିବ ଯୋଡ଼ି କର । ବୋଲିବ ହାହା ପାପନଶ୍ୱର ॥
ତୁ ଦେବ ଦାମୋଦର ମୂର୍ତ୍ତି । କାର୍ତ୍ତିକମାସେ ଜଳେ ସ୍ଥିତି ॥
ମୁକ୍ତି ପ୍ରସରେ ତବ ତନ୍ତୁ । ମୋତେ ଉଦ୍ଧାର ଭବ ଜନ୍ତୁ ॥
ଏମନ୍ତ ବୋଲି ସ୍ତୁତି କରି । ଜଳ ଅଞ୍ଜଳି କରେ ଧରି ॥
ଆଦିତ୍ୟ ଦେବ ଜଳ ଦାନ । ବୋଲିବ ନମୋ ନିରଞ୍ଜନ ॥
ସଜ୍ଞା ବଲ୍ଲଭ ଜ୍ୟୋତିର୍ମୟ । ମୋର ଦୁରିତ କର କ୍ଷୟ ॥
ଏମନ୍ତ ବୋଲି ସ୍ତୁତି ଭଣି । ସ୍ନାହାନ ଫଳ ଲଭେ ପୁଣି ॥
ପୁଷ୍କରିଣୀରେ ପଞ୍ଚଗୁଣ । ନଦୀରେ ଦଶ ପରିମାଣ ॥
ତୀର୍ଥେ ଯେ ସ୍ନାନ କରେ ଯାଇ । ଲକ୍ଷଗୁଣରେ ଫଳ ପାଇ ॥
ଏମନ୍ତେ ସ୍ନାନ ଫଳ ଆଦି । କହିବା ବସ୍ତ୍ର ବର୍ଣ୍ଣ ବିଧି ॥
ନ ପିନ୍ଧି କଳା ରଙ୍ଗ ବାସ । ଶୁକଳ ବସନ ବିଶେଷ ॥
ଅଥବା ପୀତ ବସ୍ତ୍ର ପିନ୍ଧି । ଆବର ବସ୍ତ୍ର ନୋହେ ସିଦ୍ଧି ॥
ତହୁଁ ଦେବତାଳୟେ ଯିବ । ଯେ ଦେଶେ ଥିବ ଯେଉଁ ଦେବ ॥

ବିଶେଷ ବିଶ୍ୱର ଆଜ । ଏ ବେଳ ଦେବଙ୍କର ମୂଳ ॥
ଦେବତା କରି ବରଣନ । ନିବେଦି ପୂଜା ଦ୍ରବ୍ୟମାନ ॥
ଗନ୍ଧ ଚନ୍ଦନ ପୁଷ୍ପ ଫଳେ । ଧୂପ ଘୃତାଦି ସେବା ମିଳେ ॥
ବିଧି ଉପାଧି ଦ୍ରବ୍ୟ ପୂଜ । ଯେ ବେଳେ ଯେଉଁ ପୁଷ୍ପ ବର୍ଜି ॥
କାର୍ତ୍ତିକ ମାସେ କଳଅରି । ପୂଜା କରିବ ଗଦାଧରି ॥
ଅରଖ ଦୁଦୁରି ଗଇଷ । ମଲ୍ଲିକ ଆଦି ପଞ୍ଚପୁଷ୍ପ ॥
ବିଷ୍ଣୁଙ୍କୁ ନ ସମର୍ପି ଏହା । ଶିବେ ଅଯୋଗ୍ୟ ଶୁଣ ଯାହା ॥
ଜବା ଉତ୍ପଳ କୁନ୍ଦ ଯୁଇ । ସେବନ୍ତି ଶିବଙ୍କୁ ନ ଦେଇ ॥
ତୁଳସୀ ଗଣେଶ ନ ପୂଜ । ଦୁର୍ଗାଙ୍କୁ ଦୁର୍ବାଦଳ ବର୍ଜି ॥
ଏଥି ଉତ୍ତାରେ ପୂଜାବିଧି । ସକଳ କର୍ମେ ଚିତ୍ତ ଶୁଦ୍ଧି ॥
ଜପିବ ନାରାୟଣ ନାମ । ବାଞ୍ଛା କରିବ ଫଳକାମ ॥
ଶାସ୍ତ୍ର ପୁରାଣ ଗୀତା ବାଣୀ । ବିଷ୍ଣୁ ଚରିତ ଯେତୁ ଭଣି ॥
ତାହା ଶୁଣିବା ମନ ଦେ'ସେ । ଭଜନ ଗୁରୁ ଉପଦେଶେ ॥
ମନରେ ସଂକଳ୍ପ କରିବ । କାର୍ତ୍ତିକେ ତ୍ୟାଗ ଯେତେ ଦ୍ରବ୍ୟ ॥
ତାହା କହିବା ବିଧିମତେ । ଶୁଣ ସୁଜନ ଏକ ଚିତ୍ତେ ॥
ଏ ପଦ୍ମ ପୁରାଣ ଭକତ । ଉତ୍ତର ଖଣ୍ଡେ ସାରସ୍ୱତ ॥
ଶ୍ରୀକୃଷ୍ଣ ସତ୍ୟା ସନ୍ନିଧାନେ । କହନ୍ତି କାର୍ତ୍ତିକ ବର୍ଣ୍ଣନେ ॥
ସେ ପତି ପତ୍ନୀ ପାଦତଳେ । ଅନେକ ଜନ୍ମ ତପ ଫଳେ ॥
ନମଇଁ ମହାଦେବ ଦାସେ । କରୁଣା କର ପୀତବାସ ॥

ଇତି ଶ୍ରୀପଦ୍ମପୁରାଣେ ଉତ୍ତରଖଣ୍ଡେ କାର୍ତ୍ତିକ ମାହାତ୍ମ୍ୟେ କାର୍ତ୍ତିକ ବ୍ରତ ସଂକଳ୍ପେ ନାମ ପଞ୍ଚମୋଽଧ୍ୟାୟଃ

———

# ଷଷ୍ଠ ଅଧ୍ୟାୟ

## ନାରଦ ଉବାଚ

କାର୍ତ୍ତିକବ୍ରତିନଂ ପୁଂଷାଂ ନିୟମା ଯେ ପ୍ରକୀର୍ତ୍ତିତାଃ ।
ତାନ୍ ଶୃଣୁଷ୍ୱ ମହାରାଜ କଥ୍ୟମାନାନ୍ ସମାସତଃ ॥

କହନ୍ତି ବ୍ରହ୍ମାଙ୍କ କୁମର । ଶୁଣ ରାଜନ ଧର୍ମସାର ॥
କାର୍ତ୍ତିକ ବ୍ରତ ଯାହା ଅଛି । ହବିଷ୍ୟ ଅର୍ଥେ ଯାହା ଇଚ୍ଛି ॥
ବ୍ରହ୍ମାଙ୍କ ବଚନେ ବହିତ । ଯେ ବିଷ୍ଣୁ ପ୍ରିୟ ମହାବ୍ରତ ॥
ତାହା କହିବା ବିଧିମତେ । ସଂସାର ଜନଙ୍କର ହିତେ ॥
ଆତ୍ମାର କାରଣ ବସ୍ତୁରେ । ଯେ ଜନ ପାଳିବ ସଂସାରେ ॥
ମଧୁ ମାଂସାଦି ଯେ ଆମିଷ । କୋଳଥ ମସୁର ଯେ ମାଂସ ॥
ବାର୍ତ୍ତାକ ଆଦି କଣ୍ଟାଫଳ । କୁଷ୍ମାଣ୍ଡ ଆଦି ମଧୁରାଳ ॥
ଅଗସ୍ତି ବନ୍ଧୁ ଯେତେ ଶାକ । କାର୍ତ୍ତିକେ ବର୍ଜିବ ସେତେକ ॥
ଯେ କୃଷ୍ଣ ବର୍ଣ୍ଣ ରଙ୍ଗ ଜ୍ୟୋତି । କାର୍ତ୍ତିକେ ନ ଭକ୍ଷଇ ବ୍ରତୀ ॥
ଲେମ୍ବୁ ଜମ୍ବୀର ବହୁବୀଜ । ମୂଳା କକଡ଼ା କଙ୍କା ଭେଜ ॥
ତିଳ ଏରଣ୍ଡ ରସ ବେନ । କାର୍ତ୍ତିକେ ଅଙ୍ଗରେ ନ ଘେନ ॥
ଅଜା ମଇଁଷି ବେନ କ୍ଷୀର । କାର୍ତ୍ତିକେ ନ କର ଆହାର ॥
ତାମ୍ବୂଳ ଆଦି ମୁଖବାସ । ଭକ୍ଷଣେ ଅତି ବଡ଼ ଦୋଷ ॥
ନଇତ ଦ୍ରବ୍ୟ ବା ଉଚ୍ଛିଷ୍ଟ । ଦଗ୍ଧ ପଦାର୍ଥ ଅପ୍ରତିଷ୍ଠ ॥
ବିଷ ପ୍ରୟୋଗ ଦ୍ରବ୍ୟ ଯେତେ । ସବୁ ବର୍ଜିବ ମହାବ୍ରତେ ॥
କୁସଙ୍ଗ ପରିହାସ ଖେଡ଼ । କଳହ କ୍ରୋଧ ହିଂସା ହୁଡ଼ ॥
ମିଥ୍ୟା ବଚନ ନିନ୍ଦା ଛଳ । କାର୍ତ୍ତିକେ ବର୍ଜିବ ସକଳ ॥
ଚଣ୍ଡାଳେ କଥା ନ କହିବ । ମ୍ଳେଚ୍ଛ ସଂସର୍ଗ ନ କରିବ ॥
ଶୟନେ ନ ଇଚ୍ଛିବ ସଙ୍ଗ । ନ ଦେଖି କୃତ ନଟ ରଙ୍ଗ ॥
ବୃକ୍ଷ ଆରୋହଣ ନ କର । ଅଥଳ ଜଳେ ନ ପହଁର ॥

ଭୁଜଙ୍ଗେ ନ କରିବ କ୍ରୀଡ଼ା । ଯେଣେ ଆତ୍ମାକୁ ଲାଗେ ପୀଡ଼ା ॥
ତେଣେ ନୋହିବ ପରବେଶ । ନ କର ପର ପାକ ଗ୍ରାସ ॥
ଏତେ ବର୍ଜିତ କର ନିତ୍ୟେ । ଶୁଣ କହିବା ଯେବା କୃତ୍ୟେ ॥
ହବିଷ୍ୟ ଅନ୍ନ ଅର୍ଥେ ଧାନ । ବର୍ଜିତ ଇଙ୍ଗ କୃଷ୍ଣ ବର୍ଣ୍ଣ ॥
ଶରଦ ଅନ୍ତେ ଯେତୁ ପାଚ । ବହୁ ଖଧାନେ ତାହା ସଞ୍ଚ ॥
ଏତେ ଜାଗିରୁ ଧାନ ଫଳ । ଯେ ଶୁଦ୍ଧ ସର୍ବାଙ୍ଗ ଶୁକଳ ॥
ସେ ଧାନ ତଣ୍ଡୁଳ କରିବ । ଯେବା କଳଙ୍କ ଅପହର ॥
ଅନ୍ନ ବାନ୍ଧିବ ଶୁଦ୍ଧ ପାତ୍ରେ । ଯେବା ବର୍ଜିତ ପଞ୍ଚ ପାତ୍ରେ ॥
ବ୍ୟଞ୍ଜନ ଅର୍ଥେ ଯାହା କଲି । ସେ କଥା କହିବା ସଂକ୍ଷେପି ॥
ଅଗ୍ନି ଅପାକ ଯେଉଁ ଲୁଣ । ହବିଷ୍ୟ ଯୋଗେ ତାକୁ ଆଣ ॥
ଗୋକ୍ଷୀର ଘୃତାଦି ଲବଣୀ । ବ୍ରାହ୍ମଣ ମନରୁ ନ କଣି ॥
ମଦ୍ୟପ ଜନ ନ ଛୁଇଁବ । ଏମନ୍ତ ଗୋରସ ହୋଇବ ॥
କାକୁଡ଼ି ବହୁବୀଜ ମଧ୍ୟେ । ବନ୍ୟଳ ଫଳ ଲେଖି ଶୁଦ୍ଧେ ॥
ମୂଳକେ ଯୋଗ୍ୟ ସର୍ବସାରୁ । କୃଷ୍ଣ ବର୍ଣ୍ଣରେ ମୁଗ କରୁ ॥
ଶୁକଳ ଇକ୍ଷୁ ନାରିକେଳ । ଅଗସ୍ତି ଶାକ ଧାତ୍ରୀ ଫଳ ॥
ଆର୍ଦ୍ରକ ମୂଳ ଅତ୍ରାଗେ । ସମ୍ପାଦି ଶୁଦ୍ଧ ପାତ୍ର ଯୋଗେ ॥
ଯାହାକୁ ଯେ ଅବା ମିଳିବ । ନ ପାଇ ବିମୁଖ ନୋହିବ ॥
ଅନ୍ନ ସଂଯୋଗେ ପାତ୍ର ସାର । କହିବା ଶୁଣ ନୃପବର ॥
ଶାଳ ପଣସ ରମ୍ଭା ତରୁ । ପଲାଶ ନ ଘେନ ମଧ୍ୟରୁ ॥
ଏ ସ୍ଥିର ବୃକ୍ଷ ଯେବା ମିଳେ । ଅନ୍ନ ସଂଯୋଗିବ ସେ ଦଳେ ॥
ଦ୍ୱିଖଣ୍ଡ ସ୍ନାହାନ ନିମନ୍ତେ । ତନ୍ଦୁକଣ ବା[illegible] କଳେ ଚିତ୍ତେ ॥
ଷୋଡ଼ଶ ରସ ଅଙ୍ଗେ ଘେନ । ଯେତେ ଦିବସ ଧର୍ମ ଦାନ ॥
ସେ କଥା ଶୁଣ ଏକଚିତ୍ତେ । ବିଶେଷେ ଏକାଦଶୀ ବ୍ରତେ ॥
ପର୍ବ ପର୍ବାଣି ଚତୁର୍ଦ୍ଦଶୀ । ଷଷ୍ଠ କଳାରେ ଯେବେ ଶଶୀ ॥

ପିତୃ ଦିବସ ଯେତେ ହେବ । ତୈଳ ଗ୍ରହଣ ନ କରିବ ॥
ଏଥୁ ଉତ୍ତାରେ କଥା ଶୁଣ । କାର୍ତ୍ତିକ ହବିଷ୍ୟ ଲକ୍ଷଣ ॥
ଆଦିତ୍ୟ ବାରୁଣୀ ପ୍ରବେଶ । ସେ କାଳେ କଳ୍ପିବ ହବିଷ୍ୟ ॥
ଅନ୍ୟ ସଂଯୋଗ ପଦ ସ୍ଥାନେ । ବସିବ ଧରଣୀ ଆସନେ ॥
ପୂର୍ବ ଦିଗକୁ ମୁଖ କରି । ହସ୍ତେ ତୁଳସୀ ଜଳ ଧରି ॥
କୃଷ୍ଣେ କରିବ ନିବେଦନ । ତେଣେ ସନ୍ତୋଷ ଜନାର୍ଦ୍ଦନ ॥
କୃଷ୍ଣଙ୍କୁ ଦେଇ ଅବଶେଷ । ତିନିରେ କଳ୍ପି କରି ଗ୍ରାସ ॥
ଭୋଜନେ ନ କହିବ ବଚନ । ମଉନେ କରି ଆଚମନ ।
ପୁଣି ଉତ୍ତମ ସ୍ଥାନେ ବସି । ରାମ ଗୋବିନ୍ଦ ନାମ ଘୋଷି ॥
ଜାଗର ଜାଳ ସନ୍ଧ୍ୟାକାଳେ । ବସାଇ ଦେବତାଙ୍କ ଆଗେ ॥
ନୋହିଲେ ତୁଳସୀ ଅଗ୍ରତେ । ଦୀପ ବସାଇ ଶୁଦ୍ଧ ଚିତ୍ତେ ॥
ବିଷ୍ଣୁଙ୍କୁ ନମସ୍କାର କରି । ଜନ୍ମାଦି ପାପ ଭବ ହରି ॥
ପୁଣି କାର୍ତ୍ତିକ ଦୀପ ଦାନେ । ଧର୍ମ ବର୍ଦ୍ଧିତ ଦିନେ ଦିନେ ॥
ଉଚ୍ଚେ ଯେ ସଂଯୋଜଇ ଦୀପ । କେସ କହିବା ତାର ତପ ॥
ସପତ ଜନ୍ମ ପାପ ରାଶି । ତୃଣପୁ ସମୂହରେ ନାଶି ॥
ଦୀପ ନ ଥିଲେ ପୁଣ୍ୟ ବଢ଼େ । ଅନ୍ତେ ଗରୁଡ଼ଧ୍ୱଜେ ଚଢ଼େ ॥
ଗୋବିନ୍ଦ ସଙ୍ଗେ ସଙ୍ଗ ହୋଇ । ବୈକୁଣ୍ଠ ଭୁବନକୁ ଯାଇ ॥
ଏମନ୍ତେ ଦୀପଦାନ ଫଳ । କାର୍ତ୍ତିକେ ଶୁଣ ମହୀପାଳ ॥
ଯେବଣ ଜନ ବ୍ରହ୍ମ ହୋଇ । କାର୍ତ୍ତିକେ ତୃଣ ପାଡ଼ି ଶୋଇ ॥
ସେ ତୃଣ ଅଗ୍ନି ଯେହ୍ନେ ଧ୍ୱଂସେ । ବ୍ରହ୍ମ ପାତକ ତେହ୍ନେ ନାଶେ ॥
ଯମ ନିୟମ ଯେତେ ବିଧି । କାର୍ତ୍ତିକ କୃତ୍ୟରେ ପ୍ରସିଦ୍ଧି ॥
ଯେ ଅବା ତହିଁ ଫଳଶ୍ରୁତି । ଜାଣନ୍ତି ବିଷ୍ଣୁ ବେଦପତି ॥
ଏମନ୍ତେ କାର୍ତ୍ତିକ ମାସରେ । ଯେ ବ୍ରତ ବିଧିମତ କରେ ॥
କେସ କହିବା ତାର ଗୁଣ । ସେ ଜନ ସ୍ୱୟଂ ନାରାୟଣ ॥

ଶ୍ରୀମୁଖେ କହିଛନ୍ତି ହରି । କାର୍ତ୍ତିକ ବ୍ରତ ସମସ୍ତର ॥
ଯେ ତେଣେ ହୁଏ ଅନୁଗତ । ସେ ମୋତେ ଲଭଇ ନସ୍ତୁତ ॥
ଏବେ ହୋ ଶୁଣ ନୃପ ନିଧି । କାର୍ତ୍ତିକ ଉଦ୍‌ଯାପନ ବିଧି ॥
ଶୁକ୍ଳ ଚତୁର୍ଦ୍ଦଶୀ ଦିନ । ବ୍ରତେ ଉତ୍ସୁକ କର ମନ ॥
ଦ୍ୱାରେ ଯେ ତୁଳସୀ ବିଜସ୍ତେ । ସେଠାରେ ମଣ୍ଡପ ଗୋଟିଏ ॥
ତୋଳିବ ଅତି ଯତ୍ନ କରି । ଚାରି ଦିଗକୁ ଦ୍ୱାର ଚାରି ॥
ମଣ୍ଡଣି କରିବ ମଣ୍ଡପ । ଉପରେ ଦେଇ ଚନ୍ଦ୍ରାତପ ॥
କୁସୁମ ଚାମର ବସନେ । ମଣ୍ଡପ ମଣ୍ଡିବ ଯତନେ ॥
ଗୋମୟ ଧେନୁ ଜଳ ଲିପି । ତୁଳସୀ ମୂଳେ ବିଷ୍ଣୁ ସ୍ଥାପି ॥
ପଞ୍ଚବର୍ଣ୍ଣ ମୁରୁଜ ଯୋଗେ । ଚିତ୍ର କରିବ ଭୂମି ଭାଗେ ॥
ଦ୍ୱାରେ ସ୍ଥାପିବ ଦ୍ୱାରପାଳ । ପୂର୍ବ ଭାଗରେ ପୁଣ୍ୟଶୀଳ ॥
ଦକ୍ଷିଣ ସୁଶୀଳ ହୁଅନ୍ତି । ପଶ୍ଚିମେ ଜୟ ନାମ ଧରି ॥
ବିଜୟ ସ୍ଥାପିବ ଉତ୍ତରେ । ମଣ୍ଡପ ଲିଖିବ ଭିତରେ ॥
ସର୍ବତ ନାମ ଭଦ୍ର ଚିତ୍ର । ମଧ୍ୟେ କମଳ ଅଷ୍ଟପତ୍ର ॥
ଦିଗପାଳଙ୍କୁ ଚର୍ଚ୍ଚି ସ୍ଥାପି । ଯେ ପ୍ରଭୁ ପୂର୍ଣ୍ଣାନନ୍ଦ ରୂପୀ ॥
ଅଶେଷ ଜନ୍ତୁଙ୍କ ଜୀବନ । ତାହାଙ୍କୁ କର ଆବାହନ ॥
ଲକ୍ଷ୍ମୀଙ୍କି ସ୍ଥାପି ତାଙ୍କ ମୂଳେ । ଘଟ ବସାଇ ପୂଜା ସ୍ଥଳେ ॥
ଆହ୍ଲାଦ ଚର୍ଚ୍ଚି ଗୀତ ବାଦ୍ୟେ । ଜାଗର ଜାଳ ଗୁଆ ଘୃତେ ॥
ଆଧି ଉପାଧି ଦୂର କରି । ବ୍ରାହ୍ମଣ ତିନି ବେଦୁଁ ବରି ॥
ଯେ ବ୍ରହ୍ମା ବିଷ୍ଣୁ ମହେଶ୍ୱର । ଏମନ୍ତ କଳ୍ପି ଦ୍ୱିଜବର ॥
ତିନିଙ୍କି ଆସନେ ବସାଇ । ପୂଜିବ ଗନ୍ଧ ପୁଷ୍ପ ଦେଇ ॥
ତାଙ୍କ ବଚନେ ପୁଣ ପୂଜା । ଅର୍ଚ୍ଚନ କରି ଦେବ ରଜା ॥
ମଣ୍ଡପ ଉପରେ କଳସ । ଚିତ୍ରଳ ବାନ୍ଧି ଧ୍ୱଜବାସ ॥
ଚାରି ଦ୍ୱାରଙ୍କି ପୂଜାବିଧି । ବିପ୍ର ବଚନେ କର ସିଦ୍ଧି ॥

ପୂଜିବ ଜଗତ ଅଧିପ । ଗନ୍ଧ ଚନ୍ଦନ ଧୂପ ଦୀପ ॥
ଶୁକ୍ଳ ପୁଷ୍ପ ଶିରେ ଦେଇ । ବୋଲିବ କୃଷ୍ଣ ସ୍ୱାହା ସ୍ୱାହା ॥
ବିବିଧ ଉପହାର ଦ୍ରବ୍ୟ । ମନ୍ତ୍ର ସୁମରି ଭୋଗ ଦେବ ॥
ଗୋବିନ୍ଦ ନାମ ଧରି ନିତ୍ୟେ । ଉତ୍ସବ ବାଦ୍ୟ ନୃତ୍ୟ ଗୀତେ ॥
ଏମନ୍ତେ ବଞ୍ଚିବ ଶର୍ବରୀ । ନିଶି ପ୍ରଭାତେ ସ୍ନାନ କରି ॥
ପୂଜା ସ୍ଥାନରେ ଯେତେ ଦ୍ରବ୍ୟ । ମନ୍ତ୍ର ସୁମରି ଭୋଗ ଦେବ ॥
ତିଳ କାଞ୍ଚନ ଗୋରୁ ଦାନ । ବିପ୍ରଙ୍କୁ କରି ନିବେଦନ ॥
ତାଙ୍କ ପତ୍ନୀଙ୍କି ତିନ ଶାଢ଼ୀ । ଦେଇ କହିବ କର ଯୋଡ଼ି ॥
ହେ ବିପ୍ରବର ତୁମ୍ଭେ ହରି । ମୋତେ ସଂସାରୁ କର ପାରି ॥
ଏମନ୍ତ କହିବ ବଚନ । ଗୁରୁଙ୍କୁ ଦେବ ରତ୍ନ ଦାନ ॥
ତିଳ ପାୟସ ଦଧିରସେ । ଅନଳ ପୂଜିବ ସନ୍ତୋଷେ ॥
ବ୍ରତ ଦକ୍ଷିଣା ବିପ୍ରେ ଦେବ । ମେଲାଣି ମାଗି ଗୃହେ ଯିବ ॥
ଯାହା କାର୍ତ୍ତିକେ ଥିବ ଛାଡ଼ି । ଯତନ ପ୍ରକାରେ ତା ନେଉଡ଼ି ॥
ଭିଆଇ ଅନୁକ୍ରମେ ଦ୍ରବ୍ୟ । ବିପ୍ର ଭୋଜନେ ସମର୍ପିବ ॥
ଆରେକ ଦିନ ଶ୍ରାଦ୍ଧ ମାସେ । କାର୍ତ୍ତିକ ବ୍ରତ ଅବଶେଷେ ॥
ପ୍ରତିପ ଦିନ ନିଜ ଗୃହେ । ବନ୍ଧୁ କୁଟୁମ୍ବ ଘେନି ସ୍ନେହେ ॥
ପାକ ସମ୍ଭାର ଷଡ଼ରସେ । ଭୋଜନ କରିବ ସନ୍ତୋଷେ ॥
ଏମନ୍ତ କାର୍ତ୍ତିକ ବିଧାନେ । ବ୍ରତ ପାଳନ୍ତି ଯେଉଁ ଜନେ ॥
ତାହାଙ୍କ ଧର୍ମ ଫଳ ଯାହା । କହିବା ଶୁଣ ନରନାହା ॥
ସଂସାରେ ଯେତେ ଧର୍ମମାନ । ତୁଳା ପୁରୁଷ ଶ୍ରାଦ୍ଧ ଦାନ ॥
ଗଙ୍ଗା ଯମୁନା ସରସ୍ୱତୀ । ମଣିକର୍ଣ୍ଣିକା ପୁଣ୍ୟବତୀ ॥
ନର୍ମଦା ପ୍ରାଗ ଗୋଦାବରୀ । ସିନ୍ଧୁ ସଙ୍ଗମେ ସୁରସୁରୀ ॥
ପ୍ରଭାସ ପ୍ରାଚୀ ବୈତରଣୀ । ଗୋମତୀ ରେବା କୃଷ୍ଣାବେଣୀ ॥
ଯେ ଚନ୍ଦ୍ରଭାଗା ଶତୋପୂଳା । ପର୍ଣ୍ଣ ଜନମ ବସ୍ତ୍ର ଶୀକା ॥

ବ୍ରାହ୍ମୀ ଯେ ମାନସରୋବର । ଚକ୍ରୀ ଭଜସ୍ତୁ ଗଦାଧର ॥
ସୁବର୍ଣ୍ଣରେଖା ମଧୂନସ୍ଥ । ସେ ହ୍ରଦ ମିଶ୍ର କନେ ସ୍ଥିତ ॥
ପାପ ନାଶିନୀ ପୁଣ୍ୟତୋୟା । ଇନ୍ଦ୍ରଦ୍ୟୁମନ ବିଷ୍ଣୁ କାୟା ॥
ହରଯୁ ଶିବ ଗଙ୍ଗା ନଦୀ । ଋଷିକୁଲ୍ୟାଦି ମହାନଦୀ ॥
ଏ ଆଦି ପୁଣ୍ୟ ତୀର୍ଥଜଳ । ସ୍ନାନ କଲେକ ଯେତେ ଫଳ ॥
ରାଜସୂୟାଦି ଯେତେ କୃତ୍ୟ । ବେଦ ବିହିତ ଯେତେ ବ୍ରତ ॥
ଯୋଗ ସମାଧି ଦାନ ଧ୍ୟାନ । ପ୍ରସାଦ ଆଦି କୀର୍ତ୍ତିମାନ ॥
ବଞ୍ଚିବା ବନାଶ୍ରମେ ଚିହ୍ନ । ତପେ ଦଗଧ କରି ଦେହ୍ବ ॥
ଏ ସର୍ବ ଧର୍ମ ତୁଳ କରି । କାର୍ତ୍ତିକ ବ୍ରତେ ନୁହେଁ ସରି ॥
ଯାବତ ପୁଣ୍ୟେ କରି ଏକ । ସହସ୍ର ଗୁଣରେ କାର୍ତ୍ତିକ ॥
ବିଷ୍ଣୁର ଅତି ପ୍ରିୟ ଯେଣୁ । କାର୍ତ୍ତିକ ମହା ପୁଣ୍ୟ ତେଣୁ ॥
ଅଙ୍ଗେ ଯେ ପାପ ବିଘ୍ନ ଥାନ୍ତି । କାର୍ତ୍ତିକ ସଂକଳ୍ପରେ ଯାନ୍ତି ॥
କେଶରୀ ଆଗମନ ପଥେ । ଯେହ୍ନେ ପଳାନ୍ତି ଗଜଯୂଥେ ॥
ଏମନ୍ତେ କାର୍ତ୍ତିକ ମହିମା । ବଚନେ କି ହେବା ଉପମା ॥
କାର୍ତ୍ତିକ ଶୁଦ୍ଧ ଯେତେ କରି । ଦଶ ସାଗର ଫଳସରି ॥
ହବିଷ୍ୟ ଶତ ଗୁଣ ଜାଣ । ଉଦ୍ୟାପନରେ ଲକ୍ଷ ଗୁଣ ॥
ଯାଗ ଯୋଗରେ ସ୍ୱର୍ଗ ଭୋଗ । କାର୍ତ୍ତିକେ ବୈକୁଣ୍ଠରେ ଯୋଗ ॥
ବିଧି ସଂକଳ୍ପେ ବ୍ରତ କଲେ । ଅନ୍ତପୁ ମୁକ୍ତି ପାଇ ଭଲେ ॥
ଯାବତ ଧର୍ମ କରି ନରେ । କାର୍ତ୍ତିକ ବ୍ରତ ଯେ ନ କରେ ॥
ତାର ସକଳ ଧର୍ମ ନାଶେ । ସୁବର୍ଣ୍ଣ ଯେହ୍ନେ ପରବାସେ ॥
ସ୍ୱଧର୍ମ ଫଣ ଯାଇ ତାର । କାର୍ତ୍ତିକ ହୀନ ତେହ୍ନେ ନର ॥
କଳ୍ପିତେ ଯେବେ ପ୍ରତିପାଳି । ଅନ୍ୟ କର୍ମକୁ ଧର୍ମ ବଳି ॥
କାର୍ତ୍ତିକ ପାଳି ଅନ୍ୟ ଧର୍ମ । କଲେ ସଫଳ ସବୁ କର୍ମ ॥
ଏହି ପ୍ରକାରେ ଏକାଦଶୀ । ଆଦର ପାଳନ ତୁଳସୀ ।୧୪୦।

ଏ ତିନ ମହିମା ସମାନ । ବିଶେଷେ କାର୍ତ୍ତିକ ପ୍ରଧାନ ॥
ଶୁଣ ରାଜନ ଧର୍ମ ସାର । ଏ ପଦ୍ମପୁରାଣ କେଶର ॥
ଉତ୍ତର ଖଣ୍ଡେ ପରସିଦ୍ଧି । କାର୍ତ୍ତିକ ଧର୍ମ ଯଥାବିଧି ॥
ଯେ ଏହା ଶୁଣେ ଭବ୍ୟ ଜ୍ଞାନେ । ସଂଶୟ ଦୂର କରି ମନେ ॥
ସେହି କାର୍ତ୍ତିକ ଧର୍ମ ପାଇ । ସବୁ ଦୁରିତ କ୍ଷୟ ଯାଇ ॥
ବ୍ରାହ୍ମଣ ଆଦି ଚତୁର୍ବର୍ଣ୍ଣ । ସ୍ତ୍ରୀ ପୁରୁଷ ଯେବା ଜନ ॥
ଏହା କାର୍ତ୍ତିକେ ଶୁଣ ନୋହି । ବିଷ୍ଣୁ ଶ୍ରୀମୁଖେ ଛନ୍ତି କହି ॥
ନୃପ ପ୍ରଭୁ ବାକ୍ୟ ଉପଦେଶ । ଭଣଇ ମହାଦେବ ଦାସ ॥

ଇତି ଶ୍ରୀପଦ୍ମପୁରାଣେ ଉତ୍ତର ଖଣ୍ଡେ କାର୍ତ୍ତିକ ମାହାତ୍ମ୍ୟେ ପୃଥୁ ନାରଦ ସମ୍ବାଦେ କାର୍ତ୍ତିକ ଉଦ୍‌ଯାପନ ଧର୍ମ କଥନେ ନାମ ଷଷ୍ଠୋଽଧ୍ୟାୟଃ ।

---

## ସପ୍ତମ ଅଧ୍ୟାୟ

ପୃଥୁ ଉବାଚ

ତ୍ୱୟା ଯତ୍ କଥିତଂ ବ୍ରହ୍ମନ୍ ବ୍ରତମୂଳସ୍ୟ ବିସ୍ତରାତ୍
ଯଦବ ତୁଳସୀ ମୂଳେ ପୂଜାବିଷ୍ଣୁ ତ୍ୱୟୋଦିତା ।
ତେନାହଂ ଜ୍ଞାତୁ ମିଚ୍ଛାମି ମାହାତ୍ମ୍ୟ ତୁଳସୀ ଭବ
କଥଂ ସତାପ୍ରିୟା ବିଷ୍ଣୋ ର୍ଦେବଦେବସ୍ୟ ଶାର୍ଙ୍ଗିଣଃ ।

ନାରଦ ବାକ୍ୟ କର୍ଣ୍ଣେ ଶୁଣି । କାର୍ତ୍ତିକ ଧର୍ମ ମନେ ଗୁଣି ॥
ଶ୍ରୀ ଏକାଦଶୀ ବ୍ରତ ଖ୍ୟାତି । ଜାଣିବେ ଯହିଁ ଉତପତ୍ତି ॥
ତୁଳସୀ ମହିମା କଥନେ । ଶୁଣି ସଂଶୟ ରାଜା ମନେ ॥
ନାରଦ ମୁଖ ଚାହିଁ ଭଣି । ହେ ମୁନି ଅସମ୍ଭବ ବାଣୀ ॥
କହିଲା କାର୍ତ୍ତିକ ଉଦ୍ୟାପନ । ତୁଳସୀ ମୂଳେ ଦୀପଦାନ ॥
ବିଶେଷେ ତୁଳସୀ ସେବନେ । ଅସଂଖ୍ୟ ଧର୍ମ ଦୀପ ଦାନେ ॥

ଏତେ ପ୍ରସିଦ୍ଧ ବୃକ୍ଷ ଯେତୁ । ପୂର୍ବେ ସେ ଉପୁଜିଲ୍ଲ କାହୁଁ ॥
ସେକଥା କହ ମୁନିବର । ଶୁଣି ସଂଶୟ ଯାଉ ଦୂର ॥

ନାରଦ ଉବାଚ

ପୃଥ ବଚନେ ଦେବଋଷି । ବୋଲନ୍ତି ଶୁଣ ମନୁ ବଂଶୀ ॥
ତୁଳସୀ ବୃକ୍ଷ ଯହୁଁ ଜାତ । କହିବା ତହିଁର ଚରିତ ॥
ଦେବେ ଯେ ପୂର୍ବ ସତ୍ୟଯୁଗେ । ବହୁବିଧ ସମ୍ଭ୍ରମ ଯୋଗେ ॥
ମଘବା ନାମେ ସୁରପତି । ସଙ୍ଗରେ ଘେନି ବୃହସ୍ପତି ॥
କହୁତ ହର୍ଷିତ ବେଗରେ । ଗଲେ ସେ କପିଳାସ ପୁରେ ॥
ଈଶ୍ୱର ଦରଶନ ଆଶେ । ଇନ୍ଦ୍ର ପ୍ରବେଶ କପିଳାସେ ॥
ଦେଖିଲେ ଗିରିବର ଶୋଭା । ଧବଳ ଜ୍ୟୋତି ତାର ପ୍ରଭା ॥
ଶୁଦ୍ଧ ସ୍ଫଟିକ ଗିରିବର । ବହୁବିଧ ମଣି ରତ୍ନ ସାର ॥
କନକ ଆଦି ଅଷ୍ଟ ଧାତୁ । ବିସ୍ତରେ ଜ୍ଞାନ ଗୁଣ ହେତୁ ॥
ପୁଷ୍ପ ମଣ୍ଡିତ ତରୁବରେ । ଅମୃତ ତୁଲ୍ୟ ଫଳ ଧରେ ॥
ବୃକ୍ଷଙ୍କ ମୂଳେ ହେମ ବେଦୀ । ସୁନନ୍ଦା ନାମେ ବହେ ନଦୀ ॥
ଶୁଦ୍ଧ ଶୀତଳ ପରିମଳ । ସର୍ବଦା ସ୍ରୁବ ବହେ ଜଳ ॥
କମଳ କୁମୁଦ ମାଳେନ୍ଦୀ । ପୁଷ୍ପେ ସୁନ୍ଦର ଦିଶେ ନଦୀ ॥
ସାରସଗଣ ଯୂଥେ ଯୂଥେ । ଯେତେହେଁ ବିବୁଧ ସ୍ୱର୍ଗପଥେ ॥
ସ୍ଥାନେ ବସନ୍ତି ସିଦ୍ଧଗଣ । ଧ୍ୟାନେ ରହନ୍ତି ନାଗପୁଣ ॥
କେବଳ ଯୋଗୀ ଶିବ ପାଦେ । ମନ ନବେଶି ଅପ୍ରମାଦେ ॥
ସହସ୍ର ସହସ୍ର ଅଛନ୍ତି । ଦେଖି ଆନନ୍ଦ ଶଚୀପତି ॥
ସେ ବନେ ଯେତେ ପଶୁ ଜାତେ । ନିର୍ଭୟେ ବିହରନ୍ତି ସର୍ବେ ॥
ରୂପେ ଦିଶନ୍ତି ଦିବ୍ୟ ଶୋଭା । ସବୁରି ଦେହେ ଶିବପ୍ରଭା ॥
କରିଣୀ ଯୂଥେ ମତ୍ତଗଜ । ବହନ୍ତି ଐରାବତ ତେଜ ॥
ବନେ ଚରନ୍ତି କାମଧେନୁ । ଶରଦ ଶଶି ପ୍ରାପ୍ତ ତନୁ ॥

ମୃଗ ଶାର୍ଦ୍ଦୂଳ ସିଂହ ଶଶା । କେହ୍ନ କାହାକୁ ନାହିଁ ହିଂସା ॥
ସର୍ବେ ଭକ୍ଷନ୍ତି ପତ୍ର ଫଳ । ପିଇ ନର୍ମଦା ନଦୀ ଜଳ ॥
ଶିବ ଆଶ୍ରୟେ ମହା ତେଜା । ଦେଖି ବିସ୍ମୟେ ଦେବରଜା ॥
ଈଶ୍ୱର ସମ୍ପଦକୁ ମୂଲ୍ୟ । ତିନ ଭୁବନେ ନାହିଁ ତୁଲ୍ୟ ॥
ବନ ପର୍ବତ ଏତେ ଶୋଭା । କବା ସୁନ୍ଦରପୁର ପ୍ରଭା ॥
କେମନ୍ତେ ଦେଖିବା ଲୋଚନେ । ବୁଝିବା ଶଙ୍କର ଦର୍ଶନେ ॥
ଏତେ ବିସ୍ମୟ ଚିତ୍ତେ ଚଳ । ଈଶ୍ୱର ସିଂହଦ୍ୱାରେ ମିଳ ॥
ବାସବ ଆଗମନ ଜାଣି । ଦ୍ୱାରେ ବସିଲେ ଶୂଳପାଣି ॥
ବାସବ ଗର୍ବ ବିନାଶନେ । ଶିବ ବିଚାର କଲେ ମନେ ॥
ନିଜ ସ୍ୱରୂପ ଗୋପ୍ୟ କରି । ମାୟା ମନୁଷ୍ୟ ରୂପ ଧରି ॥
ଜରା ଅବସ୍ଥା ତନୁ କ୍ଷୀଣ । ମଳିନ ବସ୍ତ୍ର ବେଶ ହୀନ ॥
ଅଧୋବଦନେ ଦ୍ୱାରେ ବସି । ଇନ୍ଦ୍ର ତା ସନ୍ନିଧେ ପ୍ରବେଶି ॥
ହେ ବୃଦ୍ଧ ନର ପୁଚ୍ଛୁଁ ତୋତେ । ଦ୍ୱାରେ ବସିଛୁ କି ନିମନ୍ତେ ॥
କାଳେ ତୋ ପ୍ରାପ୍ତ ତନୁ ଦେଖି । କି ତୁ ଭିକ୍ଷୁକ ନଟିମାଷି ॥
ଯାଚକ ବୃତ୍ତେ ଅଛୁ ଆସି । କି ଅବା ଶିବପୁର ବାସୀ ॥
ଯେବେ ଶଙ୍କରଗଣ ତୁହି । କହ ଈଶ୍ୱର ଛନ୍ତି କାହିଁ ॥
ଆମ୍ଭେ ଅମର ପୁର ରଜା । ଦେଖିବୁ ଶଙ୍କର ଗିରିଜା ॥
କେମନ୍ତ ଶୋଭା ଶିବପୁର । ଈଶ୍ୱର ସମ୍ପଦ କେହ୍ନର ॥
ଦେଖି ତ କହିଅଛୁ ସାଧ । ଯାହା ପଚ୍ଚାରୁ କହ ବୃଦ୍ଧ ॥
ବାସବ ଏମନ୍ତ ବଚନେ । ଶିବ ହସନ୍ତି ମନେ ମନେ ॥
ଇନ୍ଦ୍ରକୁ ନ ଦେଲେ ଉତ୍ତର । ପୁଣି ପୁଚ୍ଛଇ ସୁନାଶୀର ॥
କି ତୁ ବଧିର ଜଡ଼ଜନ । ପୁଚ୍ଛିଲେ ନ କହୁ ବଚନ ॥
ଆମ୍ଭେ ଅମରପୁର ରଜା । ଦେଖିବୁଁ ଶଙ୍କର ଗିରିଜା ॥
ତୁ କେଉଁ ଗର୍ବେ ବସିଅଛୁ । କଥା ନ କହୁ ଆମ୍ଭେ ପୁଚ୍ଛୁଁ ॥

ଇନ୍ଦ୍ରଙ୍କୁ ଦୃଷ୍ଟି ମନେ କୋପି । କଣ୍ଠଗତ ହେଷ୍ଟୁ ଦନ୍ତ ଚାପି ॥
ଏମନ୍ତ ବାସବ ବଚନେ । ଶଙ୍କର କର୍କଶ ଲୋଚନେ ॥
ଦେଖି ସକ୍ରୋଧେ ସୁରପତି । ଘେନଲେ କୁଳୀଶ ଶକତି ॥
ରଜସ ଗୁଣେ ଶଚୀନାହା । ରୁଦ୍ରଙ୍କୁ ପ୍ରହାରିଲେ ତାହା ॥
ସେ ବଜ୍ର ରୁଦ୍ର କଣ୍ଠେ ପଡ଼ି । ଶୁଭିଲା ଯେସନେ ଘଡ଼ ଘଡ଼ି ॥
ଅଙ୍ଗ ନ ଭେଦ ଦେବଶର । ଉପୁଡ଼ି ପଡ଼ିଲା ଭୂମିର ॥
ଈଶ୍ୱର କଣ୍ଠେ ବଜ୍ର ବାଜି । ଅନଳ ଜାତ ହୋଇଲା ଗର୍ଜି ॥
କଣ୍ଠ ଦଗ୍ଧିଲା କୃଷ୍ଣ ବର୍ଣ୍ଣ । ନିଜ ସ୍ୱରୂପେ ତ୍ରିଲୋଚନ ॥
ବାସବ ଆଗେ ହୋଇଲେ ଉଭା । ଦଶନ୍ତେ ଅଙ୍ଗ ଜ୍ୟୋତି ପ୍ରଭା ॥
ମଣି କୁଣ୍ଡଳ ଫଣିହାର । ଦେଖି କମ୍ପଇ ସୁନାସୀର ॥
ଅନଳ ତେଜେ ଭସ୍ମ ପାଇ । ଲୁଚିଲା ଗୁରୁ ପଦେ ଯାଇ ॥
ଇନ୍ଦ୍ର ରକ୍ଷଣେ ବୃହସ୍ପତି । ଶିବଙ୍କ ଦୃଷ୍ଟି କଲେ ସ୍ତୁତି ॥

## ବୃହସ୍ପତି ଉବାଚ

କରପାତେ ଯୋଡ଼ି ବେନିକର । ବୋଲଇ ଦୋଷ କ୍ଷମା କର ॥
ହେ ପ୍ରଭୁ ଜଗତ ଅଧିପ । ସୃଷ୍ଟି କାରଣେ ତୋର ରୂପ ॥
ତୁ ବ୍ରହ୍ମା ରୂପେ ସୃଷ୍ଟି କରୁ । ପାଳନେ ବିଷ୍ଣୁ ରୂପ ଧରୁ ॥
ପୁଣି ସଂହାରୁ ରୁଦ୍ର ରୂପେ । ଏ ତିନି ମୂର୍ତ୍ତି କଲ୍ପେ କଲ୍ପେ ॥
ଏଣୁ ଏ କାଳ ପରମାଣେ । ତୋର ମହିମା କେବା ଜାଣେ ॥
ଯେ ତୋର ଚରଣେ ଶରଣ । ସେ ଖଣ୍ଡେ ଅକାଳ ମରଣ ॥
ଅଶେଷ ଦୁଃଖିରୁ ତରେ । ଯେ ନିତ୍ୟେ ଶିବ ନାମ ଧରେ ॥
ତୁ ଦେବ ଦେବ ମହାଦେବ । ସର୍ବ ମଙ୍ଗଳ ସଦାଶିବ ॥
ପ୍ରାଣୀଙ୍କ ସୁଗତି ଦାୟକ । ନମୋ ନମସ୍ତେ ତ୍ରିପୁମ୍ବକ ॥
ଅନ୍ଧକ ଶତ୍ରୁ ତ୍ରିପୁରାରି । ନମୋ ବିରୂପ ରୂପ ଧାରି ॥
ତୋର ମହିମା ଅଗୋଚର । କାହିଁ ଜାଣିବ ପୁରନ୍ଦର ॥

ନ ଜାଣି ଦ୍ରୋହ କଲି ତୋତେ । ଏବେ କମ୍ପାଇ ଭୟ ଚିତ୍ତେ ॥
ତୁ ଯେବେ ନ କରିବୁ ତ୍ରାହି । ଆଉ ରକ୍ଷକ ଅଛୁ କାହିଁ ॥
କରୁଣା କର ହେ ମହିମା । ଇନ୍ଦ୍ର ଅପ୍ରାଧ କର କ୍ଷମା ॥
ସେବକ ହେଲେ ଅପରାଧୀ । ତୁ ପ୍ରଭୁ କରୁଣାବାରିଧି ॥
ଆମ୍ଭେ ସକଳ ସୁରଗଣ । ତୋର ସେବକ ନିଶ୍ଚେ ଜାଣ ॥
ପ୍ରସନ୍ନ ହୋଇ ଦୟା କର । ଜୀବନେ ବର୍ତ୍ତୁ ସୁନାସୀର ॥
ଏମନ୍ତେ ବୋଲି ସ୍ତୁତି ଭଣି । ଶୁଣି ସନ୍ତୋଷ ଶୂଳପାଣି ॥
ଅଙ୍ଗିର ମୁଖ ଚହିଁ ହର । ବୋଲନ୍ତି ଧନ୍ୟ ଜୀବ ତୋର ॥
ଇନ୍ଦ୍ରରେ ଦେଲୁ ଜୀବଦାନ । ଏଣୁ ତୁ ଜୀବ ନାମ ହେନ ॥
ଏବେ ଅମର ପୁରେ ଚଳ । ସଙ୍ଗତେ ହେନ ଆଖଣ୍ଡଳ ॥
ରୁଦ୍ର ଶ୍ରୀମୁଖୁ ଆଜ୍ଞା ପାଇ । ଜୀବ ସଙ୍ଗତେ ଶଚୀସାଇଁ ॥
ଶିବ ଚରଣ ତଳେ ପଡ଼ି । ଉଠି କପାଳେ କର ଯୋଡ଼ି ॥
କରନ୍ତି ବିପରୀତ ଗତି । ଅଦୃଶ୍ୟ ହେଲେ ଉମାପତି ॥
ଇନ୍ଦ୍ର ମନରେ ଚିନ୍ତା କରି । ଗଲେ ଯେ ବାଚସ୍ପତି ପୁରୀ ॥
ଏଥୁ ଅନ୍ତରେ ଶୁଣ ନୃପ । ଈଶ୍ୱର ଦେହୁଁ ଯେଉଁ ତାପ ॥
ଅନଳ ରୂପେ ଉଠିପଡ଼ି । ଦହଇ ଆକାଶ ଧରଣୀ ॥
ତା ଦେଖି ଦେବ ବିଶ୍ୱନାଥେ । ଅଗ୍ନିକି ଘେନି ବାମ ହସ୍ତେ ॥
ଗଙ୍ଗା ସାଗର ଭେଟ ଯହିଁ । ସେ ଅଗ୍ନି ପକାଇଲେ ତହିଁ ॥
ବାହୁଡ଼ି ହରେ କପିଳାସେ । ଏଥୁ ଅନ୍ତରେ ଦୈବ ବଶେ ॥
ରୁଦ୍ର ଅନଳ ପଡ଼ି ଜଳେ । ଇନ୍ଦ୍ର ଅର୍ଜିଲ କର୍ମଫଳେ ॥
ଜାତ ବାଳକ ରୂପ ଧରି । କାନ୍ଦଇ ଘୋର ରବ କରି ॥
ଧ୍ୱନି ଶୁଭଇ ତିନି ପୁରେ । ଶୁଣି କମ୍ପନ୍ତି ସୁର ନରେ ॥
ତରସ୍ତ ହୋଇ ସର୍ବ ଜନ୍ତୁ । କେହି ନ ଜାଣେ କିସ ହେତୁ ॥
ସ୍ତମ୍ଭିତ ବାରିନିଧି ପାଣି । ଜଳଧି ରାଜା ତାହା ଶୁଣି ॥

ମିଳିଲେ ବାଳକର ପାଶେ । ତୁମର ରୂପ ଦେଖି ତୋଷେ ॥
ଦିବ୍ୟ ସୁନ୍ଦର ମହାତେଜ । ଯେସନେ ଜ୍ୟୋତି ଗ୍ରହରାଜ ॥
ତ୍ରିଭୁବନବ୍ୟାପୀ ହୋଇ ପଡ଼ । କାନ୍ଦଇ କରି ଘୋର ରଡ଼ ॥
ସାଗର ସୁତ ପ୍ରାପ୍ତ ମଣି । କୋଳେ ଧଇଲା ତାହା ଆଣି ॥
କ୍ରୋଧ ନିବାରିବାକୁ ମନ । ବାଳକ କରଇ ରୋଦନ ॥
କେଳକୁ କେଳ ଘର୍ଘରଡ଼ । ଯେହ୍ନେ ପ୍ରଳୟ ଘଡ଼ଘଡ଼ ॥
ଧ୍ୱନି ପୂରିତ ଦଶଦିଶେ । ଶୁଣି କମ୍ପନ୍ତି ଚତୁର୍ଦ୍ଦଶେ ॥
ଉଲ୍କାପାତେ ଯେହ୍ନେ ମହୀ । ଜଗତ ଜନ ଦେଖି ବହି ॥
ଆରୋହି ମରାଳ ବାହନେ । ପ୍ରବେଶ ସିନ୍ଧୁ ସନ୍ନିଧାନେ ॥
ବ୍ରହ୍ମାଙ୍କୁ ଦେଖି ଜଳେଶ୍ୱର । ଚରଣେ କଲା ନମସ୍କାର ॥
ପୁତ୍ରକୁ ବ୍ରହ୍ମା କୋଳେ ଦେଇ । କହନ୍ତି ଭକ୍ତି ଭାବ ବହି ॥
ହେ ପ୍ରଭୁ ଏ ମୋର ନନ୍ଦନ । ଜନ୍ମନ୍ତେ କରଇ ରୋଦନ ॥
କେବେ ନୋହିଲା ଶାନ୍ତ ଚିତ୍ତ । ତୁମ୍ଭେ ଯେ ଜଗତର ତାତ ॥
ଏ ପୁତ୍ର କ୍ରୋଧ ଶାନ୍ତ କର । ପ୍ରସନ୍ନ ହୋଇ ଦିଅ ବର ॥
ମୁଁ ତୁମ୍ଭ ଚରଣର ଦାସ । ପୁତ୍ରକୁ କର ମୋ ସନ୍ତୋଷ ॥
ସାଗର ବାକ୍ୟେ ପଦ୍ମଯୋନି । ବାଳକ ପ୍ରତି ଦୟା ଘେନି ॥
ବୋଇଲେ କ୍ରୋଧ ଶାନ୍ତ କର । ଯୁବା ଅବସ୍ଥା ହେଉ ତୋର ॥
ସଂସାରେ ହୁଅ ମହାରାଜା । ସକଳ ଲୋକେ ପାଅ ପୂଜା ॥
ଇଚ୍ଛାରେ ଭୋଗ କର ମହୀ । ତୋତେ ଜିଣନ୍ତା ନୋହୁ କେହି ॥
ଜଳୁ ଯେ ହେଲୁ ଅବତାର । ନାମ ତୋ ହେଉ ଜଳନ୍ଧର ॥
ଏମନ୍ତ ବିଧି ବାକ୍ୟେ ବୋଧ । ତୁମର ଶାନ୍ତ କଲା କ୍ରୋଧ ॥
ଯୁବା ଶରୀର ତତକ୍ଷଣେ । ନମଇଁ ବିଧାତା ଚରଣେ ॥
କପାଳେ ଯୋଡ଼ି ବେନି କର । ବୋଲଇ ଶୁଣ ବେଦଧର ॥
ତୁମ୍ଭ ସମାନେ ଏକ ଜଣେ । ମୋତେ ସମର୍ପ ମନ୍ତ୍ରୀପଣେ ॥

ସେ ମୋତେ କହୁ ରାଜନୀତି । ଯେବେ ପ୍ରସନ୍ନ ବେଦପତି ॥
ସାଗରସୁତ ବାକ୍ୟେ ବନ୍ଧି । ଚଳିଲେ ଶୁକ୍ର ମୁନି ଛନ୍ଦି ॥
ତତକ୍ଷଣେ ବ୍ରହ୍ମାଙ୍କ ଅଗ୍ରତେ । ଆସି ମିଳିଲେ ଭୃଗୁସୁତେ ॥
ଚରଣେ କଲେ ନମସ୍କାର । କଲ୍ୟାଣ କରି ବେଦବର ॥
ବୋଲନ୍ତି ଶୁଣ ଶୁକ୍ର ଯତି । ତୁ ଯେ ସକଳ ଗୁଣେ ଖ୍ୟାତି ॥
ଏ ସିନ୍ଧୁସୁତ ଜଳନ୍ଧର । ମର୍ତ୍ତ୍ୟ ମଣ୍ଡଳେ ରାଜା କର ॥
ତୁ ମନ୍ତ୍ରୀ ହିବୁ ଏହା ବୋଲେ । ଏମନ୍ତ କହି ବହି ଗଲେ ॥
ବ୍ରହ୍ମ ଲୋକରେ ପରବେଶ । ନମଇଁ ମହାଦେବ ଦାସ ॥
ସେ ବ୍ରହ୍ମା ଜଗପତି ପହୁଁ । ତାଙ୍କ ଚରଣେ ଚିତ୍ତ ରହୁ ॥

ଇତି ଶ୍ରୀପଦ୍ମପୁରାଣେ ଉତ୍ତରଖଣ୍ଡେ କାର୍ତ୍ତିକ ମାହାତ୍ମ୍ୟେ
ଜଳନ୍ଧର ଉତ୍ପତ୍ତି କଥନେ ବ୍ରହ୍ମା ବରଦାନେ
ନାମ ସପ୍ତମୋଽଧ୍ୟାୟଃ ।

—*—

## ଅଷ୍ଟମ ଅଧ୍ୟାୟ

### ନାରଦ ଉବାଚ

ଇତ୍ୟୁକ୍ତ୍ୱା ଶୁକ୍ରମାହୂୟ ରାଜ୍ୟେ ତଂ ସ୍ୱଭ୍ୟଷେଚୟେତ୍
ଆମନ୍ତ୍ର୍ୟ ସରିତଂ ନାଥଂ ବ୍ରହ୍ମାନ୍ତର୍ଦ୍ଧାନମାଗତଃ ॥

ଶୁଣ ରାଜନ ବ୍ରହ୍ମ ଜ୍ଞାନୀ । ବ୍ରହ୍ମା ବଚନେ ଶୁକ୍ର ମୁନି ॥
ଜଳନ୍ଧରକୁ କରି ପୂଜା । ସିନ୍ଧୁ ଦେଶରେ କଲେ ରାଜା ॥
ଅନେକ ସମ୍ପଦ ବୈଭବରେ । ରହିଲେ ସିନ୍ଧୁଙ୍କ ନଗରେ ॥
ସେ ରାଜା ଜାତ ରୁଦ୍ର ଅଂଶେ । ବିଶେଷ ଇନ୍ଦ୍ର ଅପଯଶେ ॥
ଅନନ୍ତ ଜନ୍ତୁ ଉପୁଜିଲା । ତେଣୁ ଅସୁରୁ ବୃଦ୍ଧି ହେଲା ॥
ବିଧାତା ଗଲେ ବର ଦେଇ । ଶୁକ୍ରଙ୍କ ତହୁଁ ଶିକ୍ଷା ପାଇ ॥
ସାଗରସୁତ ବଳେ ବଳୀ । ନର ରାଜାଙ୍କ ଦର୍ପ ଦଳି ॥

ସର୍ବ ସମ୍ପଦ କଲ୍ ଠୂଳ । ସିନ୍ଧୁଙ୍କ ଦେଶେ ମହାଯାନ ॥
ଅସୁରେ ନାରାୟଣ ଡରେ । ଲୁଚି ଯେ ଥିଲେ ଜଳ ପୁରେ ॥
ସେ ସର୍ବ ଶୁକ୍ରଙ୍କ ଆଦେଶେ । ମିଳିଲେ ଜଳନ୍ଧର ପାଶେ ॥
ଶୁମ୍ଭ ନିଶୁମ୍ଭ ବାଣାସୁର । ଅନ୍ଧା ଶକୁନି ଶଙ୍ଖାସୁର ॥
ହେତି ପ୍ରହେତି ବିପ୍ରଚିତ୍ତି । ଘସ୍ମର ଧୂମ୍ର ଅଶ୍ୱପତି ॥
କାଳନେମିର ପୁତ୍ର କାଳ । ଗଜଶ୍ରବଣ ବଜ୍ରମାଳ ॥
ଶମ୍ବର ବୃଷପ୍ରଭା କାଶୀ । କୁମ୍ଭ କର୍କଶ ବେନି ଆସି ॥
ଅଇଲେ ବଳ ମହାବଳ । ହରିତସୂତ ତା ସକଳ ॥
ନିଶୁନ୍ଦ୍ର ଅଗ୍ନି କାର୍ତ୍ତିମାନେ । ମୟ ଦାନବ ଆସି ମିଳେ ॥
ଯେ ଜ୍ୟୋତିଶ୍ଚନ୍ଦ୍ର ଭାସକର । ଖଡ୍ଗରୋମା ମହାବୀର ॥
ଅଶୀଳ ଶୀଳ ଅନୁଦୟେ । ସୁରଘ୍ନ ନିଜରନ୍ତ୍ର ଦୟେ ॥
ଚଣ୍ଡ ପ୍ରଚଣ୍ଡ ମୁଣ୍ଡ ଆନ୍ଧ । ସୁର ଯେ ପିଙ୍ଗଳ ବବାଧ ॥
ବଜ୍ରଦଂଷ୍ଟ୍ର ଯେ ଶୁଭ୍ରଭାନୁ । ବୃଷଭପ୍ରଭା ବଜ୍ର ତନୁ ॥
ଏମନ୍ତେ ଦୈତ୍ୟ ବଳ ଯେତେ । ବଳି କି ଗୁଡ଼ ଯେଷ୍ଠା ମତେ ॥
ମନେ ଦୁର୍ଗତି ସୁମରିଲେ । ଜଳନ୍ଧରକୁ ଆଶ୍ରେ କଲେ ॥
ସାଗର ସୁତ ତାଙ୍କୁ ଦେଖି । ବନ୍ଧୁ ସୋଦର ଭାବେ ଲେଖି ॥
ସମ୍ପଦ ଦେଇ ରଖେ ପାଶେ । ଶୁକ୍ରଙ୍କ ବାକ୍ୟ ଉପଦେଶେ ॥
କାଳ ନଜମି ଦୈତ୍ୟ ଜେମା । ରୂପେ ସୁନ୍ଦରୀ ଦ୍ୱିଜ ଉମା ॥
ନାମ ତାହାର ବୃନ୍ଦାବତୀ । ସର୍ବ ଲକ୍ଷଣୀ ସାଧ୍ୱୀ ସତୀ ॥
ସେ କନ୍ୟା ଶୁକ୍ର ମନ୍ତ୍ରୀ ବେଳେ । ଜଳନ୍ଧରକୁ ବିଭା କଲେ ॥
ସେ ସତୀ ପତିବ୍ରତା ପୁଣ୍ୟେ । ଅସୁର ତେଜ ବଢ଼ୁ ଦିନେ ॥
ଦନୁଜ ବଳ ସଙ୍ଗେ ଘେନି । ଜିଣିଲା ସକଳ ମେଦିନୀ ॥
ସପତ ଦ୍ୱୀପେ ଚକ୍ରବର୍ତ୍ତୀ । ହୋଇଲା ସାଗର ସନ୍ତତି ॥
ସାଗର ସୁତ ଏକଦିନେ । ବିଜୟେ ସମ୍ଭବ ଆସନେ ॥

ଶୁକ୍ର ସହିତେ ଦୈତ୍ୟ ବଳ । ସନ୍ନିଧେ ଅଛନ୍ତି ସକଳ ॥
ଏମନ୍ତେ ରାହୁ ମହା ଦୈତ୍ୟ । ପାତାଳ ପୁରୁଁ ଉପଗତ ॥
ମିଳିଲା ଜଳନ୍ଧର ଆଗେ । ନିଜ ଶରୀର ବେନି ଭାଗେ ॥
ତାହାକୁ ଦେଖି ସିନ୍ଧୁସୁତ । ବୋଲଇ ଏ କି ଉତପାତ ॥
କେ ତୋତେ କଲା ବେନି ଖଣ୍ଡ । କାହିଁ ପାଇଲୁ ଏଡ଼େ ଦଣ୍ଡ ॥
ଏ କଥା ମୋର ଆଗେ କହ । ଦେଖି ଆକୁଳ ମୋର ଦେହ ।
କେ ତୋତେ କଲା ଏତେ ସର । ଆଜ ସାରିବି ତାର ଶିର ॥
ଏମନ୍ତେ ଜଳନ୍ଧର ବାକ୍ୟ । ରାହୁ କହଇ ଅତି ଶୋକେ ॥
ଯେ ଦେବ ଏ କର୍ମ ମୋହର । ଭୃଗୁ ନନ୍ଦନକୁ ପଚ୍ଛର ॥
ରାହୁ ବଚନେ ଦୈତ୍ୟ ନାହା । ବୋଲଇ ଗୁରୁ କହ ଏହା ॥
ରାଜା ବଚନେ ଶୁକ୍ର ମୁନି । କହନ୍ତି ଶିଷ୍ୟ ସ୍ନେହ ଘେନି ।
ଶୁଣ ରାଜନ ଚୂଡ଼ାମଣି । ଏ ପର ସତ୍ୟଯୁଗ ବାଣୀ ॥
ଦୁର୍ବାସା ଶାପେ ହତଶିରୀ । ତିନି ଭୁବନେ ଦୁଃଖ ପୂରି ॥
ସମ୍ପଦ ଅଣେ ସୁରାସୁର । ମନ୍ଦରେ ମନ୍ଥିଲେ ସାଗର ॥
ସେ କ୍ଷୀର ସାଗର ମନ୍ଥନୁ । ଲକ୍ଷ୍ମୀ ସହିତେ କାମଧେନୁ ॥
ପୁଷ୍ପକ ଆଦି ରଥ ଯେତେ । ସୁରାଦି ଔଷଧ ସହିତେ ॥
ହରି ଚନ୍ଦନ ପାରିଜାତ । ଉଚ୍ଚୈଃଶ୍ରବାଦି ଐରାବତ ॥
କୌସ୍ତୁଭ ଆଦି ମଣିମାନେ । ଉପୁଜେ ସମୁଦ୍ର ମନ୍ଥନେ ॥
ଯେ ଅପସରା ଅଷ୍ଟନାରୀ । ଅମୃତ ଘେନି ଧନ୍ୱନ୍ତରୀ ॥
ଏମନ୍ତେ ଉପୁଜିଲେ ଯେତେ । ବସ୍ତୁ ତା ଦେବତାଙ୍କ ହାତେ ॥
ଅମର ଭଣ୍ଡାରେ ରଖାଇ । ଆପେ ଲକ୍ଷ୍ମୀକି ବିଭା ହୋଇ ॥
ଭୋଜନେ ପରଷିଲେ ସୁଧା । ଖାଇବେ ବୋଲି ସର୍ବେ ଶ୍ରଦ୍ଧା ॥
ପଙ୍କ ଥାବୋଇ ପନ୍ତି ମେଳେ । ବସିଲେ ଦେବେ କୁତୂହଳେ ॥
ମାୟା ମୋହିନୀ ରୂପ ଧରି । ଅମୃତ ପରଷନ୍ତି ହରି ॥

ଏ ସତ୍ୟ କଶ୍ୟପ ସନ୍ତତି । ସିଂହିକା ଗର୍ଭୁ ଜାତପତି ॥
ଚତୁର ପଣେ ବୁଦ୍ଧିବଳେ । ମିଳିଲେ ଦେବତାଙ୍କ ମେଳେ ॥
ସୁଧା ଭକ୍ଷିଲା ଆଗକର । ଦେଖି କୋପିଲେ ନରହର ॥
ଚକ୍ରେ ଛେଦିଲେ ଏହା ପିଣ୍ଡ । ହୃଦୟୁ ଖଗୁ ବେନି ଖଣ୍ଡ ॥
ଅମୃତ ପ୍ରସାଦୁଁ ନ ମଲା । ଏକ ଜୀବନ୍ତ ମୂର୍ତ୍ତି ହେଲା ॥
ତା ଦେଖି ବଳି ଆଦି ଦୈତ୍ୟ । ଯୁଝିଲେ ଦେବଙ୍କ ସଙ୍ଗତ ॥
କାହୁଁ ଜିଣିବେ ଦୈତ୍ୟଗଣ । ଦେବଙ୍କ ପକ୍ଷେ ନାରାୟଣ ॥
ଆପେ ଗରୁଡ଼ କାନ୍ଧେ ବସି । ଅନେକ ନିଶାଚର ନାଶି ॥
ଭୟେ ଭାଜିଲେ ଦୈତ୍ୟବଳ । ଏମନ୍ତେ ଗଲା କେତେ କାଳ ॥
ବଳି ଯେ ଗୋଷ୍ଠ ଅଭିମାନେ । ଶରଣ ଗଲେ ତ୍ରିଲୋଚନେ ॥
ପ୍ରସନ୍ନେ ବର ଦେଲେ ହର । ବଳି ହୋଇଲା ବଳୀୟାର ॥
ଯୁଦ୍ଧେ ଅମରଗଣ ଜିଣି । ତ୍ରୈଲୋକ୍ୟ ହୋଇଲା ବାରେଣି ॥
ଦାନେ ହୋଇଲା ଅତି ଦାତା । ତା ଜାଣି ଜଗତକରତା ॥
ମାୟା ବାମନ ରୂପେ ଆସି । ତଳଙ୍କ ମୋହିଲେ ଆକର୍ଷି ॥
ଛଦ୍ମରେ ବିପ୍ର ରୂପ ଧରି । ଦାନେ ହରିଲେ ତାର ଶିରୀ ॥
ରଖିଲେ ନେଇ ତଳପୁରେ । ଯେସନେ ଗଜ ଭୟେ ଦ୍ୱେରେ ॥
ଅସୁରେ ସେହି ମତ ହୋଇ । ଲୁଚିଲେ ତଳପୁରେ ଯାଇ ॥
ଏବେ ତୋ ଉଦଯୋଗ କାଳେ । ଆସି ଖଟିଲେ ପାଦତଳେ ॥
ତୁମ୍ଭେ ଏହାଙ୍କୁ ଦୟା କର । ଅତି ଦୁର୍ଗତିରୁ ଉଦ୍ଧର ॥
ଏବେ ପୁଚ୍ଛିଲ ଯେଉଁ କଥା । କହିଲ ଶୁଣ ମହାରଥୀ ॥
ଏ ସତ୍ୟ ଦଣ୍ଡ ଏ ପ୍ରକାରେ । ଏବେ ଖଟିଲା ଆସି ତୋରେ ॥
ଏ ବାକ୍ୟ ମନ୍ତ୍ରୀ ମୁଖୁ ଶୁଣି । କୋପେ କମ୍ପଇ ବୀରମଣି ॥
ସମ୍ବର ଦୈତ୍ୟ ଥିଲା ଆଗେ । ତାକୁ ବୋଇଲା ଯାଅ ବେଗେ ॥
କହିବୁ ବାସବ ଅଗ୍ରତେ । ସିନ୍ଧୁ ମନ୍ଥିଲ କି ନିମନ୍ତେ ॥

ତହୁଁ ଯେତେକ ଉପୁଜିଲ । ସବୁ ତା କାହା ବୋଲେ ନେଲ ॥
ତହିଁ ନଥିଲା ରକ୍ଷକାର । ସେ ସେନ ଏତେ ଦେବଙ୍କ ଚୋର ॥
ଅସୁର କୁଳ ଦୂର କରି । ଦେବଙ୍କୁ ସେନ ଭୁଞ୍ଜେ ଶିରୀ ॥
ଏବେ ମୁଁ ଜାତ ମହାବୀର । ସାଗର ସୁତ ଜଳନ୍ଧର ॥
ମୋର ପିତାର ଦ୍ରବ୍ୟ ଯେତେ । ଦେବେ ନେଇଛ ବଳକୃତେ ॥
ସବୁ ତା ବାହୁଡ଼ାଇ ଦିଅ । ନୋହିଲେ ପ୍ରାଣ ମୂର୍ଚ୍ଛି ଥାଅ ॥
ଏମନ୍ତ କହ ତାକୁ ଯାଇଁ । ଶୁଣି କ ବୋଲେ ଶଚୀସାଇଁ ॥
ବୁଝି କରିବା ଯିନା ଦ୍ୱନ୍ଦ୍ୱ । ପୂର୍ବେ ଯେ ଯେପିଛନ୍ତି ବାଦ ॥
ଏମନ୍ତ କହି ଦଣ୍ଡଧାରୀ । ଦୂତକୁ ଗଜରବ କରି ॥
ସନ୍ଧି ଧେ ରଖିଲା ବିଶ୍ୱାସେ । ଅସୁର ଗଲା ସ୍ୱର୍ଗ ଦେଶେ ॥
ପ୍ରବେଶ ହେଲା ସୁର ଆଳେ । ଦ୍ୱାରେ ଯେ ଥିଲେ ଦ୍ୱାରପାଳେ ॥
ତାହାଙ୍କୁ କହି ଦୂତ ବେଗେ । ମିଳିଲା ସୁରପତି ଆଗେ ॥
ଆସ୍ଥାନ ତଳେ ଉଭା ହୋଇ । ବୋଲଇ ଶୁଣ ଶଚୀସାଇଁ ॥
ଅସୁର ନାମ ମୋ ଅଦ୍ଭୁତ । ମୁଁ ଜଳନ୍ଧର ରାଜା ଦୂତ ॥
ସେ ରାଜା ସାଗର ନନ୍ଦନ । ଅଟଇ ବଇରୀଗଞ୍ଜନ ॥
ଅଶେଷ ଭୂମଣ୍ଡଳ ପତି । ବ୍ରହ୍ମା ବଚନେ ଚକ୍ରବର୍ତ୍ତୀ ॥
ସକଳ ଲୋକେ ପ୍ରଭୁ ସେହି । ତାର ଉପରେ କେହି ନାହିଁ ॥
ମୁଁ ତାର ଆଣିଛୁ ବାରତା । ଶୁଣ ହେ ସକଳ ଦେବତା ॥
ପୂର୍ବେ ଯେ ମନ୍ଥିଲ ସାଗର । ବିଷ୍ଣୁ ସହିତେ ସୁରାସୁର ।
ତହୁଁ ପାଇଲ ଯେତେ ଦ୍ରବ୍ୟ । ତୁମ୍ଭେ ଆଣିଛ ତାହା ସର୍ବ ॥
ମ ଦେଇ ଅସୁରଙ୍କୁ କଷ୍ଟ । ସେ କଥା ଜାଣି ସିନ୍ଧୁ ରୁଷ୍ଟ ॥
ବିସ୍ତରେ ପିତା ଦ୍ରବ୍ୟ ତାର । ସାଗର ସୁତ ଜଳନ୍ଧର ॥
ତୁମ୍ଭଙ୍କୁ ଦେଇଛୁ ଉଦନ୍ତ । ସିନ୍ଧୁ ମନ୍ଥନେ ଯେତେ ବସ୍ତୁ ॥
ମୋର ଗୋଚରେ ଦିଅ ବେଗେ । ଯେନାଇ ଆସ ସଙ୍ଗେ ସଙ୍ଗେ ॥

ରାଜାଙ୍କୁ କର ଦରଶନ । କୁଶଳ ହେବ ସକଳ ଜନ ॥
ଏମନ୍ତେ ଦୂତ ବାକ୍ୟ ଶୁଣି । କୋପେ କହଇ ବଜ୍ରପାଣି ॥
କିଙ୍କରଗଣଙ୍କୁ ଅନାଇଁ । ବୋଲଇ କ କହଇ ବାଇ ॥
ଏଠାରୁ କାଢ଼ କେଶ ଧରି । ଘଉଡ଼ ଜୀବନେ ନ ମାରି ॥
ବାସବ ଆଜ୍ଞା ପରମାଣେ । ଧାଇଁଲେ ସେ କିଙ୍କରଗଣେ ॥
ଦୂତର କେଶ ଧରିନେଲେ । ନଗ୍ର ଉପାନ୍ତେ ଛାଡ଼ିଦେଲେ ॥
ତ୍ରାହିକ ପାଇ ମହାବଳୀ । ସିନ୍ଧୁଙ୍କ ଦେଶେ ଯାଇଁ ମିଳି ॥
କହିଲା ଜଳନ୍ଧର ଆଗେ । ଦୂତର ବାକ୍ୟ ଶୁଣି ରାଗେ ॥
ସମ୍ବୋଧେ ସାଗର ନନ୍ଦନ । ସାଜିଲା ଅସୁର ସଇନ୍ୟ ॥
ଶୁମ୍ଭ ମନ୍ତ୍ରୀଙ୍କ ବେଗେ ନେଇ । ସ୍ୱର୍ଗକୁ କଲା କଟକାଇ ॥
ସହସ୍ରେ ଅକ୍ଷଉଣି ତା ବଳ । ଗମନ୍ତେ କମ୍ପେ ଭୂମଣ୍ଡଳ ॥
ରଥ ତୁରଙ୍ଗ ଯେ ପଦାତି । ରଣେ ସାଜନ୍ତି ରଙ୍ଗେ ଅତି ॥
ବଜାଇ ଟମକ ନିଶାଣ । ଚଳନ୍ତି ନିଶାଚରଗଣ ॥
ଚମର ଛତ୍ର ପନ୍ତି ପନ୍ତି । ନ ଦିଶେ ଦିନକର ଜ୍ୟୋତି ॥
ଥାଟ ଚଳନ୍ତେ ଉଡ଼େ ରେଣୁ । ଗଗନ ଅନ୍ଧକାର ତେଣୁ ॥
ମେରୁ ପର୍ବତେ ଉଠି ବଳ । ଲଙ୍ଘିଲେ ଦେବତାଙ୍କ ସ୍ଥଳ ॥
ଜାଣି ସକଳ ସୁରଗଣେ । ଇନ୍ଦ୍ର ସଙ୍ଗରେ ମିଳି ରଣେ ॥
ଦେବ ଦାନବେ ଭେଟପଡ଼ି । ପ୍ରୀତି ଉପ୍ରୋଧ ଦୂରେ ଏଡ଼ି ॥
କରନ୍ତି ସେହି ଘୋର ରଣ । ବିନ୍ଧନ୍ତି କୋଟି କୋଟି ବାଣ ॥
ବଜ୍ର ସଦୃଶେ ବାଣ ପଡ଼ି । ଶବଦ ଯେହ୍ନେ ଘଡ଼ଘଡ଼ି ॥
ଦୁନ୍ଦୁଭି ନିଶାଣର ଧ୍ୱନି । ଶବଦେ କମ୍ପେ ପୁର ତିନି ॥
ବିବିଧ ଅସ୍ତ୍ର ଆତସାତ । ଦେବଙ୍କ ଶର ନିରଘାତ ॥
ଦୈତ୍ୟେ ବିନ୍ଧନ୍ତି ତୀକ୍ଷଣ ଶର । ଯେହ୍ନେ ପର୍ବତେ ଜଳଧାର ॥
ରଥ ମାତଙ୍ଗ ହସ୍ତୀ ଚଢ଼ି । ଯୁଦ୍ଧ କରନ୍ତି ଆଗ ବଢ଼ି ॥

ପଦାତି ବଳ ମିଶାମିଶି । ଯୁଝନ୍ତି ଅଶ ଶସ୍ତ୍ର ପେଷି ॥
କାଣ୍ଡ କୁଠାର ଚକ୍ରକାନ୍ତି । ପରଘ ଭୁଷଣ୍ଡି ଶକ୍ତି ॥
ଗଦା ଗୁରୁଜ ଶୂଳ ଧରି । ବିବିଧ ପାଦଗତି କରି ॥
କେ ଅସିପଟ୍ଟ କରେ ତୋଳି । ପ୍ରହାର କରୁଛନ୍ତି ବଳୀ ॥
ଆଡ଼ନ୍ତି ଗୁଡ଼ନ୍ତି ସବୁରି । କେ ମାଲ୍ଲ ଯୁଦ୍ଧେ ଧରାଧରି ॥
କେ ପଡ଼ ଗଡ଼ ରଡ଼ ଗୁଡ଼େ । ଶବ୍ଦେ ଗିରିଶୃଙ୍ଗ ଝଡ଼େ ॥
ଦେବ ଦୈତ୍ୟଙ୍କ ବୀର ଡାକେ । ମେରୁ କମ୍ପଇ ମହୀ ଶଙ୍କେ ॥
ବେଳକୁ ବେଳ ଯୁଦ୍ଧ ଟାଣ । ପଡ଼ନ୍ତି ଅପର୍ଯ୍ୟାପ୍ତ ବାଣ ॥
ଖଡ୍ଗ ଘାତେ ଶିର ଛିଣ୍ଡି । ମଡ଼ା ଉପରେ ମଡ଼ା ପଡ଼ି ॥
ଉଭସ୍ମ ଥାନ୍ତି ଶିର ଭୁଟି । କବନ୍ଧ ନାଚେ କୋଟି କୋଟି ॥
ରକତ ନଦୀ ପ୍ରାପ୍ତ ହୋଇ । ସାଗର ମାର୍ଗେ ବହି ଯାଇ ॥
ଏମନ୍ତ ଦୁର୍ଲ୍ଲଭ ସମର । ବାସବ ସଙ୍ଗେ ଜଳନ୍ଧର ॥
ଯେତେ ଯୁଝିଲେ ଅଙ୍ଗ ଛଳେ । କହିଲେ ନ ସରିବ କାଳେ ॥
ଏହି ପ୍ରକାରେ ଦେବ ଦୈତ୍ୟ । ଯୁଦ୍ଧ କରନ୍ତି ନିତ୍ୟ ନିତ୍ୟ ॥
ଦିନ ଅନ୍ତରେ ବେନି ଦଳ । ରହନ୍ତି ଗଙ୍ଗା ବେନିକୂଳ ॥
ନିଶା ଭାଗରେ ଶୁକ୍ର ଆସି । ସଂଗ୍ରାମ ଭୂମି ମଧ୍ୟେ ପଶି ॥
ସୁମରି ମୃତ୍ୟୁ ସଞ୍ଜୀବନୀ । ଜୀଆନ୍ତି ଅସୁର ସଇନୀ ॥
ରଜା ଗୁମ୍ଫକୁ ଦେଖି ଯାନ୍ତି । ତଦନନ୍ତରେ ବୃହସ୍ପତି ॥
ଦ୍ରୋଣାଦ୍ରି ପର୍ବତରୁ ଆଣି । ଯା ନାମ ବିଶଲ୍ୟକରଣୀ ॥
ସେ ବୃକ୍ଷ ପତ୍ର ରସ ନେଇ । ଦେବଙ୍କୁ ଜୀବ ଦାନ ଦେଇ ॥
ଏମନ୍ତେ ବଢ଼େ ବେନି ଦଳ । ସ୍ୱର୍ଗ ପାଇଲେ ରଣ ଗୋଳ ॥
ଯୁଦ୍ଧ କରନ୍ତି ଅଗ୍ରଛଳେ । ବିଶୁଦ୍ଧ କ୍ଷତ୍ରୀ ବେନିଦଳେ ॥
ରଣେ ପଡ଼ନ୍ତି ଯେତେ କ୍ଷତ୍ରୀ । ସବେ ଜୀଆନ୍ତି ଦେବି ମନ୍ତ୍ରୀ ॥
ଏମନ୍ତ କେତେଦିନ ଅନ୍ତେ । ସାଗରସୁତ କୋପଚିତ୍ତେ ॥

ଶୁକ୍ରଙ୍କୁ ପଚାରିଲା ରାଇ । ବୋଇଲା ଶୁଣ ବାକ୍ୟ ସାଇଁ ॥
ମୁହିଁ ସଂଗ୍ରାମେ ଯେତେ ଯେତେ । ଦେବଙ୍କୁ ସଂହାରଇ ଦୈତ୍ୟେ ॥
ସେ ପୂର୍ଣ୍ଣ ଆଉ ବଳ ଆସି । ଯୁଦ୍ଧ କରନ୍ତି ରଣେ ପଶି ॥
କେମନ୍ତେ ପାନ୍ତି ନିଜ ଦେହ । ତୁମ୍ଭେ ତା କପାଇଁ ନ କହ ॥
ନୃପତି ବଚନେ ସଂଶୟ । ଶୁକ୍ର କହନ୍ତି ଶୁଣ ରାୟ ॥
ଦେବଙ୍କ ଗୁରୁ ବୃହସ୍ପତି । ଜାଣନ୍ତି ସର୍ବ କର୍ମ ଗତି ॥
ସେ ଯେ ଦେବଙ୍କ ହିତପାଇଁ । ଦ୍ରୋଣାଦ୍ରି ପର୍ବତକୁ ଯାଇ ॥
ଯେଉଁ ଔଷଧ ତହିଁ ଅଛି । ତାହା ଆଣନ୍ତି ଗୁରୁ ବାଛି ॥
ସେ ବୃକ୍ଷ ରସ ନାସେ ଦେଇ । ମୃତ ଦେବତାଙ୍କୁ ଜୀଆଇ ।୨୬୦ ।
ଏ କଥା ସତ୍ୟ ନୃପମଣି । ଆମ୍ଭେ ନିଶ୍ଚୟ ଅଛୁଁ ଜାଣି ॥
କହିଲୁ ତୁମ୍ଭର ଆଗର । ମନ୍ତ୍ରୀର ଏମନ୍ତ ଉତ୍ତର ॥
ସକଳ କଥା ବୁଝିଥିବ । ନୃପତି ପୁଚ୍ଛିଲେ କହିବ ॥
ତୁ ଏବେ ଜାଣିଲୁ ନିଶ୍ଚୟ । ଉଚିତ କାର୍ଯ୍ୟ କର ରାୟ ॥
ମନ୍ତ୍ରୀ ବଚନୁ ଏହା ଶୁଣି । ସାଗର ସୁତ ମନେ ଗୁଣି ॥
ଗମନ କଲା ନିଶାକାଳେ । ଦେବ ସଇନ ଭୁଜ ବଳେ ॥
ଉପାଡ଼ି ଆଣିଲା ଉଚ୍ଛଟେ । ସମୁଦ୍ରେ ରଖିଲା ଗୁପତେ ॥
ଗିରି ନ ଦେଖି ବୃହସ୍ପତି । ବିସ୍ମୟ ମନେ ବିଚାରନ୍ତି ॥
ଦେବଙ୍କୁ ନାହିଁ ଆଉ ଗତି । ଯାହା ଅର୍ଜିଲା ସୁରପତି ॥
ଈଶ୍ବରେ କଲା ଦ୍ରୋହ କର୍ମ । ଏବେ ଛାଡ଼ିଲା ନିଷ୍ଠେ ଧର୍ମ ॥
ଏତେ ବିଚାରି ଗୁରୁ ଚିତ୍ତେ । କହିଲେ ଦେବଙ୍କ ଅଗ୍ରତେ ॥
ବିବୁଧଗଣେ ତୁମ୍ଭେ ଶୁଣ । ଦ୍ରୋଣାଦ୍ରି ଗିରି ଆମ୍ଭ ପ୍ରାଣ ॥
ନାନା ଔଷଧ କରି ଯେତେ । ଅମର ପୀୟୂଷ ସହିତେ ॥
ଗୁପତେ ରଖିଥିଲି ତହିଁ । ମୋ ବିନୁ ନ ଚିହ୍ନନ୍ତି କେହି ॥
ଏବେ ଅସୁରେ ନେଲେ ହରି । ନ ଚିହ୍ନି ଗିରି ଆଦିକରି ॥

ଏବେ ତ ବୁଦ୍ଧି ନାହିଁ ଆଉ । କାଳ ସମରେ କେବା ଜୀଉଁ ॥
ସାଗର ସୁତ ଜଳନ୍ଧର । ଛେଦବ ସଭିଙ୍କର ଶିର ॥
ଏଥିକୁ ନାହିଁ ପରିତ୍ରାଣ । ମୋର ବଚନ ଏବେ ଶୁଣ ॥
ଉପେକ୍ଷି ସ୍ୱର୍ଗପୁର ବାସ । ପଳାଇ ଯିବା ସର୍ବେ ଆସ ॥
କନକଗିରି ଗୁହାନ୍ତରେ । ଗୁପତେ ରହିବା ନିର୍ଭରେ ॥
ମନେ ସୁମରି ଶିବପଦ । ଖଣ୍ଡିବା ସକଳ ଦୁର୍ଗତି ॥
ଏମନ୍ତେ ଗୁରୁ ଶିକ୍ଷା ପାଇ । ସକଳ ଦେବଲୋକେ ଧାଇ ॥
କାଞ୍ଚନ ଗିରି କୋଟେ ପଶି । ମନେ ସୁମରି ବ୍ରହ୍ମଋଷି ॥
ଗୁପତେ ରହିଲେ ନିଶ୍ଚିନ୍ତେ । ଦେବଙ୍କୁ ନ ଦେଖି ଦଇତ୍ୟେ ॥
ଆନନ୍ଦେ ବିହରନ୍ତି ସ୍ୱର୍ଗ । ସାଗର ସୁତ କର୍ମ ଭୋଗେ ॥
ଦେବଙ୍କ ପଣ ଜଣେ ଜଣେ । ଆକୋଳି ନିଶାଚରଗଣେ ॥
କାଳେଣି ହେଲେ ତିନିପୁରେ । ଦେବେ ଲୁଚିଲେ ପ୍ରାଣ ଡରେ ॥
ବିପତ୍ତି ଖଣ୍ଡିବା ନିମନ୍ତେ । ମନ ନବେଶି ଲକ୍ଷ୍ମୀକାନ୍ତେ ॥
ଯେ ପ୍ରଭୁ ସର୍ବ ଅନ୍ତର୍ଯାମୀ । ଦେବଙ୍କ ଦେବ ଦେବ ସ୍ୱାମୀ ॥
ସକଳ ଲୋକ ପରେ ବାସ । ନମଇଁ ମହାଦେବ ଦାସ ॥

ଇତି ଶ୍ରୀ ପଦ୍ମପୁରାଣେ ଉତ୍ତର ଖଣ୍ଡେ କାର୍ତ୍ତିକ ମାହାତ୍ମ୍ୟେ ଦେବ-ଲୋକ ଗୋପନଂ ନାମ ଅଷ୍ଟମୋଽଧ୍ୟାୟଃ ।

---

## ନବମ ଅଧ୍ୟାୟ

### ନାରଦ ଉବାଚ

ପ୍ରବିଷ୍ଟେ ନଗର୍ଯାଂ ଦୈତ୍ୟେ ଦେବାଃ ଶକ୍ରପୁରୋଗମାଃ ।
ସୁବର୍ଣ୍ଣାଦ୍ରେ ଗୁହାଂ ପ୍ରାପ୍ୟନ୍ୟବଶନ୍ ଦୈତ୍ୟତାପିତାଃ ॥

କହନ୍ତି ପଦ୍ମଯୋନି ସୁତ । ପଦ୍ମ ପୁରାଣେ ଯେ ଉକତ ॥
ଉତ୍ତର ଖଣ୍ଡେ ଗ୍ରନ୍ଥ ସାର । ଶୁଣ ହେ ପୃଥୁ ନୃପବର ॥

ଦେବେ ଯେ ସ୍ୱର୍ଗ ଗୁଡ଼ିଗଲେ । କନକ ଗୁହା ଆଶ୍ରେ କଲେ ॥
ଦୈତ୍ୟେର ତିନପୁରେ ପୂରି । ଭୁଞ୍ଜନ୍ତି ତିନ ଲୋକ ଶିଘ୍ର ॥
ଦିନେ ନୃପତି ଜଳନ୍ଧର । ହକାରି ଶୁଭ ମନ୍ତ୍ରୀବର ॥
ଅଛରି ଘେବେ ହିଂସା ବନ୍ଧୁ । ପୁଚ୍ଛଇ ଦେବେ ଗଲେ କାହିଁ ॥
ଯେବେ କି ପ୍ରାଣେ ଥିବେ ସୁର । ତେବେ କୁଶଳ କାହିଁ ମୋର ॥
ଦେହେ ଯେ ଲୁଚିଥାଇ ବ୍ୟାଧି । ଅମ୍ଭାକୁ ଶତ୍ରୁ ପଣେ ସାଧି ॥
ବଇରୀ ସେହ୍ନ ପରକାରେ । ପଳାଇ ଥାଇ ଯେବେ ଡରେ ॥
ଗୁପତେ ଥାଇ ଦିନା କେତେ । ପୁଣି ସାଧଇ ବୁଦ୍ଧି ମତେ ॥
ଏଥକୁ ବଇରୀର ମୂର୍ତ୍ତି । ମୋର ବଇରୀ ଶଚୀସାଇଁ ॥
ସେ ଯେବେ ପ୍ରାଣ ଘେନ ଅଛି । ମୋର ସମ୍ପଦ କାହିଁ ଅଛି ॥
ଏଥିକୁ କହ ମନ୍ତ୍ରୀବର । କାହିଁ ଅଛନ୍ତି ସର୍ବ ସୁର ॥
ଜାଣିଲେ ଯିବୁ ଏହିକ୍ଷଣି । ଲୁଚିଲାଠାରୁ ଧରିଆଣି ॥
ମାରିବି ଇନ୍ଦ୍ରାଦି ଦେବତା । ତେବେ ମୁଁ ହୋଇବି ଅଚିନ୍ତା ॥
ଏମନ୍ତେ ନୃପତି ବଚନେ । କହନ୍ତି ଭୃଗୁଙ୍କ ନନ୍ଦନେ ॥
ଶୁଣ ରାଜନ ବନ୍ଧବଶେ । ସକଳ ଦେବ ତୋର ତ୍ରାସେ ॥
କନକ ଗିରି କନ୍ଦରରେ । ଲୁଚି ପାଷାଣ ଢାଙ୍କି ଦ୍ୱାରେ ॥
ଗୁପତେ ରହିଛନ୍ତି ସର୍ବେ । ପୁଣି କି ଉପାୟ କରିବେ ॥
ତାଙ୍କ ଉପାୟ ସିଦ୍ଧ ନୋହୁ । ପାରିଲେ ଧରି ଆଣ ତହୁଁ ॥
ଏମନ୍ତ ମନ୍ତ୍ରୀ ମୁଖୁଁ ଶୁଣି । ସେ ଜଳନ୍ଧର ବୀରମଣି ॥
ଅସୁର ବଳଙ୍କୁ ଅନାଇଁ । ବୋଲଇ ଯାଅ ବେଗ ହୋଇ ॥
କନକ ଗିରି ଖୋଟରାଜ । ନିର୍ବନ୍ଧେ ଜଗିଥାଅ ଆଜ ॥
ସେ ଗିରି ଖୋଳେ ସର୍ବ ସୁରେ । ଲୁଚି ଅଛନ୍ତି ମୋର ଡରେ ॥
ଆମ୍ଭଙ୍କୁ ଜିଣିବା ଉପାୟେ । ରହିଛନ୍ତି ଦେବତାଏ ॥
ତାହାଙ୍କ ବୁଦ୍ଧି ବଳ ପାଞ୍ଚ । ଯୁଦ୍ଧ ଆରମ୍ଭ କଧି ସଞ୍ଚ ॥

ଆମ୍ଭେ ମାରିବା ତାଙ୍କୁ ଧରି । ଉପାଡ଼ି ଗିରି ଆନ୍ଧକର ॥
ସମୁଦ୍ରେ ପକାଇବା ଆଣି । ସକଳ ସୁର ଶିର ହାଣି ॥
ଏଥିକୁ ଆଗେ ତୁମ୍ଭେ ଯାଅ । ଆଜ୍ଞା ଗିରି ଜଗିଥାଅ ॥
ମୋତେ ଅବେଳ ଆଜ ଦିନ । ପ୍ରଭାତେ କରିବି ଗମନ ॥
ଏମନ୍ତ ବୋଲି ଥାଟ ପେଷି । ନୃପତି ଅନ୍ତଃପୁରେ ପଶି ॥
ସାରିଲେ ସ୍ନାହାନ ଭୋଜନ । ନିଶାରେ ପଲ୍ୟଙ୍କେ ଶୟନ ॥
ଥାଟେ ସେ ଗଲେ ଆଗେ ଚଳି । ଯେସନେ ସମୁଦ୍ର ଉଛୁଳି ॥
କୂଳ ଲଙ୍ଘଇ କାଳବଶେ । ତେସନେ ଦୁର୍ଦ୍ଧାନ୍ତ ସାହସେ ॥
କନକଗିରି ତଳେ ପୂରି । ବେଢ଼ିଲେ ଶତମ୍ପୁର କରି ॥
ପର୍ବତେ ଉଠିଲେକ ସୈନ୍ୟ । ବରଷା କାଳେ ଯେହ୍ନେ ଘନ ॥
ସେହ୍ନ ପ୍ରକାରେ ଦୈତ୍ୟବଳେ । ଘୋଟିଲେ କନକ ଶଇଳେ ॥
ବାଣ ବଚନ ବାଦ୍ୟ ଧ୍ୱନି । ଶବଦେ କମ୍ପଇ ମେଦିନୀ ॥
ପର୍ବତ ଗର୍ଭେ ଦେବେ ଶୁଣି । ଅସୁର ଧାଡ଼ି ବୋଲି ଜାଣି ॥
ଷବାଦେ ଭରସା ନ କରି । ଆତଙ୍କେ ଗୋବିନ୍ଦ ସୁମରି ॥
ହେ ଦେବ ଦେବ ଚକ୍ରଧର । ଖଳ ନାଶନ ବାନା ତୋର ॥
ଭକ୍ତବତ୍ସଳ ବାନା ବହୁ । ସୁଜନ ସନ୍ତାପ ନ ସହୁ ॥
ସନ୍ଥ ପାଳନେ ଦେହ ଧରୁ । ସୁଜନ ଜନ ଦୁଃଖ ହରୁ ॥
ମତ୍ସ୍ୟ କଚ୍ଛପ କୋଳ ରୂପୀ । ନମୋ ନୃସିଂହ ବିଶ୍ୱବ୍ୟାପି ॥
ନମୋ ବାମନ ଦ୍ୱିଜବର । ଶଙ୍ଖ ସାରଙ୍ଗ ଚକ୍ରଧର ॥
ଗଦା ସଜ୍ଜିତେ ଭୁଜ ସ୍ଥିର । ଦୁଷ୍ଟ ଦାନବ ଦର୍ପହାରି ॥
ଅବନୀ ଭାର କରୁ ନାଶ । ତୋତେ ସୁନ୍ଦର ପୀତବାସ ॥
କୌସ୍ତୁଭମଣି ହୃଦେ ସାଜେ । ନମୋ ଦେବାଧି ଦେବରାଜେ ॥
ଗରୁଡ଼ଧ୍ୱଜ ଲକ୍ଷ୍ମୀକାନ୍ତ । ଅନନ୍ତ ଶୟନ ଅଚ୍ୟୁତ ॥
ଅଖିଳ ଜନ ଆତ୍ମା ରୂପୀ । ଆକାଶ ଜଳ ସ୍ଥଳ ବ୍ୟାପି ॥

ସକଳ ହୃଦପଦ୍ମେ ଥାଉ । ଭାବେ ଅଭାବେ ଗତି ହେଉ ॥
ଏଣୁ ତୋ ନାମ ଅନ୍ତର୍ଯାମୀ । ଆମ୍ଭ ଆତଙ୍କ ଫେଡ଼ ସ୍ୱାମୀ ॥
ତୁ ଆମ୍ଭ ପ୍ରଭୁ ପଦ୍ମମୁଖ । ଘୋର ଦାନବ ଦଣ୍ଡି ରଖ ॥
ଏମନ୍ତ ବୋଲି ଦେବଲୋକେ । ସ୍ତୁତି କରନ୍ତି ଗୁରୁ ଶୋକେ ॥
ଦେବଙ୍କ ଆତଙ୍କ ବାରତା । ଜାଣିଲେ ଜଗତ କରତା ॥
ଉପେକ୍ଷି ଅନନ୍ତ ଶୟନ । ସନ୍ନିଧେ ଥିଲେ ସୁପର୍ଣ୍ଣ ॥
ଅପୂର୍ବ ରୂପ ହୋଇ ହରି । ଗରୁଡ଼ କାନ୍ଧେ ବିଜେ କରି ॥
ଲକ୍ଷ୍ମୀଙ୍କି କୃଷ୍ଣ ଚକ୍ରପାଣି । ବୋଲନ୍ତି ଶୁଣ କମଳିନୀ ॥
ସିନ୍ଧୁ ନନ୍ଦନ ଜଳନ୍ଧର । ସେ ଦୁଷ୍ଟ ସାନୁଜ ତୁମ୍ଭର ॥
ସଙ୍ଗେ ତା ଘେନ ଦୈତ୍ୟ ବଳ । ଜିଣିଲା ଦଶଦିଗପାଳ ॥
କାରେଣି ହେଲା ତ୍ରିଦିବପୁରେ । ଦେବେ ପଳାଇ ତାର ଡରେ ॥
ଲୁଚିଲେ ଗହନ କାନନେ । ଏତେକେ ଶାନ୍ତି ନାହିଁ ମନେ ॥
ଦେବଙ୍କୁ ନବାଶିବ ଡ଼ାକେ । ଏମନ୍ତେ ଥାଇ ଦୈତ୍ୟବଳେ ॥
କନକ ଗିରି ବେଢ଼ିଛନ୍ତି । ଦେବେ ଆତଙ୍କେ ମୋତେ ଚିନ୍ତି ॥
ସେ ମୋର ଅଧୀନ ଦେବତା । ତାଙ୍କ ବିପତ୍ତି ମୋତେ ଚିନ୍ତା ॥
ଯେ ସାଧୁଜନେ ହିଂସା କରି । ସେ ନଷ୍ଟେ ମୋହର ବଇରି ॥
ଏବେ ମୁଁ ଦେବତାଙ୍କ ଛଳେ । ମାରିବି ଜଳନ୍ଧର ହେଳେ ॥
ଏମନ୍ତ ପ୍ରଭୁ ବାକ୍ୟ ଶୁଣି । କହନ୍ତି ସାଗର ଦୁଲଣୀ ॥
ହେ ପ୍ରଭୁ ତ୍ରୈଲୋକ୍ୟର ନାହା । ଶ୍ରୀମୁଖେ ଆଜ୍ଞା ଦେଲେ ଯାହା ॥
ସେ ବାକ୍ୟ ଶୁଣନ୍ତେ ମୁଁ କର୍ଣ୍ଣେ । ଏଣିପୁ ଘେନୁଅଛି ମନେ ॥
ସେ ଜଳନ୍ଧର ମହାବୀର । ଈଶ୍ୱର ଅଂଶେ ଅବତାର ॥
ସାଗରୁ ହେଲା ଉତପତ୍ତି । ପ୍ରସନ୍ନ ହୋଇ ବେଦପତି ॥
ଅଭୟ ବର ତାଙ୍କୁ ଦେଲା । ତେଣୁ ସେ ଜଗତ ଜିଣିଲା ॥
ଏ କଥା ଜାଣଇ ମୁଁ ଭଲେ । ତୁମ୍ଭେ ନ ଯୁଝ ତାର ତୁଲେ ॥

ଲଘୁତ୍ୱ ଜନେ ଅମରଷ । ଉଭୟ ଲୋକେ ନାହିଁ ଯଶ ॥
ଏ କଥା ବୁଝି କାର୍ଯ୍ୟ କର । ତୁମ୍ଭେ ତ ଜଗତ ଈଶ୍ୱର ॥
ଏତେ ଜଣାଇ କମଳଜା । ଶିରେ ନବେଣି ବେନ ପାଣି ॥
ଭକ୍ତ ଆତୁରେ ଭଗବାନ । ଲକ୍ଷ୍ମୀଙ୍କୁ କହନ୍ତି ବଚନ ॥
ଖଳ ନାଶନ ବାନା ମୋର । ତୁ ମୋତେ ନିରୋଧ ନ କର ॥
ଏମନ୍ତ ବୋଲି ଦଇତାରି । ଖଗ ଆସନେ ବିଜେ କରି ॥
ଯୁଦ୍ଧକୁ କରନ୍ତି ଗମନ । ଅଶେଷ ଜଗତ ଜୀବନ ॥
ଗରୁଡ଼ କନ୍ଧେ ଶ୍ରୀବତ୍ସାଙ୍କ । କବା ଉପମା ଦେବା ତହିଁ ॥
ଯେସନେ ହେମ ଗିରି ଶିର । ଉଦୟ ନବ ଜଳଧର ॥
ଗଗନ ପବନର ଗତି । ଦିଗେ ବିଗଳେ ବସ୍ତ୍ର ଜ୍ୟୋତି ॥
ତମାଳପତ୍ର ବର୍ଣ୍ଣ ତନୁ । ତେଜ ବିଗଳେ କୋଟିଭାନୁ ॥
ଦୁର୍ଦ୍ଦଣ୍ଡ ଦଣ୍ଡ ଭୁଜ ଚାରି । ଗଦା ଖଡ଼ଗ ଚକ୍ର ଧରି ॥
କନକ କମ୍ବୁ ବାମ କରେ । ବଜା ସମୀରେ ଧ୍ୱନି କରେ ॥
ଶବ୍ଦେ ଦଶଦିଗ ପୂରି । ଦନୁଜ ପୁରେ ପଡ଼େ ଡରି ॥
ସିଦ୍ଧଙ୍କ ଦେଖେ ଉତପାତ । ଗଗନୁ ପଡ଼େ ନିର୍ଘାତ ॥
ଅସ୍ଥି ଉପରି ଧୂମ ଧୂଳି । ଆଚ୍ଛାଦି ଗଗନ ନକଳ ॥
ଲୋମ ରୁଧିର ଭସ୍ମ ମିଶି । ନମେଘେ ଗଗନୁ ବରଷି ॥
ଭୂମି କମ୍ପଇ ଥର ହର । ତା ଦେଖି ବୀର ଜଳନ୍ଧର ॥
ପୃଚ୍ଛଇ ଶୁକ୍ରଙ୍କ ଅଗ୍ରତ । ହେ ମୁନି ଏ କି ବିପରୀତ ॥
ମୋର ଭୁବନେ ଉତପାତ । କହ ଏ କେବଣ ଚରିତ ॥
ଶୁକ୍ର ବୋଲନ୍ତି ରାଜା ଶୁଣ । ଦେବଙ୍କ ଛଳେ ନାରାୟଣ ॥
ଗରୁଡ଼ ଆରୋହି ଆକାଶେ । ଆସନ୍ତି ତୋହର ଉଦ୍ଦେଶ୍ୟେ ॥
ତାଙ୍କର ଦଇତାରି ବାନା । ତେଣୁ ଏ ଉପଦ୍ରବ ସିନା ॥
ମନ୍ତ୍ରୀବରର ଏ ହକତ । ଶୁଣି ସମ୍ବୋଧେ ସିନ୍ଧୁସୁତ ॥

ଯୁଦ୍ଧ ଆରମ୍ଭେ ସଜ ହୋଇ । ଛୁଟିଲେ ସୈନ୍ୟ ସଖା ଘେଇ ॥
ଅବେଷ୍ଟି ହେମମୟ ରଥେ । ଧାଇଁଲେ ଉତ୍ତର ଦିଗ ପଥେ ॥
କହଇ ବ୍ରହ୍ମାଙ୍କ ନନ୍ଦନ । ଏଥି ଉତ୍ତରେ ଭଗବାନ୍ ॥
ଗରୁଡ଼ ପୃଷ୍ଠେ ବିଜେ କରି । ମିଳିଲେ ହେମକୂଟ ଗିରି ॥
ଦୈତ୍ୟେ ଯେ ଜଳନ୍ଧର ବୋଲେ । ଦେବଙ୍କୁ ବଦ୍ଧ କରିଥିଲେ ॥
ଗୋବିନ୍ଦ ଆଗମନ କାଳେ । ଭୟେ ଭାଜିଲେ ଦୈତ୍ୟବଳେ ॥
ବହୁତ ତୃଣ ଠୁଳ ହୋଇ । ଯେସନେ ଏକ ଠାବେ ଥାଇ ॥
ସେ ଯେହ୍ନେ ଉଡ଼ନ୍ତି ପବନେ । ଅସୁରେ ଗୋବିନ୍ଦ ଦର୍ଶନେ ॥
ଭାଜିଲେ ସେହିମତ ହୋଇ । ଏମନ୍ତେ ଜଳନ୍ଧର ଯାଇ ॥
ସୈନ୍ୟଙ୍କୁ ଉତ୍ସିଲ ଆକୋରି । ଦୈତ୍ୟଙ୍କୁ ଦେଖି ଦଇତାରି ॥
ଦେବଙ୍କ ଛଳେ କୋପ ମୂର୍ତ୍ତି । ସେ କଥା ଜାଣି ଖଗପତି ॥
ପକ୍ଷ ପବନ ଘୋର ବାତେ । ଗଗନେ ଉଡ଼ିଲେ ଦଇତେ ॥
ବତାସେ ରେଣୁ ପ୍ରାୟ ଉଡ଼ି । ପଡ଼ିଲେ ବନ ଗିରି ମାଡ଼ି ॥
ପବନେ ଯେହ୍ନେ ରମ୍ଭାବନ । ତେହ୍ନେ ଛିନ୍ନ ଭିନ୍ନ ଦୈତ୍ୟସୈନ୍ୟ ॥
ତା ଦେଖି ଜଳନ୍ଧର କୋପି । ବାଣ ବର୍ଷିଲା ଦିଗ ବ୍ୟାପି ॥
ପ୍ରଭୁଙ୍କୁ କଲା ଶର ପୀଡ଼ା । ତିଳାର୍ଦ୍ଧେ ନ ଦିଶଇ ଛଡ଼ା ॥
ଭୂମି ଗଗନ ଅନ୍ଧକାର । ଚଳି ନ ପାରେ ଖଗେଶ୍ୱର ॥
ଛନ୍ନକତ ହୋଇ ଶର କାଟେ । ବେଳକୁ ବେଳ ଶର ପଡ଼େ ॥
ତା ଦେଖି ପ୍ରଭୁ ଚକ୍ରପାଣି । ଅସୁର ଶର ପଥୁ ହାଣି ॥
ଦିଗ ଦିଶିଲା ଶୋଭାକର । ଗର୍ଜି ଗମଇ ଖଗେଶ୍ୱର ॥
ଗରୁଡ଼ ସ୍କନ୍ଧେ ଜଗଜ୍ଜ୍ୟୋତି । ଦେବଙ୍କ ଛଳେ ଉଗ୍ରମୂର୍ତ୍ତି ॥
ଗଦା ବୁଲାଇ କୋପ ମନେ । ପିଟିଲେ ଅସୁର ବିମାନେ ॥
ପ୍ରହାରେ ରଥ ଗଜ ଭାଜି । ଅସୁରେ ହୃଦେ ସ୍ୱେ ବାଜି ॥
ଜଗନ୍ନାଥଙ୍କ କରୁ ଛିଡ଼ି । ଭୂମି ଉପରେ ଗଦା ପଡ଼ି ॥

ଦେଖି ଅସୁର ମହାବଳୀ । ଗଦା ସେବନଲ୍ଲ କରେ ତୋଳି ॥
ପିଟିଲ ଖଗେଶ୍ବର ମୁଣ୍ଡେ । ଯେସ୍ନେ କୁଳଶ ଗିରି ଖଣ୍ଡେ ॥
ତେଷ୍ନେ ଶୁଭିଲ ଘଡ଼ଘଡ଼ । ପୂର୍ଚ୍ଛିଁ ମୁର୍ଚ୍ଛା ଯାଇ ପଡ଼ ॥
ତା ଦେଖି ଜଗତ ଈଶ୍ବର । ଶଙ୍ଖ ଛୁଆଇଁ ତାର ଶିର ॥
ଭୃତ୍ୟକୁ ଦେଲେ ଜୀବ ଦାନ । ବୋଇଲେ ଯାଅ ନିଜ ସ୍ଥାନ ॥
ଆଜ୍ଞାରେ ଗଲ ଖଗପତି । ଏଥି ଉତ୍ତାରେ ଯୁଦ୍ଧ ଖ୍ୟାତି ॥
ଖଡ଼ଗ ଧରି ବିଷ୍ଣୁ କରେ । ପ୍ରହାର କଲେ ଜଳନ୍ଧରେ ॥
ଦୈତ୍ୟ କଞ୍ଚଇ ମାୟା ପଥେ । ବିଷ୍ଣୁଙ୍କୁ ପ୍ରହାରିଲେ ମୁଥେ ॥
ମୁଥ ବଞ୍ଚାଇ ଜଗନ୍ନାଥ । ଧଇଲେ ଦାନବର ହାତ ॥
ଅସୁର ଶସ୍ତ୍ର ଅପହରି । ବିଷ୍ଣୁଙ୍କୁ ବାମ କରେ ଧରି ॥
ତା ଦେଖି ପ୍ରଭୁ ବ୍ରହ୍ମବଣି । ତେଜିଲେ ଶଙ୍ଖ ଚକ୍ର ଅସି ॥
ହତ ଆୟୁଧ ହୋଇ ହରି । ଦୈତ୍ୟକୁ ସ୍ବଭୁଜେ ଧରି ॥
ଦୈତ୍ୟ ଧଇଲ ବେନିକରେ । ମାଲ ବନ୍ଧାଣ ଯୁଦ୍ଧ ପରେ ॥
ପୁଣି ଉଭୟ ମନେ ଗୁଡ଼ । ନିବନ୍ଧେ ଭୁଜେ ଭିଡ଼ାଭିଡ଼ ॥
ପଡ଼ ଗଡ଼ନ୍ତ ଭୂମି ଘାଟେ । ଯେସ୍ନେ ସମରେ ଦ୍ବେନ୍ଦ୍ର ନାଗେ ॥
ସିଂହ ଶାର୍ଦ୍ଦୂଳ ପ୍ରାୟେ ବଶି । ପୁଚ୍ଛେନ୍ତି ଅଙ୍ଗେ ଅଙ୍ଗ ମିଶି ॥
ପୁଣି ଗୁଡ଼ାଣ ପୁଣି ଧରି । ମୁଣ୍ଡକୁ ମୁଣ୍ଡ ମଗ୍ନମରି ॥
ନର୍ଘାତ ପ୍ରାୟେ ଶୁଭେ ଧ୍ବନି । ଅଗ୍ନି ଉଠୁଛି ତେଜ ଘେନି ॥
ପଟ୍ଟ ସଂଯୋଗ ପ୍ରାୟେ ଜ୍ବଳେ । ଲିଭ ପଡ଼ଇ ଅଙ୍ଗ ଝାଳେ ॥
ପାଦେ ମର୍ଦ୍ଦିତ ମହୀ ସ୍ଥଳୀ । କ୍ଷଣ କ୍ଷଣକେ ଉଡ଼େ ଧୂଳି ॥
ଦାନବ ଭୁଲେ ଦଇତାସ୍ତ୍ର । ଦେବଙ୍କ ଛଳେ ଯୁଦ୍ଧକରି ॥
ସେ ଜଳନ୍ଧର ମହାବଳୀ । ମୂର୍ଖ ସ୍ବଭାବେ ଜରେ କଳି ॥
ଯାର ମହିମା ଅପ୍ରମିତ । ତାର ସଙ୍ଗତେ ସିନ୍ଧୁ ସୁତ ॥
ଯୁଦ୍ଧ ଆରମ୍ଭେ ମାଲ ବନ୍ଧେ । ସୁମରି ମୁଥେ ମୁଥେ ସନ୍ଧେ ॥

ଅଳପ ଅପସରି ରହି । ମାରନ୍ତି ମର୍ମସ୍ଥାନ ଚାହିଁ ॥
ଭୁଜକୁ ଭୁଜ ଛନ୍ଦ ଧରି । ଚରଣେ ଚରଣ ଉଖାରି ॥
ଗଡ଼ ପଡ଼ନ୍ତି ମହୀ ଲୋଟି । ହୃଦକୁ ହୃଦ ପିଠାପିଠି ॥
କେ ଗଡ଼ ପଛକୁ ହୋଇ । ଛଡ଼ାଇ ଗଗନେ ଉଡ଼ଇ ॥
ପୁଣି ମିଳନ୍ତି ଆସି ଆଗେ । ଧରି ଉଡ଼ନ୍ତି ଶୂନ୍ୟ ମାର୍ଗେ ॥
ଆକାଶେ ହୋଇ ମିଶାମିଶି । ପୁଣି ଭୂମିରେ ପଡ଼େ ଆସି ॥
ମେରୁ ପର୍ବତ ପ୍ରାପ୍ତ ହୋଇ । ଶବଦ ପୂରି କମ୍ପେ ମହୀ ॥
ପାଦେ ଧରଣୀ ଟଳମଳ । ପଡ଼ନ୍ତି ଭାଙ୍ଗି ଶାଳ ଶୀଳ ॥
ଗ୍ରାମ ପାଟଣା ପୁର ଦେଶ । ଅନେକ ଜୀବଜନ୍ତୁ ନାଶ ॥
ସପ୍ତ ଦିବସ ଘୋର ରଣ । ଦିନକୁ ଦିନ ଯୁଦ୍ଧ ଟାଣ ॥
ବିଶ୍ରାମ ନ କରନ୍ତି କ୍ଷଣେ । କାଳ ବିକାଳ ପ୍ରାପ୍ତ ରଣେ ॥
ଘୋର ପ୍ରତିଜ୍ଞା ଘର୍ଦ୍ଧ ରଡ଼ି । ଯେସନେ ମେଘ ଘଡ଼ଘଡ଼ି ॥
ପ୍ରଖର ନିଶ୍ୱାସ ପବନେ । ସ୍ଥାବରେ ଉଡ଼ିଲେ ଗଗନେ ॥
ମେରୁ ସହିତେ ଟଳମଳ । ଭୟେ କମ୍ପିଲେ ଦିଗପାଳ ॥
ଦୈତ୍ୟ ହଙ୍କରେ ଦଇତାରି । ବାହୁ ଯୁଦ୍ଧରେ ସମସରି ॥
ଏମନ୍ତେ କେତେ କାଳ ଗଲା । କେହି କାହାକୁ ନ ଜିଣିଲା ॥
ଶତ ଅବଦ ପର୍ଯ୍ୟନ୍ତେ । ଯୁଦ୍ଧ କରନ୍ତି ଅନୁକ୍ଷଣେ ॥
ଦୈତ୍ୟ ନୋହିଲା ଯହୁଁ କ୍ଷୟ । ମନେ ଭାଳନ୍ତି ଦେବରାୟ ॥
ଏ ଦୈତ୍ୟ ଭୂଲେ ଯୁଦ୍ଧ କଲେ । ସଂସାର ନ ରହିବ ଭଲେ ॥
ଅନେକ ଯୁଗ ରହିଯିବ । ଅସୁର ରଣେ ନ ଯୁଝିବ ॥
ଧନ୍ୟ ବିଧାତା ବର ତୋର । କମଳା ବାକ୍ୟ ଅବଧାର ॥
ବାରଣ ବାକ୍ୟେ ଯୁଦ୍ଧେ ଆସି । ଦୈତ୍ୟକୁ ନ ପାରିଲି ନାଶି ॥
ସମର କଲେ କାର୍ଯ୍ୟ ନାହିଁ । ଦୁଃଖିତ ହେବ ଏବେ ମହୀ ॥
ରଣେ ଯୁଝିଲେ ହେବ ଲାଜ । ଏତେ ବିଚାରି ଦେବରାଜ ॥

ସ୍ତୁତି ଉପେକ୍ଷି ଶ୍ରବଗ୍ରାହ୍ମ | ଦୈତ୍ୟଙ୍କୁ ପ୍ରୀତି ପଣେ କହନ୍ତି ||
ହେ ଜଳନ୍ଧର ମହାବୀର | ତୁ ଅଟୁ ବାନ୍ଧବ ଆମ୍ଭର ||
ଆମ୍ଭେ ଅଶେଷ ଲୋକପତି | ଲକ୍ଷ୍ମୀ ଆମ୍ଭର ପ୍ରିୟବତୀ ||
ସେ ଯେ ସମୁଦ୍ର ଅବତାର | ତୁ ବୀର ସମୁଦ୍ର କୁମର ||
ତେଣୁ ତୁ ଆମ୍ଭର ଶାଳକ | ନ ବୁଝି ଯୁଝିଲୁ ଅନେକ ||
ଏଥକୁ ନାହିଁ ଆମ୍ଭ ଛଳ | ଆମ୍ଭେ ଜାଣିଲୁ ତୋର ବଳ ||
ଏଣେ ସନ୍ତୋଷ ଆମ୍ଭ ଚିତ୍ତ | ବନ୍ଧୁରେ ପଡ଼ିବ ଏମନ୍ତ ||
ଦଇବ ଯୋଗେ ହୋଏ କଳି | ଯେ ସାଧୁ ସେ ତାହା ସମ୍ଭାଳି ||
ବିବାଦେ ନାହିଁ କିଛି ଲାଭ | ପ୍ରୀତି ଯେ ପରମ ଦୁର୍ଲ୍ଲଭ ||
ଏ କଥା ତୋର ମନେ ଘେନ | ଆମ୍ଭେ ହୋଇଲୁ ପରସନ୍ନ ||
ସନ୍ତୋଷେ ଯାଚୁଅଛୁ ବର | ଯେ ଇଚ୍ଛା ମାଗ ଜଳନ୍ଧର ||
ବିଷ୍ଣୁ ଶ୍ରୀମୁଖୁ ଏହା ଶୁଣି | ଅସୁର ମନେ ମନେ ଗୁଣି ||
ବିଷ୍ଣୁର କଲ୍ଲ ହୃଦଭାଗେ | ଏ ମୋର ଶୁଭ କର୍ମ ଯୋଗେ ||
ଯେ ପ୍ରଭୁ ଜଗତ ଈଶ୍ୱର | ସନ୍ତୋଷେ ଯାଚୁଅଛି ବର ||
ଆବର ବନ୍ଧୁପଣ ଲେଖି | ଏ ଯେ ସଫଳ କର୍ମ ଦେଖି ||
ଏତେ ବିଷ୍ଣୁରି ଜଳନ୍ଧର | ବୋଲଇ ଯେବେ ଦେବୁ ବର ||
ମାଗଇ ମୋର ଆମ୍ଭ ହିତେ | ତୁ ନାଥ ସ୍ୱଗଣ ସହିତେ ||
ଲକ୍ଷ୍ମୀ ସହିତେ ଅଷ୍ଟନିଧି | ଯେ ତୋର ପ୍ରଭୁପଣ ବିଧି ||
ସକଳ ଘେନ ତୋ ସଙ୍ଗରେ | ବାସ କରିବୁ ମୋର ପୁରେ ||
ଲକ୍ଷ୍ମୀ ଯେ ମୋର ଭଗ୍ନୀ ଜ୍ୟେଷ୍ଠ | ତୁ ନାଥ ପ୍ରଭୁ ଟଣେ ଶ୍ରେଷ୍ଠ ||
ତୁମ୍ଭଙ୍କୁ ପ୍ରଭୁ ପଣେ ପାଇ | ରହିବ ଭଜନ ଶାନ୍ତ ହୋଇ ||
ଅସୁର ମୁଖୁ ପ୍ରିୟ ବାଣୀ | ଶୁଣି ସନ୍ତୋଷ ଚକ୍ରପାଣି ||
ଯାହା ମାଗିଲା ଦୈତ୍ୟ ବୀର | ହେଉ ବୋଇଲେ ଗଦାଧର ||
ପୁଣି ଦୈତ୍ୟଙ୍କୁ ପ୍ରିୟ ମତେ | କହନ୍ତି ଦେବତାଙ୍କ ହିତେ ||

ବୋଇଲେ ଶୁଣ ମହାବୀର । ଆମ୍ଭେ ରହିଲୁ ତୁମ୍ଭ ପୁର ॥
କମଳା ଥିବ ଆମ୍ଭ ତୁଲେ । ବ୍ରହ୍ମା ସମ୍ପଦେ ଦିଗପାଳେ ॥
ତୋର ବଚନ ପାଳିଥିବୁ । ଯାହା ମାଗିବୁ ତାହା ଦେବୁ ॥
ଲକ୍ଷ୍ମୀ ତୋ ପୁରେ ଥିବେ ଯେବେ । ତୋତେ ଅପୂର୍ବ କହ ତେବେ ॥
ଏବେ ତୁ ଆମ୍ଭ ବୋଲ କର । ଦେବଙ୍କ ଯଥା ଅଧିକାର ॥
ସନ୍ତୋଷେ ହଅ ତାଙ୍କ ମୂଳେ । ତୋ ଯଶ ରହୁ ରବିତଳେ ॥
ଶୁଣି ସନ୍ତୋଷ ଜଳନ୍ଧର । ଦେବଙ୍କୁ ଦେଲା ସ୍ୱର୍ଗପୁର ॥
ଧ୍ୟାନେ ଚିନ୍ତିଲେ ବ୍ରହ୍ମଋଷି । ଦେବେ ମିଳିଲେ ପାଶେ ଆସି ॥
ତାଙ୍କର ଯଥା ଅଧିକାର । ଦେଇ ପେଷିଲେ ସ୍ୱର୍ଗପୁର ॥
ପୁଣି ଚିନ୍ତିଲେ ଚକ୍ରପାଣି । ଆସି ମିଳିଲେ କମଳିନୀ ॥
ତାଙ୍କ ସଙ୍ଗତେ ଅଷ୍ଟନିଧି । ସର୍ବ ସମ୍ପଦ ସୁଖ ସିଦ୍ଧି ॥
ବିଷ୍ଣୁ ରୂପରେ ଉପଗତ । ଆନନ୍ଦ ଜଳନ୍ଧର ଚିତ୍ତ ॥
ଭଗ୍ନୀ ଭଣୋଇ ଘେନି ସଙ୍ଗେ । ନିଜ ଭୁବନେ ଗଲା ବେଗେ ॥
ସିନ୍ଧୁଙ୍କ ଦେଶେ ପରବେଶ । ବିଷ୍ଣୁ ନିମନ୍ତେ ହର୍ମ୍ୟବାସ ॥
ମଣ୍ଡିଲା ଅତି ଯତ୍ନ କରି । ବିଜୟ କଲେ ତହିଁ ହରି ॥
ସଙ୍ଗତେ ଦେବୀ କମଳିନୀ । ତ୍ରୈଲୋକ୍ୟ ମାତା ଠାକୁରାଣୀ ॥
ଅଷ୍ଟନିଧିଙ୍କୁ ଘେନି ତୁଲେ । ଅସୁର ପୁରେ ବିଜେ କଲେ ॥
ସେ ଜଳନ୍ଧର ନେତ୍ରେ ଦେଖି । ବିଷ୍ଣୁଙ୍କୁ ପାଇ ମହାସୁଖୀ ॥
ଦେବଙ୍କୁ ଦେଲା ସ୍ୱର୍ଗପୁର । ଆପେ ସେ ମର୍ତ୍ତ୍ୟେ ନୃପବର ॥
ବଳିଙ୍କ ତଳପୁର ଦେଇ । ଆଉର ଦୈତ୍ୟଗଣ ଥାଇ ॥
ଯେ ଯାହା ଅନୁରୂପେ ବାସ । ସଭିଙ୍କୁ ଦେଇ କଲା ତୋଷ ॥
ଦେବଙ୍କୁ କଲା ସର୍ବ ସୁଖୀ । ପ୍ରଜା ପାଳଇ ନେତ୍ରେ ଦେଖି ॥
ଶସ୍ୟ ସମ୍ପଦ ବସୁନ୍ଧରୀ । ବଢ଼ଇ ମନ ପୂର୍ଣ୍ଣ କରି ॥
ବୃକ୍ଷ ଫଳନ୍ତି ଫୁଟେ ଫୁଲ । ସର୍ବଦା ନଦୀ ବହେ କୂଳ ॥

ନିତ୍ୟେ ସେବନ୍ତି ଷଡ଼ରତୁ । ସଦା ଆନନ୍ଦ ଶୀତଜନ୍ତୁ ॥
ଅକାଳ ମୃତ୍ୟୁ ରୋଗ ଶୋକ । ଖଣ୍ଡିଲେ ସ୍ୱର୍ଗପୁର ଲୋକ ॥
ଏମନ୍ତେ ସିନ୍ଧୁ ରାଜବଳା । ଦ୍ୱିତୀୟ ବୈକୁଣ୍ଠ ମର୍ତ୍ତ୍ୟେ କଲା ॥
ବିଷ୍ଣୁଙ୍କୁ ନିଜ ପୁରେ ରଖି । ପ୍ରଭୁଙ୍କୁ ବନ୍ଧୁଭାବେ ଦେଖି ॥
ନିତ୍ୟ କରଇ ପୂଜା କର୍ମ । ଆତ୍ମା ନ ଚିହ୍ନି ମତି ଭ୍ରମ ॥
ଦେବେ ଯେ ସ୍ୱର୍ଗପୁରୁ ଆସି । ଯକ୍ଷ ଗନ୍ଧର୍ବଗଣ ଋଷି ॥
ଜଳନ୍ଧରକୁ ଭେଟି ନିତ୍ୟ । ତା ମନ ଜାଣି ଖଟିଆନ୍ତି ॥
ନ ପାଇ ହରି ଦରଶନ । ତେଣୁ ବିକଳ ତାଙ୍କ ମନ ॥
କରନ୍ତେ ବିଷ୍ଣୁ ପାଦେ ଧ୍ୟାନ । ଦେବେ ବଞ୍ଚନ୍ତି ଦୁଃଖେ ଦିନ ॥
ସେ ଦୁଃଖ ନିବାରଇ ଯେହୁ । ମୋ ମନ ତାଙ୍କ ପାଦେ ରହୁ ॥
ସଂସାର ଦୁଃଖ ଯିବ ନାଶ । ଭଣଇ ମହାଦେବ ଦାସ ॥
ଏ ପଦ୍ମ ପୁରାଣ ଚରିତ । ଉତ୍ତର ଖଣ୍ଡେ ଯେ ବିଦିତ ॥
ଗୀତ ଯେ କଲି ଗ୍ରନ୍ଥସାର । ସୁଜନେ ଦୋଷ କ୍ଷମା କର ॥

ଇତି ଶ୍ରୀପଦ୍ମପୁରାଣେ ଉତ୍ତର ଖଣ୍ଡେ କାର୍ତ୍ତିକ ମାହାତ୍ମ୍ୟେ
ବିଷ୍ଣୁ ଜଳନ୍ଧର ସଂଗ୍ରାମେ ନାମ ନବମୋଽଧ୍ୟାୟଃ ।

---

## ଦଶମ ଅଧ୍ୟାୟ

ସ ମାଂ ସମ୍ପୂଜ୍ୟ ବିଧିବଦ୍ଦେବାଶ୍ଚ ଅତିଭକ୍ତିତଃ
ସମ୍ପ୍ରହସ୍ୟ ତଦା ବାକ୍ୟଂ ଜଗାଦ ନୃପସତ୍ତମଃ ॥

ନାରଦ ମୁନି ଅନୁଚ୍ଚରେ । କହନ୍ତି ପୃଥୁ ରାଜା ଆଗେ ॥
ଶୁଣ ରାଜନ ଗ୍ରନ୍ଥ ସାର । ବିଷ୍ଣୁଙ୍କୁ ପାଇ ଜଳନ୍ଧର ॥
ଲକ୍ଷ୍ମୀ ସହିତେ ତାର ପୁରେ । ରହିଲେ ବାନ୍ଧବ ଭାବରେ ॥
ତେଣୁ ଅସୁର ମହାସୁଖୀ । ଜଗତ ଶିରୀ ପୁରେ ରଖି ॥
ଦେବେ ଖଟନ୍ତି ଭୃତ୍ୟ ମତେ । ଦିନ ବଞ୍ଚନ୍ତି ଦୁଃଖ ଚିତ୍ତେ ॥

ଏ ଅନ୍ତେ ଗଲା କେତେକାଳ । ହରେଣିଟି ସ୍ୱର୍ଗେ ସୁରପାଳ ॥
ସକଳ ଦେବତାଙ୍କୁ ଘେନି । ଆମ୍ଭଙ୍କୁ ସନ୍ନିଧେ ବସାଇ ॥

ବାସବ ଉବାଚ

କହନ୍ତି ଦେବ ପୁରନ୍ଦର । ହେ ମୁନି ଶୁଣ ଦୁଃଖ ମୋର ॥
ଆମ୍ଭର ପ୍ରଭୁ ନାରାୟଣ । ତାଙ୍କ ବଇତ୍ତ ଦେବଗଣ ॥
ସେ ପ୍ରଭୁ ଆମ୍ଭ ଦୁଃଖ ଦେଖି । ସ୍ୱଦେହେ ବୈକୁଣ୍ଠ ଉପେକ୍ଷି ॥
ଲକ୍ଷ୍ମୀଙ୍କି ଘେନି ଲକ୍ଷ୍ମୀପାଇଁ । ରହିଲେ ଦୈତ୍ୟପୁରେ ଯାଇ ॥
ସେ ମହାଦୈତ୍ୟ ଜଳନ୍ଧର । ଜଗତନାଥ ତାର ପୁର ।
ଲକ୍ଷ୍ମୀ ସହିତେ ରଖି ପୁରେ । ସର୍ବ ସମ୍ପଦ ଭୋଗ କରେ ॥
ଯେ ସର୍ବ ଆତ୍ମା ବାସୁଦେବ । ଆମ୍ଭଙ୍କୁ ହୋଇଲେ ଅପୂର୍ବ ॥
ତାଙ୍କ ଚରଣ ସେବା ବିନୁ । କଷ୍ଟ କାରଣ ଆମ୍ଭ ତନୁ ॥
ଧିକ ଆମ୍ଭର ଯଶ ଶିରୀ । ହରି ଭକତି ଦୂର କରି ॥
କି ପ୍ରୟୋଜନ ସ୍ୱର୍ଗ ସ୍ଥାନେ । କମ୍ପା ନ ଗଲା ମୋର ବନେ ॥
ତୁମ୍ଭେ ତ ଜାଣ ମହାମୁନି । ଯେବଣ ଜନ ଦେହ ଘେନି ॥
ବସ୍ତୁ ଭକତି ବିନୁ ବଞ୍ଚେ । କୋଟି କୁବେର ଧନ ସଞ୍ଚେ ॥
ଭୁଞ୍ଜଇ କୋଟି ଲକ୍ଷ୍ମୀ ଶିରୀ । ସେ ସ୍ୱର୍ଗ ନର୍କ ଭୋଗ କରି ॥
ଆମ୍ଭ ଅଧମ ସେହି ମତ । ଅସୁର ଘରେ ଲକ୍ଷ୍ମୀପତି ॥
ବନ୍ଦୀ ହୋଇଲେ ଆମ୍ଭ ପାଇଁ । ଆମ୍ଭର ଆଉ ସୁଖ ନାହିଁ ॥
ସେ ଜଳନ୍ଧର ସିନ୍ଧୁ ସୁତ । ଆମ୍ଭଙ୍କୁ କଲା ହୀନ କୃତ୍ୟ ॥
ପ୍ରଭୁଙ୍କୁ ନେଇ ବନ୍ଦୀକଲା । ଏ କର୍ମ କାହେଁ ନ ଥିଲା ॥
ପୂର୍ବେ ହିରଣ୍ୟ ହିରଣାକ୍ଷ୍ୟ । ଦନୁ ଦାନବ ରକ୍ଷ ଭକ୍ଷ ॥
ମଧୁକୈଟଭ ମହାବୀର । ଶୁମ୍ଭ ନିଶୁମ୍ଭ ଶଙ୍ଖାସୁର ॥
ମାଳି ସୁମାଳି ମାଲ୍ୟବନ୍ତ । ବହୁତ କେଶ ବଜ୍ରଦନ୍ତ ॥
ବଇଲୋଚନ ବଳୀ ବୀର । କାଳକ ଅନ୍ଧକ ଅସୁର ॥

ତ୍ରିପୁର ନାରକ ସହିତେ । ଏମନ୍ତ ଦୁଷ୍ଟ ଥିଲେ ହେତେ ॥
ସ୍ୱର୍ଗ ନମୂଚ ଜମ୍ଭଦୈତ୍ୟ । କେହ୍ନ ନ କଲେ ଏତେ କୃତ୍ୟ ॥
ଦେବଙ୍କୁ ଦୁଃଖ ଦେଉଥିଲେ । ବସ୍ତ୍ର ମାୟାରେ ନାଶ ଗଲେ ॥
ଏ ଦୈତ୍ୟ ନାମ ଜଳନ୍ଧର । ବଳେ ଜିଣିଲା ତିନପୁର ॥
ଯେ ପ୍ରଭୁ ଦୁଷ୍ଟ ଦର୍ପ ହରେ । ତାଙ୍କୁ ରଖିଲା ନେଇ ଘରେ ॥
ଆଜ ଆମ୍ଭଙ୍କୁ କସ ଗତି । ଏକା ଅଛନ୍ତି ଉମାପତି ॥
ତାହାଙ୍କୁ କଲେ ଆରାଧନ । ଦାନବ କରିବେ ଦଳନ ॥
ଏ କଥା ହୁଅଇ ଯେମନ୍ତ । ହେ ମୁନ ହୁଅଅ ତ୍ୱରିତ ॥
ଏମନ୍ତ କହ୍ନ ସୁନାସୀର । ନମିଲ ମୁନଙ୍କ ପୟର ॥
ଶୁଣ ରାଜନ ଚୂଡ଼ାମଣି । ବାସବ ବାକ୍ୟ ଆମ୍ଭେ ଶୁଣି ॥
ସର୍ବ ଦେବଙ୍କ ପୀଡ଼ାରେ । ଗଲୁ ଯେ ଜଳନ୍ଧର ପୁରେ ॥
ସିନ୍ଧୁ ନନ୍ଦନ ସଭାତଳେ । ପ୍ରବେଶ ହେଲୁ ଶୁଭବେଳେ ॥
ଆମ୍ଭଙ୍କୁ ଦେଖି ଦୈତ୍ୟ ରାଜା । ବିଶେଷ କଲା ପାଦ ପୂଜା ॥
ସନ୍ନିଧେ ବସାଇ ଆସନେ । ପୁଚ୍ଛଇ କୋମଳ ବଚନେ ॥
ହେ ମୁନିବର କାହିଁ ଥିଲ । ମୋ ପୁରେ କି କାର୍ଯ୍ୟେ ଅଇଲ ॥
କାହିଁ ଦେଖିଛ କିସ ରୀତ । ମୋ ଆଗେ କହ ମହାଯତି ॥
ମୁହିଁ ବୋଇଲି ଶୁଣ ରାୟେ । ଯେ ସ୍ଥାନେ ଶଙ୍କର ବିଜୟେ ॥
ନାମ ତା କପିଳାସ ଗିରି । ସକଳ ଗୁଣ ସୁଖ ଶିରୀ ॥
କି ଅବା ଦେବା ପଟାନ୍ତରେ । ଶତ ଯୋଜନ ଉଚ୍ଚ ଯାର ॥
ଏହି ପ୍ରକାରେ ପାର୍ଶ୍ୱପ୍ରାନ୍ତ । ଧବଳ ବର୍ଣ୍ଣ ଦିବ୍ୟ ଜ୍ୟୋତି ॥
ବିବିଧ ବର୍ଣ୍ଣ ତରୁବର । କଳ୍ପ ବୃକ୍ଷହିଁ ପଟାନ୍ତର ॥
ଅମଳ ପୁଷ୍ପ ନିରନ୍ତରେ । ଅମୃତ ତୁଲ୍ୟ ଫଳ ଧରେ ॥
ସୁନନ୍ଦା ନାମେ ବହେ ନଦୀ । ସ୍ନାନେ ଅଶେଷ ପାପ ଛେଦି ॥
ପଶୁ ପତଙ୍ଗ ଆଦି ପକ୍ଷୀ । ସେ ବନେ ଦୁଃଖକୁ ଉପେକ୍ଷି ॥

ସ୍ଥିତ କନ୍ଦର ଯକ୍ଷଗଣେ । ଯହିଁ ବସନ୍ତି ଅନୁକ୍ଷଣେ ॥
ସର୍ବେ ବସନ୍ତି ତୋଷମନେ । ଶିବ ଗଉରୀ ପଦ ଧ୍ୟାନେ ॥
ହରଷ ଜାତ ଅନୁକ୍ଷଣେ । ସୁଖେ ବଞ୍ଚନ୍ତି ଶିବଗଣେ ॥
ଆମ୍ଭେ ସେ ବନେ ଦିନାକେତେ । ବଞ୍ଚିଲୁ ଶଙ୍କର ସହିତେ ॥
ତହୁଁ ସ୍ୱର୍ଗକୁ ଯାଇଥିଲୁ । ଆଜ ତୋ ପୁରକୁ ଆଇଲୁ ॥
ନାରଦ ବଦନୁ ଏ ବାଣୀ । ସାଗର ସୁତ କର୍ଣ୍ଣେ ଶୁଣି ॥
ପୁଣି ପୁଚ୍ଛଇ ତୋଷମନେ । ହେ ମୁନି କହ ହରସନେ ॥
ତୁମ୍ଭଙ୍କୁ ପୁଚ୍ଛଇ ଏମନ୍ତ । ଈଶ୍ୱର ସମ୍ପଦ ଯାବତ ॥
ମୋର ସମ୍ପଦେ ସମ କଲେ । କେ ଏଥୁ ଶ୍ରେଷ୍ଠ ହେବ ଭଲେ ॥
ସେ କଥା କହ ମହାଋଷି । ଶୁଣି ବୋଇଲୁ ଆମ୍ଭେ ହସି ॥
ହେ ନୃପ ଚଉଶଲୁ ଯାହା । ସ୍ୱରୂପ କହିଲୁ ମୁଁ ତାହା ॥
ଏ ତୋର ସମ୍ପଦକୁ ସରି । ଅତୁଲ୍ୟ ଚତୁର୍ଦ୍ଦଶ ପୁରୀ ॥
ତୋର ନଗରେ ଯେତେ ଲୋକ । ଈଶ୍ୱର ସମ୍ପଦୁ ଅଧିକ ॥
ଭୋଗ କରନ୍ତି ଏକେ ଏକେ । କି ଅବା କହିବା ଅଧିକେ ॥
ଯାବତ ରତ୍ନ ଏଥେ ଅଛି । ଏକ କଥାଏ କହୁ ଲେଚ୍ଛି ॥
ସୁବର୍ଣ୍ଣ ରତ୍ନ ଯାହା ବୋଲି । ତାହା ତୋ ପୁରେ ନ ଦେଖିଲି ॥
ଯେଉଁ ସୁବର୍ଣ୍ଣ ଶିବ ପୁରେ । ସେତ ଅପୂର୍ବ ତୋର ଘରେ ॥
ତେଣୁ ଏ ଯାବତ ସମ୍ପଦ । ତିନି ଭୁବନ ରାଜପଦ ॥
ରଥ ତୁରଙ୍ଗ ଗଜବଳ । ରତ୍ନ କାଞ୍ଚନ ଜନକୁଳ ॥
ଷଡ଼ବିଧ ଭୋଗ ଆଦି କରି । ସର୍ବ କୁଶଳ ନାହିଁ ସ୍ତ୍ରୀ ॥
ଏଣୁ ଏ ନ ଦିଶଇ ଶୋଭା । କେଶ ବିହୀନେ ଯେହ୍ନେ ଗଭା ॥
ନେହ ବିହୀନେ ଅଳଙ୍କାର । ସୁବର୍ଣ୍ଣ ହୀନେ ଯେତେ ଘର ॥
ଶୁଣ ରାଜନ ସିନ୍ଧୁ ବତ୍ସ । ଏଣୁ ସମ୍ପଦ ତୋର ତୁଚ୍ଛ ॥
ଏମନ୍ତ ବାକ୍ୟ ଶୁଣି ରାଜା । ମନେ ପାଇଲା ମହାଲଜ୍ଜା ॥

ଅଳପ କ୍ରୋଧ ମନେ ଧରି । ପୁଣି ପୁଚ୍ଛଇ ଦଣ୍ଡଧାରୀ ॥
ହେ ମୁନି କହ ମୋତେ ସତ । ଈଶ୍ୱର ଘରଣୀ କେମନ୍ତ ॥
କେଉଁ ସୁନ୍ଦରୀ ନାମ କସ । ବିଶେଷି କହ ବ୍ରହ୍ମା ଶିଷ୍ୟ ॥
ମୋର ଘରଣୀ ବୃନ୍ଦାବତୀ । ଏଥି ଯେ କେଉଁ ରୂପବତୀ ॥
ଆବର ଅପସରୀ ଗଣେ । ରୂପେ ସୁନ୍ଦରୀ ଜଣେ ଜଣେ ॥
ରମ୍ଭା ମେନକା ତିଲୋତ୍ତମା । ଏହାଙ୍କୁ ନାହିଁ ଯେ ଉପମା ॥
ଉର୍ବଶୀ ଚିତ୍ରରେଖା ମୂଳେ । ଦେଖିଲେ ମୁନି ମନ ଟଳେ ॥
କନ୍ଦର୍ପ ବିଦ୍ୟାଧରୀ ଶୋଭା । ମୁଖ ବିକାଶେ ଚନ୍ଦ୍ର ପ୍ରଭା ॥
ଏମାନେ ଅଛନ୍ତି ମୋ ପୁରେ । ଦେଖିଅଛ ତ ମୁନିବରେ ॥
ଆବର ଭଗିନୀ ମୋ ରମା । ସର୍ବ ଲାବଣ୍ୟନିଧି ସୀମା ॥
କୋଟିଏ ଗୁଣେ ସୁଲକ୍ଷଣୀ । ସର୍ବ ସ୍ତ୍ରିୟଙ୍କ ଶିରୋମଣି ॥
ଜଗତ ନାଥଙ୍କ ଘରଣୀ । ସେହି ମୋ ପୁରେ ଅଛି ପୁଣି ॥
ନିତ୍ୟ ତାଙ୍କର ଦରଶନେ । ଆଇନ୍ତି ଦେବ ସ୍ତ୍ରିୟମାନେ ॥
ଏହାଙ୍କୁ ଦେଖିଅଛ ତୋଳେ । ତୁମ୍ଭେ କହିଲ ଶିବଆଳେ ॥
ଏଥି ସୁନ୍ଦରୀ ସ୍ତ୍ରିୟ ଅଛି । ଏ ସର୍ବ ତା ତୁଲେ ନ ଗଛି ॥
ଏ ବଡ଼ ଲାଗିଲା ସନ୍ଦେହ । ହେ ମୁନି ଏହି କଥା କହ ॥
ଈଶ୍ୱର ପୁରେ ଯେତେ ନାରୀ । ତା ରୂପ ନାମ ଆଦି କରି ॥
ରାଜା ବଚନେ ମୁନିବର । ବୋଲନ୍ତି ଶୁଣ ଜଳନ୍ଧର ॥
ଯେତେ କହିଲ ଅନୁସରି । ସ୍ତ୍ରିୟମାନଙ୍କ ନାମ ଧରି ॥
ଏହାଙ୍କ ରୂପ ଏକ ଠୁଳେ । ତୁଲ୍ୟ ଯା ନୁହେଁ ପାଦତଳେ ॥
ଅଙ୍ଗୁଳି ଗୋଟିକକୁ ସରି । ଲକ୍ଷ୍ୟ ନୋହିବେ ଏତେ ସ୍ତ୍ରୀୟ ॥
ଯେ ଦେବୀ ଈଶ୍ୱର ଘରଣୀ । ସେ ହିମାଳୟର ଦୁଲଣୀ ॥
ପର୍ବତୁ ଉତପତ୍ତି ଯେଣୁ । ପାର୍ବତୀ ନାମ ତାର ତେଣୁ ॥
ତାହାର ଦେଖି ତାର କାନ୍ତି । କନକ ମନେ କଲା ଭ୍ରାନ୍ତି ॥

ଅଗ୍ନିରେ ପଶିଣ ଝାସିଲ । ତା ତୁଲେ ରୂପ ନ ଲଭିଲ ॥
କସ କହିବା ତାର ଗୁଣ । ହେ ରଜା ଏକ ମନେ ଶୁଣ ॥
ଈଶ୍ବର କଲ୍ପେ ତପ କଲେ । ତେଣୁ ସେ କନ୍ୟାକୁ ପାଇଲେ ॥
ବିଧାତା କନ୍ୟା ରୂପ ଦେଖି । ବସ୍ତ୍ରର କଲ୍ପ ଅସ୍ତ୍ର ଆଖି ॥
ଏହି ସଦୃଶେ ଏକ ନାରୀ । ବିଷ୍ଣୁଙ୍କୁ ଦେବ ବିଭା କରି ॥
ଏମନ୍ତେ ଚିନ୍ତି ଭାବ ମନେ । ରଚିଲ ପାର୍ବତୀ ବିଧାନେ ॥
ଶତ ବରଷ ଏକଚିତ୍ତେ । ନିର୍ମାଣ କଲା ବହୁମତେ ॥
ପାର୍ବତୀ ରୂପକୁ ଦେଖିଲ । କେତେବେହେଁ ସମ ନ ରଚିଲ ॥
ତେଣୁ ବିଧାତା ଲଜ୍ଜା ପାଇ । ସମୁଦ୍ରେ ପକାଇଲ ନେଇ ॥
ସେ କନ୍ୟା ଲକ୍ଷ୍ମୀରୂପେ ଜାତ । ବେନେ ତା ଲଭିଲେ ଅଚ୍ୟୁତ ॥
ସେ ଏବେ ତୋର ଘରେ ଅଛି । ତାଙ୍କୁ କି ପାର୍ବତୀଙ୍କି ଟଳି ॥
ଆବର ଯେତେକ ସୁନ୍ଦରୀ । ସେ କାହିଁ ପାର୍ବତୀଙ୍କି ସରି ॥
ମାଣିକ ତୁଲେ ଜଉବଦ । ଅମୃତ ତୁଲେ ଗୁଡ ସ୍ୱାଦ ॥
କନକ ସଙ୍ଗେ ପଠଫୁଲ । ଲକ୍ଷ୍ୟ କି କଲେ ହେବ ତୁଲ ॥
କାମଧେନୁର ସଙ୍ଗେ ଗାଈ । ଯେସନେ ଅନ୍ତର ଅବା ହୋଇ ॥
ପାର୍ବତୀ ସଙ୍ଗେ ଅନ୍ୟ ସ୍ତ୍ରୀଏ । ଦେଖିଲେ ଏସନ୍ତ ଭାବେ ସର ॥
ଅଶେଷ ଲୋକପିତା ବ୍ରହ୍ମା । ତା ରୂପ ଦେଖି ହୁଏ ମୋହ୍ନ ॥
ଆମ୍ଭେ ନିଷ୍କାମ ତପୀଜନ । ପାର୍ବତୀ ରୂପେ ହେଉ ଛନ୍ନ ॥
ବିଷ୍ଣୁ ଯେ ତାର ରୂପ ଚିହ୍ନି । ଈଶ୍ବର ଅର୍ଦ୍ଧ ଅଙ୍ଗ ଭିନ୍ନି ॥
ଲଭି ନ ପାରି ତାର ଲୀଳା । ଚିନ୍ତାରେ ତନୁ ହେଲ କଳା ॥
ଚନ୍ଦ୍ର ଆନନ ଦେଖି ଭଳି । ରୁଦ୍ର ମୁକୁଟ ତଳେ ରଳି ॥
ଲୁଚି ବସିଲ ମନ ଦୃଢ଼େ । ଭାବେ ଅଭାବେ ଛୁଟେ ବଢ଼େ ॥
ତା ରୂପ ଦେଖି ଯୋଗୀଜନେ । କନ୍ଦର୍ପ ଭୟେ ଗଲେ ବନେ ॥
ବେନି ନୟନ ବୁଜି ବସି । ଆତ୍ମାରେ ମନକୁ ନିବେଶି ॥

ଶିବ ଯେ ତାର ରୂପ ଦେଖି । ଯତନେ କଲେ ତିନ ଆଖି ॥
ପାଶରୁ ନ ଛାଡ଼ନ୍ତି କ୍ଷଣେ । ମନ ନିବେଶି ପ୍ରିୟା ଗୁଣେ ॥
ସେ ପୁଣି ଯେମନ୍ତ ଯୁବତୀ । ଶିବ ତାହାଙ୍କ ନୋହେ ପତି ।
ସ୍ୱଭାବେ ବୃଦ୍ଧ ଯୋଗୀ ବେଶ । ମସ୍ତକେ ଜଟା ଅଙ୍ଗେ ଭସ୍ମ ॥
ଏମନ୍ତ ବେଶ ଶିବ ଧରି । ବିଳାସ କଲେ ଦ୍ରବ୍ୟ ନାସ୍ତି ॥
ଏମନ୍ତ ଅବିବେକ ବନ୍ତ । କାହା ସଞ୍ଚିଲ ନେଇ କାହିଁ ॥
ଏତେଡ଼ ସମ୍ପଦ ଦେଇ ତୋରେ । ଯୁବତୀ ରତ୍ନ ନାହିଁ ଘରେ ॥
ଏଣୁ ନ ଶୋଭେ ତୋର ପୁର । ଏମନ୍ତ କହି ମୁନିବର ॥
ତକ୍ଷଣେ ବ୍ରହ୍ମଲୋକେ ଯାଇ । ଦୈତ୍ୟକୁ ଉଚାଟ କରାଇ ॥
ନାରଦ ବାକ୍ୟ ଶୁଣି କର୍ଣ୍ଣେ । ସେ ଜଳନ୍ଧର ପାଞ୍ଚ ମନେ ॥
ଗଉରୀ ରୂପ ଅନୁସରି । କନ୍ଦର୍ପ ବାଣେ ତନୁ ଘାରି ॥
ସକଳ ଚିନ୍ତା ଏଡ଼ି ଦୂରେ । ତନୁ ତାପିତ କାମ ଜ୍ୱରେ ॥
ଏକାନ୍ତ ସ୍ଥାନେ ଜଳନ୍ଧର । ଡାକିଲ ସିଂହିକା କୁମର ॥
ତାକୁ ବୋଇଲ ଯାଅ ବେଗେ । ହର ଉଦ୍ୟାନ ବନ ଭାଗେ ॥
ସେ ବନେ କଇଳାସ ଗିରି । ଭେଟିବୁ ଯାଇଁ ତ୍ରିପୁରାରି ॥
ତାଙ୍କୁ କହିବୁ ମୋ ସନ୍ଦେଶ । ବୋଲିବୁ ରାଜା ସିନ୍ଧୁ ଶିଷ୍ୟ ॥
ନାମ ତାହାର ଜଳନ୍ଧର । ସର୍ବ ଭୁବନେ ଏକା ବୀର ॥
ବିଷ୍ଣୁ ସହିତେ ସର୍ବ ଦେବା । ତାହାକୁ କରୁଥାନ୍ତି ସେବା ॥
ସେ ଯାହା ମାଗଇ ଯାହାକୁ । କେ ଅଛି ନ ଦେଇ ତାହାକୁ ॥
ତୁମ୍ଭେ ଯେ ବନ ଘୋରେ ଥାଅ । ରାଜାଙ୍କୁ କିଛି ହିଁ ନ ଦିଅ ॥
ଏ କଥା ନୋହେ ଭଲ ପଣ । ଏବେ ନୃପତି ଆଜ୍ଞା ଶୁଣ ॥
ତୁମ୍ଭ ଘରଣୀ ହୈମବତୀ । ଯୁବତୀରତ୍ନ ରୂପ କାନ୍ତି ॥
ରାଜା ଯୋଗ୍ୟରେ ତାଙ୍କୁ ଦିଅ । ନିଶ୍ଚିନ୍ତେ ତପ କରୁଥାଅ ॥
ସ୍ୱଭାବେ ଯତିଙ୍କୁ ଯୁବତୀ । ସଙ୍ଗରେ ଥିଲେହେଁ ବିପତ୍ତି ।

ଏମନ୍ତ କହନ୍ତ ହର ଆଗେ । ଶିବାକୁ ଘେନ ଆସ ବେଗେ ॥
ଏମନ୍ତେ ନୃପତି ଆଦେଶେ । ରାହୁ ଚଳିଲା କପିଳାସେ ॥
ମିଳିଲା ଯାଇଁ ଶିବପୁରେ । ନନ୍ଦୀ ଯେ ଥିଲେ ସିଂହଦ୍ୱାରେ ॥
ତାଙ୍କୁ କହିଲା ଦୂତ ବେଗେ । ନନ୍ଦୀ ଜଣାଏ ରୁଦ୍ର ଆଗେ ॥
ରାହୁକୁ ଘେନିଗଲା ଆସି । ବିଜୟ କରିଛନ୍ତି କାଶୀ ॥
ସୁବର୍ଣ୍ଣ ମଣ୍ଡପ ଉପରେ । ରତ୍ନ ବେଦିକା ବ୍ୟାଘ୍ରାମ୍ବରେ ॥
ପାଟର ନେତ ତୁଳି ପାଡ଼ି । ସେବତୀ କୁସୁମ ପାଖୁଡ଼ି ॥
କର୍ପୂର ଗୁଣ୍ଡି ତଳେ ବାଞ୍ଛି । ଚମ୍ପାର ମାଳ ପାଖେ ସିଞ୍ଚି ॥
ଉପରେ ଚନ୍ଦ୍ରାତପ ଟାଣି । ସେ ପୁରେ ବିଜେ ଶୂଳପାଣି ॥
ଯୋଗ ଆସନେ ସଦାନନ୍ଦ । ଘୂର୍ଣ୍ଣିତ ନେତ୍ର ଅରବିନ୍ଦ ॥
ଶୁଦ୍ଧ ସ୍ଫଟିକ ତନୁକାନ୍ତି । ବିବିଧ ମଣି ବିରାଜନ୍ତି ॥
ଜଟା ମୁକୁଟ ଶିରେ ଶୋଭା । ଲଲାଟେ ଅର୍ଦ୍ଧ ଇନ୍ଦୁପ୍ରଭା ॥
କର୍ଣ୍ଣେ କୁଣ୍ଡଳ ବସୁମନ୍ତ । ପର୍ଶୁ ପାରୁଶ ପଶୁପତି ॥
ପାରୁଶେ ପାରିଷଦଗଣ । ଖଟି ଅଛନ୍ତି ଜଣେ ଜଣ ॥
କୋଳେ ପାର୍ବତୀ ଛନ୍ତି ବସି । କ୍ଷୀର ସମୁଦ୍ରେ ଯେହ୍ନେ ଶଶୀ ॥
ଏମନ୍ତ ଶିବ ଅବକାଶେ । ଅଛନ୍ତି ଶିବଗଣ ପାଶେ ॥
ରାହୁ ଦର୍ଶନ କଲା ଯାଇ । ମଣ୍ଡପ ତଳେ ଉଭା ହୋଇ ॥
ସମ୍ମୁଖେ ଯୋଡ଼ି ବେନିକର । ବୋଲଇ ଶୁଣ ଦେବ ହର ॥
ମୁଁ ଜଳନ୍ଧର ରାଜା ଦୂତ । ତୁମ୍ଭ ଛାମୁରେ ଉପଗତ ॥
ଯେଉଁ ନିମନ୍ତେ ଅଛି ଆସି । ସେ କଥା ଶୁଣ ଦେବ କାଶୀ ॥
ସେ ରାଜା ନାମ ଜଳନ୍ଧର । ସାଗରସୁତ ମହାବୀର ॥
ବିଧାତା ବରେ ମହାବଳୀ । ଯୁଦ୍ଧେ ଅଇଶ୍ୱକୁଳ ଦଳି ॥
ବିଷ୍ଣୁ ସହିତେ ଏବେ ଯେତେ । ରଖିଲା ଆପଣା ଆୟତ୍ତେ ॥
ସବୁ ସମ୍ପଦ ଠୁଳ କଲା । ସୁବର୍ଣ୍ଣ ରତ୍ନ ନ ପାଇଲା ॥

ତେଣୁ ନୃପତି ମନେ ଚିନ୍ତା । ନ ଯୋଗେ ପାଇଲ୍ଲ ବାରତା ॥
ତୁମ୍ଭର ପ୍ରିୟବସ୍ତୁ ଯେତୁ । ସୁବସ୍ତୁ କୃଳେ ରହି ନସ୍ତୁ ॥
ଗନ୍ଧର୍ବ ଦେମବନ୍ତ ଝିଅ । ଜଳନ୍ଧରଙ୍କୁ ତାକୁ ଦିଅ ॥
ତୁମ୍ଭେ ସ୍ୱଭାବେ ତପସ୍ୱୀ । ତୁମ୍ଭଙ୍କୁ ଅଭୂଷଣ ନାସ୍ତି ॥
ସଂସାରେ ଯେତେ ଦ୍ରବ୍ୟ ସାର । ରାଜାଙ୍କୁ ଦିଅ ଉପହାର ॥
ତୁମ୍ଭ ପୁବସ୍ତୁ ଗୋଟି ଦିଅ । ନସ୍ତିଲେ ସବୁ ଶୁନ୍ୟ ଥାଅ ॥
ଏମନ୍ତେ ରାହୁ ବାକ୍ୟ ଶୁଣି । ଈଶ୍ୱର ସ୍ତମ୍ଭୀଭୂତ ପୁଣି ॥
କୋପେ ନ ଦିଅନ୍ତି ଉତ୍ତର । ପ୍ରକଟେ ହେଲ ଅବତାର ॥
ରୁଦ୍ର ଲଲାଟ ଅବତର । ଘୋର ନୃସିଂହ ରୂପ ଧରି ॥
ଶୁକଳ ବର୍ଣ୍ଣ ତା'ର ତନୁ । ଜ୍ୟୋତି ତେଜରେ କୋଟି ଭାନୁ ॥
ଚଞ୍ଚଳ ଜିହ୍ୱା ବିଦ୍ୟୁତକାନ୍ତି । ଅସିତ ନଖ ଦନ୍ତପନ୍ତି ॥
ଉତ୍କଟ ଲୋମ ଘର୍ଘ ରଡ଼ି । ପିଙ୍ଗଳ କେଶ ଊର୍ଦ୍ଧ୍ୱେ ବଢ଼ି ॥
ନିଃଶ୍ୱାସ ବହେ ଖରତର । ତଣ୍ଡ ଆକାରେ ବୁଲେ କର ॥
ଜ୍ୱଳନ୍ତା ଅଗ୍ନି ପ୍ରାୟେ ଆଖି । ଅସୁର ଭୟ କଲା ଦେଖି ॥
ଶରଣ ଶିବ ପାଦଗତେ । ବୋଲଇ ରକ୍ଷାକର ମୋତେ ॥
ମୁଁ ଦୂତ ବିଶେଷ ବ୍ରାହ୍ମଣ । ମୋତେ ମାରିବେ କି କାରଣ ॥
ତୁମ୍ଭେ ଯେ ପରମ ଈଶ୍ୱର । ସର୍ବ ମଙ୍ଗଳ ଶୁଭଙ୍କର ॥
ତୁମ୍ଭ ଦର୍ଶନେ ପାପୀ ଜନେ । ନ ଯାନ୍ତି ଯମ ଦରଶନେ ॥
ଖଣ୍ଡନ୍ତି ଅଶେଷ ବିପତ୍ତି । ଭୁଞ୍ଜନ୍ତି କୁବେର ସମ୍ପତ୍ତି ॥
ଏମନ୍ତ ମହିମା ତୁମ୍ଭର । ହେ ପ୍ରଭୁ ମୋତେ ରକ୍ଷାକର ॥
ଦର୍ଶନ ଫଳ ଆଜ୍ଞା ହେଉ । ମୋର ଅପରାଧ କ୍ଷମି ଯାଉ ॥
ଏମନ୍ତେ ରାହୁ ମୁଖୁ ଶୁଣି । ଶୁଣି ସନ୍ତୋଷ ଉମାପତି ॥
ରାହୁକୁ ରଖିଲେ ଗୋସାଇଁ । ଅଭୟ ହସ୍ତ ଶିରେ ଦେଇ ॥
ତା ଦେଖି କୁପିତ ପୁରୁଷ । ବୋଲଇ ଖାଇବି ମୁଁ କିସ ॥

ହର ବୋଇଲେ ଭକ୍ତ ତୋତେ । ଏ ବୃତ୍ତ ଆଶ୍ରେ କଲ ମୋତେ ॥
ଶିବ ବଚନେ ଯୋଧାଙ୍କୁର । ଭକ୍ଷିଲ ଆପଣା ଶରୀର ॥
ଚରଣୁ ହୃଦ ଯାଏ ଗିଳି । ଦେଖି ପ୍ରସନ୍ନ ହେଲେ ଶୂଳୀ ॥
ବୋଇଲେ ଏଇ ଦ୍ୱାର ରଖ । ନାମ ତୋ ହେଉ କୀର୍ତ୍ତିମୁଖ ॥
ମୋର ନିବାସ ଆଗେ ଥାଅ । ପ୍ରଥମେ ପୂଜାବିଧି ପାଅ ॥
ଏମନ୍ତେ ଦେଇ ତାକୁ ବର । ରାହୁକୁ ଆଜ୍ଞା ଦେଲେ ହର ॥
ବଦନ ପଳାଏ ଭୁବନୁ । ଶୁଣି କମ୍ପଇ ତାର ତନୁ ॥
ବସିଲା ଲୌହମୟ ରଥେ । ପଳାଇଗଲା ପଥେ ପଥେ ॥
ଶିବ ରହିଲେ ନିଜ ବାସ । ନମଇଁ ମହାଦେବ ଦାସ ॥

ଇତି ଶ୍ରୀପଦ୍ମପୁରାଣେ ଉତ୍ତର ଖଣ୍ଡେ କାର୍ତ୍ତିକ ମାହାତ୍ମ୍ୟେ
ରାହୁ ପ୍ରବେଶେ କୀର୍ତ୍ତିମୁଖ ମହିମା କଥନେ
ନାମ ଦଶମୋଽଧ୍ୟାୟଃ ।

---

## ଏକାଦଶ ଅଧ୍ୟାୟ

ତତସ୍ତୁ ରାହୁଃ ପୁନରେବ ଜାତଃ
ସ୍ୱାମ୍ୟାନମସ୍ମି ନ୍ନିତମନ୍ୟମାନଃ
ସମେତ୍ୟ ସର୍ବଂ କଥୟାଂ ବଭୂବ ।
ଜଳନ୍ଧରାୟ ଶଙ୍କରଚେଷ୍ଟିତଂ ତତ୍
ଜଳନ୍ଧରସ୍ତୁ ତଚ୍ଛ୍ରୁତ୍ୱା କୋପାକୁଳିତ ମାନସଃ ।
ନିର୍ଜଗାମାଶୁ ଦୈତ୍ୟାନାଂ କୋଟିଭି ପରିବାରିତଃ ।

ନାରଦ ଉବାଚ

ମୁନି କହନ୍ତି ଶୁଣ ରାୟେ । ରାହୁ ପଳାଇ ମହାଭୟେ ॥
ମିଳିଲା ଜଳନ୍ଧର ଆଗେ । ମନ ତରସ ମାନଭଙ୍ଗେ ॥
କହିଲା ଯାବତ ବୃତ୍ତାନ୍ତ । ଶୁଣି କୋପିଲା ବୃନ୍ଦାକାନ୍ତ ॥

ମନ ଆକୁଳେ ମହାକୋପେ । ଦୈତ୍ୟଙ୍କୁ ଗଇଲେ ସମୀପେ ॥
ଶମ୍ଭୁ ନିଶମ୍ଭୁ ମୂଳେ ବଳ । ତୁରିତେ ସାଜିଲେ ସକଳ ॥
ରଥ ତୁରଙ୍ଗ ଗଜ ଖର । ପଦାତି ବଳ ବଳସ୍ୱାର ॥
ଶୁମ୍ଭ ମୁନ୍ଦଙ୍କ ଆଗ କରି । ଯୁଦ୍ଧ ଉଦ୍ୟମେ ଦଣ୍ଡଧାରି ॥
ଆରୋହି ରତ୍ନମୟ ରଥେ । ଧନୁ ନାରାଚ ଘେନି ହସ୍ତେ ॥
ଈଶାନ ମାର୍ଗେ ଅନୁସରି । ଥାଟ ଚଳିଲେ ଦିଗ ପୂରି ॥
ବନ ପର୍ବତ ମାଡ଼ି ଯାନ୍ତି । ଆକାଶେ ଅଶ୍ୱ ପନ୍ତି ପନ୍ତି ॥
ଧରଣୀ ପୂରି ଗଜ ଯୂଥେ । ମଣି କାଞ୍ଚନମୟ ରଥେ ॥
ଷିତି ଆକାଶ ପୂରିଗଲେ । ଯେସନେ ଜଳଧର ବୁଲେ ॥
ଆଦ୍ୟ ମିଥୁନ ମାସେ ଉଠି । ଧରଣୀ ଧର ଶୃଙ୍ଗେ ଘୋଟି ॥
ତେସନେ ନିଶାଚର ବଳ । ମେଘ ଗର୍ଜନ ମୁଖ ରୋଳ ॥
ନିଶାଣ ବାଣ ଝଡ଼ବଡ଼ି । ଯେହ୍ନେ ଶବଦ ଘଡ଼ଘଡ଼ି ॥
ବିବିଧ ଅସ୍ତ୍ର ଚର୍ମ କାତି । ବିଜୁଳି ପ୍ରାୟ ଝଟକନ୍ତି ॥
ପବନ ଗତି ଥାଟ ଯିବା । ସେ ଜଳନ୍ଧର କି ମଘବା ॥
ଚଳଇ ନିଜ ଦଣ୍ଡ ଘେନି । ପ୍ରଳୟ କରିବ ମେଦିନୀ ॥
ତେମନ୍ତ ଦଶେ ଦୈତ୍ୟବଳ । ପ୍ରଚଣ୍ଡେ ଚଳେ ମହାସ୍ଥଳ ॥
ପ୍ରଥମ ଦିନ ଥାଟ ନେଇ । ସୁବର୍ଣ୍ଣରେଖା ତୀରେ ଯାଇ ॥
ସେ ଦିନ ପାରି ହୋଇ ବେଗେ । ରହିଲେ ହେମଗିରି ଲଗେ ॥
ଏଥି ଅନ୍ତରେ ଶୁଣ ରାଜେ । ସ୍ୱର୍ଗେ ଯେ ଥିଲେ ଦେବତା ଏ ॥
ଦୈତ୍ୟଙ୍କୁ ଦେଖି ଭୟ ମନେ । ଗଲେ ଯେ କପିଳାସ ସ୍ଥାନେ ॥
ରୁଦ୍ର ଚରଣ ତଳେ ପଡ଼ି । ଦେବେ କହିଲେ କରଯୋଡ଼ି ॥
ହେ ପ୍ରଭୁ ଅମ୍ବିକା ରମଣ । ଆମ୍ଭ ଗୁହାରି କର୍ଣ୍ଣେ ଶୁଣ ॥
ଅସୁର ଜଳନ୍ଧର ନାମ । ଅମର ଲୋକ ପରେ ଯମ ॥
ବିଷ୍ଣୁ ସହିତ ରଣେ ଜିଣି । ସର୍ବ ସମ୍ପଦ ବଳେ ଆଣି ॥

ରଖିଲା ନିଜ ପୁରେ ନେଇ । ତେବେହେଁ ଶାନ୍ତ ନ ହୋଇ ॥
ଶମ୍ଭୁ ସ୍ଥାନକୁ ପୁଣି ଦୂତ । ପେଷି ଯେ ଥିଲା ସିନ୍ଧୁସୁତ ॥
ଆସି ଯେ ଥିଲା ଇନ୍ଦ୍ରବାଧ । ଯାହା କହିଲା ମନ୍ଦ ବୁଦ୍ଧି ॥
କେ ତାହା ବସାଇବ ମୁଣ୍ଡେ । ସେ ପୁଣି ଗଲା ବନା ଦଣ୍ଡେ ॥
କହିଲା ଜଳନ୍ଧର ଆଗେ । ଶମ୍ଭୁ ମହିମା ଯେତେ ବାଗେ ॥
ଶୁଣି ଅସୁର କ୍ରୋଧ ହୃଦେ । ଦଣ୍ଡ ସାଜିଲା ଶମ୍ଭୁ ବାଦେ ॥
ଅସୁର ବଳ ଘେନ ଆସି । ପଥେ ରହିଲେ ଆଜ ନିଶି ॥
କାଲି କରିବ ଘୋର ରଣ । କହିଲୁଁ ସାବଧାନେ ଶୁଣ ॥
ଦେବଙ୍କ ଠାରୁଁ ଏ ବଚନ । ଶୁଣି ବିସ୍ମୟେ ତ୍ରିଲୋଚନ ॥
ବିଷ୍ଣୁଙ୍କୁ ଚିନ୍ତା କରି ମନେ । ଶିବ ବସିଲେ ଯୋଗଧ୍ୟାନେ ॥
ଯେ ପ୍ରଭୁ ଯୋଗାଦ୍ୟ ପୁରୁଷ । ଆସି ପ୍ରବେଶ ହର ପାଶ ॥
ବିଷ୍ଣୁ ଦର୍ଶନ ପାଇ ଦେବେ । ରୁଦ୍ର ସହିତ ଉଠି ସର୍ବେ ॥
ନମିଲେ ଗୋବିନ୍ଦ ଚରଣ । ମଧ୍ୟେ ବିଜୟ ନାରାୟଣ ॥
ଶିବ ଜାଣନ୍ତି ଆଗ କରି । ବୋଲେ ଦେବ ଶୁଣ ଦଇତ୍ୟାରି ॥
ତୁମ୍ଭେ ପ୍ରାଣୀଙ୍କ ପଞ୍ଚଭୂତ । ମହିମା କଲୁ ବିପରୀତ ॥
ଖଳନାଶନ ନାନା ବହି । ଅସୁର ପୁରେ ଅଛ ରହି ॥
ନିଜ ସେବକେ ଦେଇ ଦୁଃଖ । ଏଥି ମଣୁଛ କେଉଁ ସୁଖ ॥
ଦେବକଣ୍ଟକ ଜଳନ୍ଧର । ତାହାକୁ କିମ୍ପାଇ ନ ମାର ॥
ଏବେ ଅସୁର ଦୁଷ୍ଟମତି । ଆମ୍ଭଙ୍କୁ ମାରଇ ପାର୍ବତି ॥
ନ ଦେଲୁ ବୋଲି କଲା କୋପ । ଯୁଝି ଆସୁଛି କଉଣପ ॥
ଏ କଥା ବିପରୀତ ବାଣୀ । ହସିଣ କହ ଚକ୍ରପାଣି ॥
ରୁଦ୍ର ବଚନେ ଚକ୍ରଧର । ବୋଲନ୍ତି ଶୁଣ ଦେବ ହର ॥
ସେ ଜଳନ୍ଧର ଶମ୍ଭୁ ଅଂଶେ । ଜାତ ହୋଇଲା ସିନ୍ଧୁ ଦେଶେ ॥
ଯେଣୁ ସେ ଲକ୍ଷ୍ମୀର ସାନୁଜ । ଏ ଦୁଇ ଉପ୍ରୋଧେ ଦନୁଜ ॥

ଆମ୍ଭରେ ନୁହଇ ବିନାଶ । ତୁମ୍ଭଙ୍କୁ ଅଛି ତେତେଶ ପଣ ॥
ଦୁଷ୍ଟ ନିବାର ସନ୍ତୁରଷ । ହସି କହନ୍ତି ପଦ୍ମ ମୁଖ ॥
ବିଷ୍ଣୁ ବଚନେ ବିଶ୍ୱନାଥ । ଶିରେ ନଟବଣି ଦେବନହସ୍ତ ॥
ବୋଲନ୍ତି ଶୁଣ ଗଦାଧର । ଦୈତ୍ୟ ନାଶନେ ଏକ ଶର ॥
ସବୁ ଦେବଙ୍କ ତେଜ ଭର । ତମାନେ ଆୟୁଧ ଯଅ କର ॥
ସେ ଶରେ ମାରିବ ଅସୁର । ଦେବଙ୍କ ଶନ୍ ଜଳନ୍ଧର ॥
ଈଶ୍ୱର ବଚନ ପ୍ରମାଣେ । ସକଳ ଦେବେ ତତକ୍ଷଣେ ॥
ଯେ ଯାହା ଅଙ୍ଗ ତେଜ କାଢ଼ି । ରଖିଲେ ଏକଠାରେ ବାଢ଼ି ॥
ବିଷ୍ଣୁ ଆୟୁଧ କଲେ ତାହା । ସୁଦରଶନ ବୋଲି ଯାହା ॥
ସେ ଚକ୍ର ତେଜ ଅନର୍ଗଳା । ଜାଜ୍ୱଲ୍ୟ ଯାର ଜ୍ୟୋତିମାଳା ॥
ଆଦିତ୍ୟ ତେଜ ପ୍ରାପ୍ତ ହୋଇ । ତେତିଶ କୋଟି ଗୁଣେ ଉଇଁ ॥
ସେ ଚକ୍ର ଘେନି ନାରାୟଣ । ରୁଦ୍ରଙ୍କୁ କଲେ ସମର୍ପଣ ॥
ଦୈତ୍ୟ ଜାଣିବ ବୋଲି ଡରେ । ଗୁପତେ ଗଲେ ଦେଖା ପୁରେ ॥
ଦାନବ ପୁରେ ବିଜେ ହରି । ନ ଜାଣେ ଲକ୍ଷ୍ମୀ ଆଦି କରି ॥
ଏଥି ଅନ୍ତରେ ନିଶି ଶେଷେ । ଅସୁର ଜ୍ୟୋତି ପରକାଶେ ॥
ପୂର୍ବ ଦିଗରେ ଗ୍ରହପତି । ଉଦୟ ଅସ୍ତ ଗଲ ରାତି ॥
ଦୈତ୍ୟେ ଯେ ଥିଲେ ହେମଗିରି । ପ୍ରଭାତେ ଥାଟ ସଜ କରି ॥
ଧାଇଁଲେ ହରପୁର ମାର୍ଗେ । ଦେବେ ଧାସନ୍ତି ବୃନ୍ଦି ସ୍ୱର୍ଗେ ॥
ଅସୁର ଥାଟ ଘେନ ଯାଇ । ଶରଣୀ ନଦୀ ଖରେ ରହି ॥
ବାଜଇ ଢମକ ନିଶାଣ । ଶୁଣି ଧାଇଁଲେ ରୁଦ୍ରଗଣ ॥
ସହସ୍ତେ ଥିଲେ ସଜ ହୋଇ । ଯେତ୍ରୁ ବାରତା ଥିଲେ ପାଇ ॥
ବେଗରେ ଧାଇଁଲେ ଶସ୍ତ୍ର ଘେନି । କାମ କାହାଳ ଶିଙ୍ଗା ଧ୍ୱନି ॥
ବଜାଇ ଭଲେ ମହାରୋଳ । ଢାକ ଡମ୍ବରୁ କୁତୂହଳ ॥
ରୁଦ୍ର ଆଗରେ ଥାଟ ଘେନି । କାର୍ତ୍ତିକ ବିନାୟକ ବେନି ॥

ନନ୍ଦୀ ଭୃଙ୍ଗୀ ମହାକାଳ । ଖ୍ୟାମଙ୍କ ବୀରଭଦ୍ର ମେଳ ॥
ଏହାଙ୍କ ଭୁଲେ ରୁଦ୍ରଗଣ । ଚଉଦ କୋଟି ପରମାଣ ॥
ଜୟନ୍ତ ଅଜୟନ୍ତ ବେନ । ପିଶାଚ ବଳ ଖର୍ବ ତନ ॥
ଭୂତ ବେତାଳ ବୀରଚଣ୍ଡ । କୁଷ୍ମାଣ୍ଡ କରେ ଲୌହଦଣ୍ଡ ॥
ଶୂଳ ଶକତି ଚକ୍ର ଭାଲ । ଘେନ ଧାଇଁଲେ ପଲପଲ ॥
ଯୋଗୀ ସନ୍ନ୍ୟାସୀ ଦଣ୍ଡଧାରୀ । ସିଦ୍ଧ ସାଧକ ଦିଗମ୍ବରୀ ॥
ସମାଧି ଆସନ ଉପେକ୍ଷି । ବେଗେ ଧାଇଁଲେ ଯୁଦ୍ଧ ଦେଖି ॥
ପର୍ବତୁ ଓହ୍ଲାଇ ତୁରିତେ । ମିଳିଲେ ଦୈତ୍ୟଙ୍କ ଅଗ୍ରତେ ॥
ଅସୁରେ ରୁଦ୍ରବଳ ଦେଖି । ବଢ଼ିଲେ ଉତ୍କ୍ରୋଧ ଉପେକ୍ଷି ॥
ଶୁମ୍ଭ ନିଶୁମ୍ଭ ବେନି ବୀର । ଅସୁର ଥାଟେ ଆଗୁସାର ॥
ଈଶ୍ବର ଥାଟେ ସେନାପତି । କାର୍ତ୍ତିକେଶ୍ବର ମହାମତି ॥
ତାହାଙ୍କ ପଛେ ରୁଦ୍ରବଳ । ଅସୁର ଥାଟେ କଲେ ଗୋଳ ॥
ଚକ୍ର ନାରାଚ ଶୂଳ ପେଷି । ଉଭୟ ଥାଟ ମିଶାମିଶି ॥
ବେନି ସାଗର ଲେଉଟ ପ୍ରାୟ । ସମର ଗତ ଅପ୍ରମେୟ ॥
ବାଜଇ ନାନା ବାଦ୍ୟ ଧ୍ୱନି । ଶବଦେ କମ୍ପେ ପୁର ତିନି ॥
ନିର୍ଘାତ ପ୍ରାୟ ବାଣ ବୃଷ୍ଟି । ଦଶପୁ ଧୂମମୟ ସୃଷ୍ଟି ॥
ଉଭୟ ଥାଟେ ମୁଖଗୋଳ । ଶବଦ କଲେ କୋଳାହଳ ॥
ଶରଣୀ ନଦୀକୂଳେ ରଣ । ଅସୁର ଥାଟେ ଶିବଗଣ ॥
ଚକ୍ର କୁଠାର ବାଣ ପେଷି । ବଢ଼ିଲେ ଦୈତ୍ୟବଳ ନାଶି ॥
ପଡ଼ିଲେ ଅସଂଖ୍ୟକ ମଡ଼ା । ତଳେ ଧରଣୀ ନାହିଁ ଛଡ଼ା ॥
ପାଞ୍ଚ ଯୋଜନ ଆବୃତରେ । ମଡ଼ା ପଡ଼ିଲେ ନିଘଞ୍ଚରେ ॥
ଯେସନେ ବନ କାଟି ଦେଲେ । ଲୋଟି ପଡ଼ନ୍ତି ପଦ୍ମ ଫୁଲେ ॥
ସେ ରୂପେ ନିଶାଚରଗଣେ । ପଡ଼ି କାର୍ତ୍ତିକରଣ ବାଣେ ॥
ଖ୍ୟାମକ ଭଦ୍ରସେନ ବୀର । ବଜ୍ର ସଦୃଶ ତାଙ୍କ ଶର ॥

ବହୁତ ଦୈତ୍ୟବଳ ଛେଦ । ରକତେ ବୁହାଇଲେ ନଦୀ ॥
ଶିବ ସଇନ୍ୟ ଧର୍ମ ବଳେ । ସେଦନ ଜୟ କଲେ ହେଳେ ॥
ଅସୁର ଥାଟ ପରାଜୟେ । ଏମନ୍ତେ ରବି ଅସ୍ତ ହୁଏ ॥
ସମର ଛାଡ଼ି ଦୁଇ ବଳେ । ରହିଲେ ନଦୀ ବେନି କୂଳେ ॥
ନିଶାରେ ଭୃଗୁସୁତ ଆସି । ସମର ଭୂମି ମଧ୍ୟେ ପଶି ॥
ସୁମରି ମୃତ୍ୟୁସଞ୍ଜୀବନୀ । ଜୀଆଇଁ ଅସୁର ସଇନ ॥
ମିଳନ୍ତି ରାଜା ସନ୍ନିଧାନେ । ପୁଣି ସମର ଆରମ୍ଭନେ ॥
ପ୍ରଭାତୁ ମିଳି ବେନି ବଳେ । ଯୁଦ୍ଧ କରନ୍ତି ଅଙ୍ଗ ଛଳେ ॥
ପଡ଼ନ୍ତି ଦୁଇବଳ ଲୋକ । ଅସୁର ମରନ୍ତି ଯେତେକ ॥
ରାତ୍ରେ ଜୀଆନ୍ତି ଭୃଗୁସୁତେ । ଏମନ୍ତେ କଲା ଦିନାକେତେ ॥
ରଜନୀ କାଳେ ଜଗି ବସି । ଜାଣିଲେ ଶିବ ପୁରବାସୀ ॥
କହିଲେ ଶଙ୍କର ଅଗ୍ରତ । ହେ ପ୍ରଭୁ ଶୁଣ ବିପରୀତ ॥
ଯେତେ ଅସୁର ଘୋରରଣେ । ହତ୍ୟ ନାଶନ୍ତି ଶିବଗଣେ ॥
ଶୁକ୍ର ଜୀଆନ୍ତି ତାଙ୍କୁ ରାତ୍ରେ । ଏଣୁ ଅକ୍ଷୟ ଦୈତ୍ୟଗୋତ୍ରେ ॥
ଶୁଣି କୁପିତ ବ୍ୟୋମକେଶ । ସକ୍ରୋଧେ ଛାଡ଼ିଲେ ନିଶ୍ୱାସ ॥
ଯୁଗାନ୍ତେ ଯେହ୍ନେ ଘୋର ବାତ । ଏକ ପିଶାଚୀ କଲେ ଜାତ ॥
କିସ କହିବା ତାର ମୂର୍ତ୍ତି । ଗର୍ଜ୍ଜନେ କମ୍ପିଲା ଧରଣୀ ॥
ମୁକୁଳା କେଶ ଫରହର । ବଦନ ଅଟେ ଗିରିବର ॥
କର୍ଣ୍ଣ ନାସିକା ନେତ୍ର ତୁଣ୍ଡ । ଜଣି ଅନଳ ସାତ କୁଣ୍ଡ ॥
ପର୍ବତ ପ୍ରାୟେ ବେନି ସ୍ତନ । ଶିଖେ କି ଉଦେ ନବଘନ ॥
ତେସନେ ଦିଶେ କୁଚକାଳ । ଭୁଜ କି ଦିଶେ ଆର୍ଦ୍ରାବଳୀ ॥
ବିସ୍ତାର ହୃଦ ଗିରିତଳେ । ଯେହ୍ନେ ଦିଶଇ ଖରାବେଳେ ॥
ଉଦର ତାର ଲକ୍ଷ୍ୟ ତେହ୍ନେ । ଉତ୍ସର୍ଗ ତାଳ ତରୁ ଯେହ୍ନେ ॥
ତେମନ୍ତ ଦିଶେ ପାଦ ବେନି । ଅତି ଶ୍ରବଣ ଘୋର ଧ୍ୱନି ॥

କୋପେ କମ୍ପଇ ତାର ଦେହି । ଚରଣେ ଦଳୁଅଛୁ ମହି ॥
ଏମନ୍ତ ମୂର୍ତ୍ତି ଦେଖି ଆଗେ । ହର ବୋଇଲେ ଯାଅ ବେଗେ ॥
ଅସୁର ଗୁରୁ ଭୃଗୁଶିଷି । ଯା ନାମ ଶୁକ୍ର ମହାଋଷି ॥
ତାହାଙ୍କୁ ନିକାସ ଗୁପତେ । ସମର ଶେଷ ପରିଯନ୍ତେ ॥
ପ୍ରାଣେ ନ ମାରି ରଖିଥିବୁ । ସମର ଅନ୍ତେ ଛାଡ଼ି ଦେବୁ ॥
ଏମନ୍ତ ଶିବ ଆଜ୍ଞା ପାଇ । ପିଶାଚୀ ରଣସ୍ଥାନେ ଯାଇ ॥
ପ୍ରବେଶ ହେଲା ନିଶାକାଳେ । ଯେହ୍ନେ ମନ୍ଦର ମହାଜଳେ ॥
ସେହି ପ୍ରକାରେ ଥାଇ ମିଳି । କୋଟି ସଂଖ୍ୟାରେ ମଣ୍ଡ ଗିଳି ॥
ଯେହ୍ନେ ସାରଙ୍ଗ ବାଜପକ୍ଷୀ । ନୀର ଜଟେପନ୍ନି କ୍ଷୀର ଭକ୍ଷି ॥
ସେହି ପ୍ରକାରେ ଶିବ ଦୂତ । ସମରେ ଅସୁର ନପାନ୍ତ ॥
ଦୈତ୍ୟ ଯେତେକ ଶସ୍ତ୍ର ଭଳେ । ତା ଅଙ୍ଗେ ନ ଭେଦଲ ତିଳେ ॥
ଉଦର ପୂର୍ଣ୍ଣ କରି ବାଳୀ । ଅସୁର ଗୁରୁ ଆଗେ ମିଳି ॥
ରଥୁଁ ଆଣିଲା ତାକୁ ଧରି । ବୃଷ୍ଟ କୁସୁମ ପ୍ରାପ୍ତେ କରି ॥
ଅଧର ଅଙ୍ଗେ ନେଇ ଖୋସି । ଗିରି କନ୍ଦରେ ଗଲା ପଶି ॥
ତା ଦେଖି ହାହାକାର କରି । ଅସୁର ରଣେ ଅପସରି ॥
ଶୁମ୍ଭ ଅଶ୍ରବେ ମନେ କ୍ରୋଧି । ଶିବଗଣଙ୍କୁ ଶର ବନ୍ଧି ॥
ନୃପତି ଠାରୁ ଆଜ୍ଞା ପାଇ । ଶମ୍ଭୁ ନିଶମ୍ଭୁ ବେନି ଭାଇ ॥
କାଳନେମିକ ସଙ୍ଗେ ଘେନି । ଯୁଦ୍ଧେ ଟେକଲେ ବୀର ତିନି ॥
ତା ଦେଖି ନନ୍ଦୀ ମହାବଳୀ । କାଳ ନେମିକ ଓଗାଳି ॥
ଶମ୍ଭୁ ସମ୍ମୁଖେ ବିନାୟକ । ନିଶମ୍ଭୁ ଦୈତ୍ୟକୁ କାର୍ତ୍ତିକ ॥
ଏମନ୍ତ ଷଡ଼ ମହାବଳୀ । ଉଭୟ ଥାଇ ରଣେ ମିଳି ॥
ଯୁଦ୍ଧ କରନ୍ତି ଏକେ ଏକେ । ଦୁର୍ଲ୍ଲଭ ରଣ ତିନି ଲୋକେ ॥
ନିଶମ୍ଭୁ ପଞ୍ଚବାଣ ସନ୍ଧି । କାର୍ତ୍ତିକ ଉପରକୁ ବିନ୍ଧି ॥
ବାହନ ଉପରେ ପଡ଼ିଲା । ଘାତେ ମୟୂର ମୋହ ଗଲା ॥

ଉଦାତ୍ତ ହୋଇ ଶିବ ସୁତ । ଅସୁର ଯୁଦ୍ଧେ ଅପ୍ରମିତ ॥
ନନ୍ଦକେଶ୍ୱର ଶୂଳ ପିଟି । କାଳନେମିର ରଥ ଫାଟି ॥
କେତୁ ସାରଥି ସାତ ଅଶ୍ୱ । ଏକ ପ୍ରହାରେ ହେଲେ ନାଶ ॥
ପୁଣି କୁଠାର ପେଷି ନନ୍ଦୀ । କାଳନେମିର ଧନୁ ଛେଦ ॥
ବିରଥୀ ହୋଇ ଦୈତ୍ୟ ବୀର । ଘେନିଲା ଚର୍ମ ଅସିବର ॥
ନନ୍ଦକେଶ୍ୱର କରେ ଫଳା । ସମରେ ତେଜ ଅନର୍ଗଳା ॥
ବେଳକୁ ବେଳ ଯୁଦ୍ଧ ଟାଣ । ପଡ଼ଇ ବଜ୍ର ସମ ବାଣ ॥
ପର୍ବତ ଶିଖରୁ ପଥରେ । ପଡ଼ିଲେ ଯେହ୍ନେ ଧ୍ୱନି କରେ ॥
ସେହ୍ନ ପ୍ରକାରେ ବାଣ ବୃଷ୍ଟି । ଶବଦେ କମ୍ପୁ ଅଛି ସୃଷ୍ଟି ॥
ଶମ୍ଭୁ ସଙ୍ଗତେ ଗଣପତି । ମାଲ ବନ୍ଧରେ ଜନ୍ତାଜନ୍ତି ॥
ଭୂମିରେ ପଡ଼ି ଗଡ଼ାଗଡ଼ି । କେଶଗ୍ର ପ୍ରାପ୍ତେ କରି ରଡ଼ି ॥
ଚଡ଼କ ପ୍ରାପ୍ତେ ମୁଷ୍ଟି ଘାତ । ପେଟକୁ ପ୍ରହାରନ୍ତି ନାଥ ॥
ଅସୁର ଘାତେ ଗଜାନନ । କ୍ଷଣେ ହୋଇଲେ ଅଚେତନ ॥
ପୁଣି ଚେତନା ପାଇ ରଣେ । ପରଶୁ ଧରି ତତକ୍ଷଣେ ॥
ଯେ ଶରେ ଶମ୍ଭୁ ମୂର୍ଚ୍ଛିତ । ଏମନ୍ତେ ଯୁଦ୍ଧ ଅପ୍ରମିତ ॥
ଘୋର ସମର ଧ୍ୱନି ଶୁଣି । ରଣେ ଚଳନ୍ତୁ ଶୂଳପାଣି ॥
ଆରୋହି ବୃଷଭ ବାହନେ । ସଙ୍ଗେ ଅଛନ୍ତି ଗଣମାନେ ॥
ଭୂତ ବେତାଳ ଦଣ୍ଡଧାରୀ । ଡାକିନୀଗଣ ଆଦି କରି ॥
ଧାଇଁଲେ କଳକଳ ନାଦେ । ବାଦନ କରି ନାନା ବାଦ୍ୟେ ॥
ଡମ୍ବରୁ ଅନ୍ତରୀକ୍ଷ ପୂରେ । ବନ ପର୍ବତ ନାଦ ପୂରେ ॥
ସଙ୍ଗେ ଅସଂଖ୍ୟ ଯୋଗିନୀ ବଳ । ଯେସନେ ନୀହାର ପଟଳ ॥
ଅସୁର ଥାଟେ ଆସି ମିଶି । ଶିବ ନାରଚେ ଉଗ୍ର ଧ୍ୱଂସି ॥
ରଣେ ଆନନ୍ଦ ପଶୁପତି । ବାଣ ବହନ୍ତି କୋପେ ଅତି ॥
ପିନାକ ଧନୁର୍ଗୁଣ ନାଦେ । ଦୈତ୍ୟଙ୍କ ହୃଦେ ଶର ଭେଦେ ॥

ଏକ ନାଦରେ ସେ ଧର୍ଜନ୍ତି । ସୈନ୍ୟ ମାରନ୍ତି କୋଟି କୋଟି ॥
ତା ଦେଖି ଜଳନ୍ଧର ଉଠେ । ଆଗ୍ନେୟ ଧନୁ ଧରି ହାତେ ॥
ପ୍ରତି ଜଣରେ ଶର କରି । ଶିବଙ୍କୁ ତିନ ବାଣ ମାରି ॥
ଗଣପତିଙ୍କି ପଞ୍ଚବାଣ । ବୀରଭଦ୍ରଙ୍କୁ ଚାରି ପୁଣ ॥
ନନ୍ଦ କାର୍ତ୍ତିକ ଥିଲେ ବନ୍ଧେ । ତାଙ୍କୁ ପେଷିଲା ଏକ ଚନ୍ଧେ ॥
ମଣିଭଦ୍ରଙ୍କୁ ଲୌହଦଣ୍ଡେ । ସର୍ବଗଣଙ୍କୁ କାଣ୍ଡେ କାଣ୍ଡେ ॥
ଏକାବେଳକେ ଶତେ ଶର । ସନ୍ଧାନ କଲା ଜଳନ୍ଧର ॥
ତା ଦେଖି ପଶୁପତି ପୁଣି । ଦୈତ୍ୟ ନାରାଚ ସବୁ ହାଣି ॥
ଯେ ବୀରଭଦ୍ର ରଣେ କ ଟି । ଅସୁର ରଥ ଶୂଳ ପିଟି ॥
ବିରଥୀ ହୋଇ ଦୈତ୍ୟନାଥ । ପୁଣି ଆରୋହନ୍ତି ଅନ୍ୟ ରଥ ॥
ବ୍ରହ୍ମ ଶକତି ଧରି କରେ । ପିଟିଲା ବୀରଭଦ୍ର ଶିରେ ॥
ଦୈତ୍ୟ ପ୍ରହାରେ ଭଦ୍ରବୀର । ରଣେ ହୋଇଲା ଅପହାର ॥
ଏ ଚାରି ଷଷ୍ଠୀ ମାଳ ଯୁଦ୍ଧେ । ପଡ଼ି ଗଡ଼ନ୍ତି ମାଲ ବନ୍ଧେ ॥
ହେତୁ ପ୍ରହେତ ବୀର ବେନି । ଯୁଝନ୍ତି ଶାଳ ଶିଳ ଘେନି ॥
ଏମନ୍ତେ ଅସ୍ତ୍ର ଗଲାବେଳେ । ରଣ ଉପେକ୍ଷି ବେନିକୂଳେ ॥
ରହିଲେ ବେନି ଭାଗ ହୋଇ । ମଧ୍ୟେ ଯୋଜନେ ଛଡ଼ା ରହି ॥
ହରି ବିଜୟ ନିଜ ପୁରେ । ସ୍ନାହାନ ସାରି ଗଙ୍ଗାନୀରେ ॥
ଈଶ୍ୱର ଭାବେ ସଦାନନ୍ଦ । ଘେନାଇ ପାରିଷଦ ବୃନ୍ଦ ॥
ତାଣ୍ଡବ ନୃତ୍ୟ ରଙ୍ଗେ ପଶି । ଆନନ୍ଦେ ପୁହାଇଲେ ନିଶି ॥
ସେ ମହାଦେବ ବିଶ୍ୱବାସ । ନମଇଁ ମହାଦେବ ଦାସ ॥
ଜୀବନ କାରଣ ନିମନ୍ତେ । ଶରଣ ହରି ପାଦଗତେ ॥
ସେ ପ୍ରଭୁ ଦୟା ଅନୁରାଗେ । ପଦ୍ମପୁରାଣ ଗୀତ ଯୋଗେ ॥
ଶୁଣ ସୁଜନ ଏ ଚରିତ । କାର୍ତ୍ତିକ ମାହାତ୍ମ୍ୟ ଅମୃତ ॥
ତୁଳସୀ ଉତ୍ପତ୍ତି ବାଣୀ । ଶୁଣି ସଂସାରୁ ତର ପ୍ରାଣୀ ॥

ଉତ୍ତର ଖଣ୍ଡେ ସାରସ୍ୱତ । କାର୍ତ୍ତିକ ମାହାତ୍ମ୍ୟ ଅମୃତ ।୧୯୭।
ଇତି ଶ୍ରୀପଦ୍ମପୁରାଣେ ଉତ୍ତର ଖଣ୍ଡେ କାର୍ତ୍ତିକ ମାହାତ୍ମ୍ୟେ
ଜଳନ୍ଧର ସଂଗ୍ରାମେ ନାମ ଏକାଦଶୋଽଧ୍ୟାୟଃ ।

---

## ଦ୍ୱାଦଶ ଅଧ୍ୟାୟ

### ସୂତ ଉବାଚ

ପତିତଂ ବୀରଭଦ୍ରଂ ତୁ ଦୃଷ୍ଟ୍ୱା ରୁଦ୍ରଗଣା ଭୟାତ୍ ।
ଆଗତାସ୍ତେ ରଣଂ ତ୍ୟକ୍ତ୍ୱା କ୍ରୋଶମାନା ମହେଶ୍ୱରଂ
ଅଥ କୋଳାହଳଂ ଶ୍ରୁତ୍ୱା ଗଣନଂ ଚନ୍ଦ୍ରଶେଖରଃ ।
ଅଭ୍ୟଗାଦ୍ ବୃଷଭାରୂଢ଼ଃ ସଂଗ୍ରାମଂ ପ୍ରହସନ୍ନିବ ॥

ଶୁଣ ସକଳ ମୁନିଗଣ । ଦ୍ୱାରକା ପୁରେ ନାରାୟଣ ॥
କହନ୍ତି ସତ୍ୟଭାମା ଆଗେ । ଯେ ଇତିହାସ କୃତଯୋଗେ ॥
ବ୍ରହ୍ମ ସନାତନ ସମ୍ବାଦ । ପୃଥୁକୁ କହନ୍ତି ନାରଦ ॥
ଶୁଣ ରାଜନ ମନତୋଷେ । ହର ଭୁବନ କପିଳାସେ ॥
ସକଳ ରୁଦ୍ରଗଣ ମିଳି । ପ୍ରଭୁଙ୍କୁ କଲେ ନିଜଗୁଣ ॥
ଗଜ ବଦନ ଗଣେଶ୍ୱର । ସମ୍ମୁଖେ ଯୋଡ଼ି ବେନିକର ॥
ଈଶ୍ୱର ମୁଖ ଚାହିଁ ଭଣି । ବୋଲନ୍ତି ଶୁଣ ଶୂଳପାଣି ॥
ଦୈତ୍ୟର ରଣେ ଯେତେ ସୈନ୍ୟ । ଆଗେ ଦେଖିଲ ପଶୁପତି ॥
ପଡ଼ିଲା ବୀରଭଦ୍ର ରଣେ । ଆମ୍ଭ ସମାନେ ଏକଜଣେ ॥
ତାର ସଙ୍ଗତେ ବଳ ଯେତେ । ସଂଖ୍ୟା ନୋହିଲେ ମଲେ କେତେ
ସେ ଗଲା ନାହିଁ ତୁମ୍ଭ ମନେ । ତାଣ୍ଡବ ନୃତ୍ୟ ଅବଧାନେ ॥
ଏ ତୁମ୍ଭ କେଉଁ ପ୍ରଭୁପଣ । ଆପଣା ହାନି ନ ପ୍ରମାଣ ॥
ଏହି ପ୍ରକାରେ କଲେ କାର୍ଯ୍ୟ । କାହାକୁ ଉପୁଜିବ ଲାଜ ॥
ଏ ତୁମ୍ଭ ଶତ୍ରୁ ଜଳନ୍ଧର । ରଣେ ଜିଣିଲା ସୁରନର ॥

ଜଗତନାଥ ଚକ୍ରପାଣି । ତାହାଙ୍କୁ ନେଲ ରଣେ ଜିଣି ॥
ରଖିଲ ନେଇ ନିଜପୁରେ । ଏ ବଡ଼ କର୍ମ ତ୍ରିଲୋକରେ ॥
ଏବେ ଆମ୍ଭର ଶତ୍ରୁ ପଣେ । ଯୁଦ୍ଧ କରୁଛି ଅକାରଣେ ॥
ତୁମ୍ଭେ ତାହାକୁ ନ ଜିଣିଲେ । ସଂସାର ନ ରହିବ ଭଲେ ॥
ଏଥକୁ ହୁଅ ସାବଧାନ । ଦେବଙ୍କ ଦୁଃଖ ମନେ ଘେନ ॥
ଏମନ୍ତ ଗଣେଶ ବଚନେ । ସେ ବିଶ୍ୱନାଥ ଅବଧାନେ ॥
ବୋଲନ୍ତି ଶୁଣ ସର୍ବ ଗଣେ । ଆଜ ଦେଖିବ ତୁମ୍ଭେ ରଣେ ॥
ମାତିବ ଦୁର୍ବୁଦ୍ଧି ଦଇତ । ସେ ଜଳନ୍ଧର ସିନ୍ଧୁ ସୁତ ॥
ତାର ନିଧନ ହେବ ନୋହି । ମୋର ସଦନେ କାର୍ଯ୍ୟ ନାହିଁ ॥
ଏମନ୍ତ ବୋଲି ଦେବ କାଶୀ । କପିଳାସୁତ ପୃଷ୍ଠେ ବସି ॥
ଯୁଦ୍ଧକୁ ହୋଇଲେ ବାହାର । ଜ୍ୟୋତି ବିରାଜେ ଝମକର ॥
ପଞ୍ଚ ବଦନ ତ୍ରିଲୋଚନ । ଯେସନ୍ତେ ପ୍ରଚଣ୍ଡ ହୁତାଶନ ॥
ଜଟା ମୁକୁଟ ସପ୍ତଫଣୀ । ଲଲାଟ ଶିଖେ ନିଶାମଣି ॥
କର୍ଣ୍ଣେ କୁଣ୍ଡଳ କଣ୍ଠେ ହାର । ସୁବର୍ଣ୍ଣ ସୂତ୍ରେ ନର ଶିର ॥
ଯେ ଜନ ଶିବ ଆଶ୍ରେ କରେ । ତା ଶିର ହର ହୃଦେ ଧରେ ॥
ଭୁଜ ଭୁଜଙ୍ଗଗଣ ସାଜେ । ଦଶ ଆୟୁଧ ଦଶଭୁଜେ ॥
ଭାଣ୍ଡ କୋଦଣ୍ଡ ଚକ୍ରକାଣ୍ଡ । ତ୍ରିଶୂଳ ପିନାକ ଶକ୍ତ ॥
ଖଡ୍ଗ ପରଶୁ ମୁଦ୍ଗର । ପ୍ରଚଣ୍ଡ ଜ୍ୟୋତି ପରଖର ॥
ଧବଳ ତନୁ ଜ୍ୟୋତି ସଜେ । ଶ୍ୱେତ ବୃଷଭ ପରେ ବିଜେ ॥
ଶିବ ଗମନେ ଅନ୍ତରୀକ୍ଷ । ବାଜେ ଡମ୍ବରୁ ନବଲକ୍ଷ ॥
ତା ଦେଖି ରୁଦ୍ରଗଣେ ଧାଇଁ । ପ୍ରଳୟ ଅଗ୍ନି ପ୍ରାୟେ ହୋଇ ॥
ଶିଙ୍ଗା ଉପାଙ୍ଗ ଶଙ୍ଖ ଧ୍ୱନି । ଶବଦେ ଫୁଟିଲେ ମେଦିନୀ ॥
ଶୁଣି ଅସୁର ବଳ କମ୍ପେ । ଶରଭ ସିଂହ ପ୍ରାୟେ ଝାମ୍ପେ ॥
ବନପଶୁଙ୍କ ପ୍ରାୟେ ହୋଇ । ଦୈତ୍ୟଙ୍କୁ ବୁଦ୍ଧି ନ ଫଟଇ ॥

ମନ୍ତ୍ରୀ ବଚନେ ଶଙ୍ଖାକୃନେ । ଭାଜୁ ଥିଲ ସେ ଦୈତ୍ୟବନେ ॥
ଏମନ୍ତ କାଳେ ଶିବଗଣ । ପ୍ରବେଶ ହେଲେ ରଣସ୍ଥାନ ॥
ଶିବଙ୍କୁ ଦେଖି ଜଳନ୍ଧର । ଭୟେ କମ୍ପଇ ଥରହର ॥
କାର୍ତ୍ତିକବ୍ରହ୍ମ ଦେଖି ପାପ । ଯେହ୍ନେ ହୁଅଇ ହୃଦକମ୍ପ ॥
ସେହ୍ନେ ଅସୁର ଭୟ କରି । ପୁଣି ଧୈର୍ଯ୍ୟ ଗୁଣ ଧରି ॥
ରଥ ଆରୋହି ଧାଡିକାରେ । ଧନୁ ନାରାଚ ଧରି କରେ ॥
ଯୁଦ୍ଧେ ହୋଇଲେ ଅଗୁସାର । ସାରଥି ସିଂହିକା କୁମର ॥
ତା ଦେଖି ଦୈତ୍ୟବଳ ଦଳେ । ଲାଗିଲେ ସିଦ୍ଧପତି କଳେ ॥
ନାନା ଆୟୁଧ କରେ ଧରି । ଦୈତ୍ୟ ଧାଇଁଲେ ହାଗ ପୂରି ॥
ବାଜଇ ଢମକ ନିଶାଣ । ଦୈତ୍ୟ ଭେଟିଲେ ଶିବଗଣ ॥
ଧନୁ ଆକର୍ଷି ଶର ବନ୍ଧ । ଆବୋରି ଏକେ ଏକେ ବାଧା ॥
ଶୁଣ ରାଜନ ବସ୍ତୁ ଲୀଳା । ଯେ ଯାହା ଭୁଲେ ଯୁଦ୍ଧ କଲା ॥
ତାହା କହିବା ଏକେ ଏକେ । ସେମ୍ଭ ଆବୋରି ନିଅମ୍ଭିକେ ॥
ଯୁଦ୍ଧ କରନ୍ତି ଅନର୍ଯ୍ୟାପ । ଶର ଶବଦେ ସପ୍ତଦ୍ୱୀପ ॥
ଚମକ ହୋଏ ଟଳମଳ । ସ୍ୱର୍ଗେ କମ୍ପନ୍ତି ଦିଗପାଳ ॥
ନମ୍ଭେ ଭୁଲେ ଗଣପତି । ବାଣ ବହନ୍ତି ପ୍ରତି ପ୍ରତି ॥
କାର୍ତ୍ତିକ ସଙ୍ଗେ ଜଳନ୍ଧର । ଯୁଦ୍ଧ କରଇ ଅଗୋଚର ॥
ବାଣ ବହନ୍ତି କୋଟି କୋଟି । ବରଷେ ଯେହ୍ନେ ଜଳ ବୃଷ୍ଟି ॥
କାଳନେମି ମହାକାଳ । ଖ୍ରୀମକ ଭୁଲେ ବା ସକଳ ॥
ଏ ରୁଚି ହରୀ ମାଲ ଯୁଦ୍ଧେ । ଚଢ଼ି ଚଢ଼ନ୍ତି ରଣ ମଧ୍ୟେ ॥
ହେତି ପ୍ରହେତି ବୀର ହେନ । ଯୁଦ୍ଧ କରନ୍ତି ଶିଳା ହେନ ॥
ପ୍ରହେତି ନନ୍ଦୀ ଯୁଦ୍ଧ କଥା । କହିଲେ ନ ସରିବ ପୋଥା ॥
ଏମନ୍ତେ ଏକ ଏକ ରଣ । ନିର୍ଘାତ ପ୍ରାୟେ ଶୁଭେ ବାଣ ॥
ଯୁଦ୍ଧ କରନ୍ତି ଅହର୍ନିଶି । ଉଭୟେ ଥାଟେ ମିଶା ମିଶି ॥

ରଣେ ପଡ଼ିଲେ ଅନୁକ୍ଷଣେ । ଚନ୍ଦ୍ର କୁଠାରେ ତୀକ୍ଷ୍ଣ ବାଣେ ॥
ଶମ୍ଭୁ ବଧାନ୍ତେ ଶିର ଛିଣ୍ଡି । କିଂଶୁକ ବୃକ୍ଷ ପ୍ରାୟେ ଖଣ୍ଡି ॥
କବନ୍ଧ କୋଟି କୋଟି ନାଚେ । ମଣ୍ଡା ପଡ଼ନ୍ତି ଅତି ଘଞ୍ଚେ ॥
ରଥ ମାତଙ୍ଗ ଖର ବାଜି । ନତ୍ୟେ ପଡ଼ନ୍ତି ରଣେ ଗର୍ଜି ॥
ଧରଣୀ ଦିଶେ ରଙ୍ଗବର୍ଣ୍ଣ । ଶରେ ପୀଡ଼ିତ ମହାଶୂନ୍ୟ ॥
ରଣେ ଈଶ୍ୱର କୋପମୂର୍ତ୍ତି । ଯୁଗାନ୍ତେ କାଳ ଯେହ୍ନେ ଜ୍ୟୋତି ॥
ସେହି ସ୍ୱରୂପେ ତ୍ରିପୁରାରି । କ୍ଷଣେ ଅସୁରବଳ ମାରି ॥
ଶୂଳ ପ୍ରହାରେ ଶମ୍ଭୁ ରଥ । ଭଙ୍ଗି ହୋଇଲା ଖଣ୍ଡ ଶତ ।
ବିରଥୀ ହୋଇ ମହାବୀର । ଶିବ ସମ୍ମୁଖୁ ହେଲା ଦୂର ॥
ସେ ଶୂଳ ପିଟି ଉମାକାନ୍ତ । ଖଡ୍ଗରେ ସେମଙ୍କୁ କଲେ ହତ ॥
ବଳିଷ୍ଠ ଦୈତ୍ୟ କେଶ ଧରି । ପଟିଶ ଘେନି ତାକୁ ମାରି ॥
ତା ସଙ୍ଗେ ଦଶଲକ୍ଷ ରଥୀ । ବୃଷଭ ପକାଇଲା ମନ୍ଥି ॥
ଅୟୁତେ ଅଶ୍ୱ କୋଟି ମତ୍ତ । ପଦାତି ନ ଗଲା ଗଣିତା ॥
ଅସୁର ନାମ ମହାବଳୀ । ତାକୁ ବଦନେ ଠେସି ତୋଳି ॥
ପକାଇ ଦେଲା ଅନ୍ତରୀକ୍ଷେ । ଶିଙ୍ଗ ପୋତିଲା ନେଇ ତଳେ ॥
ଚଣ୍ଡ ଅସୁର ହୃଦ ଫାଟି । ପୁଣି ବୃଷଭ ମୁଖ ଛୁଟି ॥
ପକାଇ ଦେଲା ଅତି ବେଗେ । ଦୈତ୍ୟ ପଡ଼ିଲା ସିନ୍ଧୁ ଭାଗେ ॥
ତା ଦେଖି ଜଳନ୍ଧର ଚିତ୍ତେ । ଭୟେ ଭାଳଇ ଅନ୍ତର୍ଗତେ ॥
ଏ ମହାଦେବ ବିଶ୍ୱନାଥେ । ମୋର ମରଣ ଏହା ହାତେ ॥
ନିଶ୍ଚୟେ ସଞ୍ଚିଲା ଦଇବ । କେ ଏହା ଅନ୍ୟଥା କରିବ ॥
ଯେ ପ୍ରତିଆଣେ କଲି ଏହା । ଲଭିତ ନପାରିଲି ତାହା ॥
ଯେବେ ପାର୍ବତୀ ରୂପ ଦେଖି । ତେବେ ସେ ଏ ଜନମ ସୁଖୀ ॥
ମାୟାରେ କରିବି ଉପାୟେ । ଧରିବି ସଦାନନ୍ଦ କାୟେ ॥
ସିଦ୍ଧ ଗନ୍ଧର୍ବ ସନ୍ନିଧିକୁ । ବିଶ୍ୱାସେ ହଣିବ ତାହାକୁ ॥

ତେବେ ଲଭିବ ସର୍ବଜୟ । ମୃତ୍ୟୁକୁ ନାହିଁ ମୋର ଭୟ ॥
ଏତେ ବସୁର ହୃଷ୍ଟମତ । ମିଳିଲ ଶମ୍ଭୁ ଦୈତ୍ୟ କତ ॥
ତାଙ୍କୁ ବୋଲେ ପ୍ରୀତି ମନେ । ଯୁଦ୍ଧ ସମ୍ଭାଳ ଥାଅ କ୍ଷଣେ ॥
ମୁଁ ଯାଇ ଆସିବ ତୁରିତେ । ବସ୍ତ୍ର ଭିଣୋଇ ସଙ୍କେତେ ॥
ସେ ଦେବ ନାମ ମାୟାଧର । ଜାଣେଇ ଅନେକ ବସ୍ତୁର ॥
ଯୁଦ୍ଧେ ଜିଣିବ କେଉଁ ବାଗେ । ବସୁର ଲେଉଟିବ ବେଗେ ॥
ଏମନ୍ତ କହି ଦୈତ୍ୟନାଥ । ଶମ୍ଭୁକୁ ଦେଲା ନିଜ ରଥ ॥
ଏ ରଥେ ବସି ଦୈତ୍ୟ ବୀର । ଶିବ ସମ୍ମତେ ଯୁଦ୍ଧ କର ॥
କଶ୍ୟପ ସୁତ ବପ୍ରଚିତ୍ତି । ରଥେ ଆରୋହି ଦନୁପତି ॥
କରନ୍ତି ଅସଂଖ୍ୟ କାରଣ । ଏଥୁ ଅନ୍ତରେ କଥା ଶୁଣ ॥
ରଣ ଉପେକ୍ଷି ଜଳନ୍ଧର । ସେ ଠାରୁ ଗଲା କେତେ ଦୂର ॥
ନିଜ ଶରୀର କରି ଗୋପ୍ୟ । ମାୟାରେ ହେଲା ଶିବରୂପ ॥
ପଞ୍ଚ ବଦନ ଦଶଭୁଜ । ବିପୁଳ ବପୁ ଜ୍ୟୋତିରାଜ ॥
କରେ ତ୍ରିଶୂଳ ପାଶୁପତ । ମୁଖରେ ତିନ ତିନ ନେତ୍ର ॥
ଏମନ୍ତେ ପଞ୍ଚଦଶ ଆଖି । ପଞ୍ଚ ବଦନେ ଭସ୍ମ ମାଖି ॥
ଭ୍ରୂ କୁଟି କୁଟିଳ କପୋଳେ । ଅର୍ଦ୍ଧ ଶୀତାଂଶୁ ଜ୍ୟୋତି ଜ୍ୱଳେ ॥
ଶିରେ ମୁକୁଟ ଜଟା ଭାର । ସ୍ରବ ପଡ଼ୁଛି ଗଙ୍ଗାଧାର ॥
କଣ୍ଠେ ଲମ୍ବିତ ଅସ୍ଥିମାଳ । ଶ୍ରବଣେ ମର୍କତ କୁଣ୍ଡଳ ॥
ଶ୍ୱେତ ବୃଷଭ ପୃଷ୍ଠ ଯୋଗେ । ଗମନ କପିଳାସ ମାର୍ଗେ ॥
ବଦ୍ଧ୍ୟ ରତ୍ନ ମଣି ଘଣ୍ଟେ । ବୃଷଭ ମଣ୍ଡିଅଛି ସଙ୍ଗେ ॥
ସୁବର୍ଣ୍ଣ ଶିଙ୍ଗ ଶିଖେ ହୀର । ରତ୍ନ ମୁକୁଟ ମଣି ତୋର ॥
କପୋଳେ ଶୋଭେ ସୁନା:ସ୍କନ୍ଧ । ମଧ୍ୟେ ମାଣିକ୍ୟ ଅରବନ୍ଦ ॥
ଘାଗୁଡ଼ି ଘଣ୍ଟି ଘଣ୍ଟା ମାଳେ । ଲମ୍ବି ପଡ଼ିଛି ବକ୍ଷସ୍ଥଳ ॥
ପାଦେ ନୂପୁର ରୁଣସାଜେ । ଚଳନ୍ତେ ରୁଣୁଝୁଣୁ ବାଜେ ॥

ପାଟର କେଶ ନେତ ଭୁଜ । ପାରିଜାତକ ଫୁଲଫୁଲ ॥
ସୁବର୍ଣ୍ଣ କଉଡ଼ ସୁରେଖେ । ଦର୍ପଣ ଯନ୍ତ୍ର ବେନ ପାଖେ ॥
ଶ୍ୱେତ ଚାମର ପ୍ରାୟେ ପୁଚ୍ଛ । ହର ବୃଷଭ ଉପଲକ୍ଷ ॥
ତାର ଉପରେ ଜଳଧର । ଜାଣି ପ୍ରତ୍ୟକ୍ଷ ଦେବ ହର ॥
ସନ୍ଧିରେ ବଜେ ଘଣ୍ଟାଗଣ । କନ୍ୟାବୃନ୍ଦେ ବେଢ଼ିଛନ୍ତି ॥
ଅପୂର୍ବ ବେଶ ନବରଙ୍ଗେ । ନୃତ୍ୟ କରନ୍ତି ଅଙ୍ଗ ଭଙ୍ଗେ ॥
ଗନ୍ଧର୍ବ ତାନେ ଗୀତ ସ୍ୱରେ । ମଙ୍ଗଳ ଜୟ ଶଙ୍ଖ ପୂରେ ॥
ତାଳ ମୃଦଙ୍ଗ ଯନ୍ତ୍ରରବା । ଏମନ୍ତେ କରୁଛନ୍ତି ସେବା ॥
ଶିବ ଉନ୍ମାଦ ପ୍ରାୟେ ହୋଇ । ଅସୁର ଶିବପୁରେ ଯାଇ ॥
ପ ବଣ୍ଣ ଦାସୀମାନେ ଆସି । ଥିଲେ ସେ ସିଂହଦ୍ୱାରେ ବସି ॥
ଜୟ ଶବଦ ଶୁଣି ବେଗେ । ଉଠି ଲୁହିଁଲେ ରାଜମାର୍ଗେ ॥
ଦେଖିଲେ ବଜେ ଶମ୍ଭୁନାଥେ । ଗଇସ ପୃଷ୍ଠ ବୃଷ୍ଟି ପଥେ ॥
ପଣ୍ଡ୍ର ବାହନେ ପଶୁପତି । ଶିରେ ଧରାଇ ଫୁଲ ଛତି ॥
ଯୁବତୀଗଣ ପାଶେ ବେଢ଼ି । ଆସନ୍ତି ପଟୁଆର ପଢ଼ି ॥
କେବେହେଁ ଦୂରେ ଶିଙ୍ଗା ନାଦ । ଶୁଭୁଛି ରଣ ଜୟ ବାଦ୍ୟ ॥
ଏମନ୍ତ ଦେଖି ଦାସୀଗଣେ । ପାବନ୍ତି ଆଗେ ତତ୍‌କ୍ଷଣେ ॥
କହିଲେ ଅନ୍ତଃପୁରେ ଯାଇ । ହେ ମାତା ଆସ ବେଗ ହୋଇ ॥
ତୁମ୍ଭ ବଲ୍ଲଭ ତ୍ରିପୁରାରି । ଆସନ୍ତି ରଣ ଜୟ କରି ॥
ନିକଟେ ଆସି ପରବେଶ । ପ୍ରଭୁଙ୍କୁ ଅର୍ଘ୍ୟ ଦେବ ଆସ ॥
ଏମନ୍ତେ ଦାସୀ ମୁଖେଁ ଶୁଣି । ଜନକ ଶଇଳ ଦୁଲଣୀ ॥
ନିଜ ଆସନୁ ଉଠି ବେଗେ । କାଞ୍ଚନମାଳା ସଖୀ ସଙ୍ଗେ ॥
ପୁରୁଁ ବାହାର ହୋଇ ଆସି । କ୍ଷୀର ସମୁଦ୍ରେ ଯେହ୍ନେ ଶଶୀ ॥
ଦାସୀଙ୍କ କରେ ଅର୍ଘ୍ୟଥାଳ । ଆସନ୍ତେ ପଡ଼ ହୁଳହୁଳ ॥
ନଗରୁ ହୋଇଲେ ବାହାର । ଦେବୀଙ୍କି ଦେଖିଲା ଅସୁର ॥

ଯେମନ୍ତେ ଶୁଣିଥିଲା ପୂର୍ବେ । ନାରଦ ବଚନ ପ୍ରସ୍ତାବେ ॥
ସେହି ସ୍ୱରୂପ ଆଗେ ଦେଖି । ପିଛୁଡ଼ି ନ ପାରିଲା ଆଖି ॥
ପାର୍ବତୀ ରୂପ ଅଗ୍ନି କାନ୍ତି । ଶୁଦ୍ଧ ସୁବର୍ଣ୍ଣ ବର୍ଣ୍ଣ ଭ୍ରାନ୍ତି ॥
ଶରଦ ପୂର୍ଣ୍ଣ ଇନ୍ଦୁ ପ୍ରଭା । ତହୁଁ ଅଧିକ ମୁଖ ଶୋଭା ॥
ନୀଳ ବସନ ପରିହରଣ । ସୁରଙ୍ଗ ନେତ ଉପରଣ ॥
ବେନି ଲୋଚନେ ରୂପ ସ୍ପର୍ଶି । ଅସୁର କମ୍ପମାନ ଦେହା ॥
ପାର୍ବତୀ ଅଙ୍ଗ ଆଭରଣ । ଯେସନେ ଆଦିତ୍ୟ କିରଣ ॥
ଶିରେ ହୀମନ୍ତ ମଥାମଣି । ନାସାରେ ମୁକୁତା ବସଣୀ ॥
ତା ଦେଖି ସାଗର ନନ୍ଦନ । ହୃଦୟୁ ହୁଏ କମ୍ପମାନ ॥
କୁରଙ୍ଗୀ ଲୋଚନେ ଅଞ୍ଜନ । ଦାନବ ଧଇର୍ଯ୍ୟ ଗଞ୍ଜନ ॥
କର୍ଣ୍ଣେ ତାଟଙ୍କ ବେନି ଦେଖି । ବନ୍ଧ ହୋଇଲା ତାର ଆଖି ॥
ନୀଳ କୁନ୍ତଳ କେଶ ଭାର । କୁସୁମ ଫୁଟି ଦିଶେ ଶିର ॥
କନକ କମ୍ବୁ କଣ୍ଠ ଦେଶେ । ମୁକୁତା ଗୁପତରି ବସେ ॥
ବାହେ ବାହୁଟି କରେ ଚୂଡ଼ି । କାଞ୍ଚନେ ନବରତ୍ନ ଜଡ଼ି ॥
ଅଙ୍ଗୁଳିମାନଙ୍କରେ ମୁଦି । କରଣେ ଦୈତ୍ୟ ମନ ଭେଦି ॥
ବେନିକୁ ବେନି ମନ ମୋହେ । ଅନ୍ତରେ କାମ ଅଗ୍ନି ଦହେ ॥
ପାରଦ ଉଜ୍ଜ୍ୱଳକୁ ସ୍ପର୍ଶି । ଯେସନେ ବନ ମୃଗ ରହି ॥
ନୂପୁର ଦେଖା ବେନି ପାଏ । ଦେ ରବ ଘଣ୍ଟି ଧ୍ୱନି ପ୍ରାପ୍ତେ ॥
ଶୁଣି ଅସୁର ଶ୍ରୁତି ପଟେ । ମନ ତା ଚଞ୍ଚଳ ସଙ୍କଟେ ॥
ତା ଦେଖି ଲୁବ୍ଧକ ମାର । ପ୍ରହାର କଲା ପଞ୍ଚଶର ।
ମର୍ମେ ବାଜିଲା ବାଣ ଯାଇ । ଅସୁର ଅଚେତନ ହୋଇ ॥
ବୃଷଭ ଉପରୁ ପଡ଼ିଲା । ବୃକ୍ଷୁ କି କୁସୁମ ଝଡ଼ିଲା ॥
ଅସୁର ସେହି ପରକାରେ । ପଡ଼ିଲା ଧରଣୀ ଉପରେ ॥
ତା ଦେଖି ଦେବୀ ମନେ ଭ୍ରାନ୍ତି । ଜାଣିଲେ କଷ୍ଟ ମାୟା ପତି ॥

ତତକ୍ଷଣେ ହେଲେ ଅନ୍ତର୍ଦ୍ଧାନ । ଗଗନେ ବିଜୁଳି ଯେସନ ॥
ଦାସୀ ସଙ୍ଗତେ ମହାମାଈ । ରହିଲେ ଗୋପ୍ୟ ସ୍ଥାନେ ଯାଇ ॥
ଅସୁର ମୋହେ ପଡ଼ିଥିଲା । କ୍ଷଣକେ ଚେତନା ପାଇଲା ॥
ଲଭେ ବାହୁଡ଼ି ସିନ୍ଧୁ ଶିଷ୍ୟ । ପୁଣି ହୋଇଲା ନିଜ ବେଶ ॥
ଚଢ଼ି କାଞ୍ଚନ ରଥେ ବସି । ଯୁଦ୍ଧେ ପ୍ରବେଶ ହେଲା ଆସି ॥
ଏଥୁ ଅନ୍ତରେ ଶୁଣ କଥା । ଅମ୍ବିକା ଯାଇ ମନେ ବ୍ୟଥା ॥
ପୁରେ ଏକାନ୍ତ ସ୍ଥାନେ ବସି । ଧ୍ୟାନେ ଚିନ୍ତିଲେ ବ୍ରହ୍ମରାଶି ॥
ଯେ ପ୍ରଭୁ ବସେ ସର୍ବ ଭୂତେ । ସ୍ଥିତ ବାହାର ଅନ୍ତର୍ଗତେ ॥
ଅଶେଷ ଲୋକ ଚିନ୍ତାମଣି । ଜାଣେ ଗଉରୀ ମନ ଜାଣି ॥
ଧ୍ୟାନ ଗୋଚରରେ ହୋଇ ଦୃଶ୍ୟ । ସମ୍ମୁଖରେ ହେଲେ ପରବେଶ ॥
ବିଷ୍ଣୁ ଦର୍ଶନ ଦେବା ପାଇ । ଆନନ୍ଦେ ଶିରେ କର ଦେଇ ॥

ପାର୍ବତ୍ୟୁବାଚ

ହେ ପ୍ରଭୁ ଦେବ ନାରାୟଣ । ତୋ ନାମ ପରମ କାରଣ ॥
ପରମ ହଂସ ଯାଷା ଜ୍ଞାନେ । ତୋତେ ଚିନ୍ତନ୍ତି ଯୋଗୀଜନେ ॥
ତୋ ରୂପ ଧ୍ୟାନ ମାର୍ଗେ ଦେଖି । ଆତ୍ମାକୁ କରୁଥାନ୍ତି ସୁଖୀ ॥
ଅନ୍ତେ ମିଳନ୍ତି ତୋ ଭୁବନେ । ନ ଯାନ୍ତି ଯମ ଦରଶନେ ॥
ଏମନ୍ତ ମହିମା ତୋହର । ଶରଣ ଜନଙ୍କ ସୋଦର ॥
ଯେ ଜନ କାଳଭୟେ ଡରି । ତୋହର ଶରଣ ଆଶ୍ରେ କରି ॥
ତାର ବିପତ୍ତି ଆଉ ନାହିଁ । ସକଳ ଲୋକାଶ୍ରୟ ତୁହି ॥
ତୁ ଦେବ ଦେବ ନିରଞ୍ଜନ । ତୋହର ଅଭାବେ ମୂର୍ଖଜନ ॥
ସଂସାରେ ହେଉଥାନ୍ତି ଧନ୍ଦ । ଯେସନେ ରଜା ଘରେ ବନ୍ଦୀ ॥
ମୁଁ ଏହା ଭଲେ ଅଛି ଜାଣି । ତୁ ନାଥ ସର୍ବ ଚିନ୍ତାମଣି ॥
ସକଳ ଜୀବ ପରେ ବସୁ । ସୁଜନ ରଖି ଦୁଷ୍ଟ ନାଶୁ ॥
ଏଣୁ ତୋ ଦଇତ୍ୟାରି ବାନା । ଭକତ ହିତେ ବଜ୍ର ସେଣ୍ଠା ॥

ମୁନିଏ କହୁଛନ୍ତି ପୂର୍ବେ । ମୋର ଗୁହାରି ଶୁଣ ଏବେ ॥
ଅସୁର ନାମେ ଜଳନ୍ଧର । ବଳେ ଜିଣିଲା ତିନି ପୁର ॥
ସର୍ବ ସମ୍ପଦ କଲା ଜ୍ର । ତଥାପି ସେ ଲୋଭୀ ଅସୁର ॥
ମୋତେ ଲଭିବ ବୋଲି କରି । ଏମନ୍ତ ମନରେ ବିଚାରି ॥
ମାୟାରେ ଧରି ଶିବ ରୂପ । ମୋର ଭୁବନେ ଉପଗତ ॥
ନଷ୍ଟ ବେଶରେ ଆସିଥିଲା । ମୋ ରୂପ ଦେଖି ମୋହଗଲା ॥
ଧର୍ମ ସେ କଲା ପ୍ରତିକାର । ନୋହିଲେ ସରନ୍ତା ବେଭାର ॥
ତୁ ନାଥ ହବ ଧର୍ମଗୁରୁ । ମୋତେ ଯେ ରଖିଲୁ ଦୁସ୍ତରୁ ॥
ଏବେ ମୁଁ କରିବି କେମନ୍ତ । ବିଚାରି କହ ଲକ୍ଷ୍ମୀକାନ୍ତ ॥
ସେ ଜଳନ୍ଧର ଥିଲେ ଭଲେ । ନଷ୍ଟେ ସୁଜନେ ନାଶ ଗଲେ ॥
ଅଧିକେ କି କହିବି ଆଜ । ହେ ପ୍ରଭୁ ବୁଝି ଆଜ୍ଞା ଦେଉ ॥
ଏମନ୍ତ ଦେବୀ ଶାକମ୍ଭରୀ । ମାୟାକୁ ମାୟା କରି ପାରି ॥
ମୋ ନାମ ମାୟାଧର ଯେଣୁ । ମାୟା ମୁଁ ନ ସହଇ ତେଣୁ ॥
ବିଶେଷେ ସାଧୁଠାରେ ପୁଣି । ମାୟା କରନ୍ତି ଯେଉଁ ପ୍ରାଣୀ ॥
ମୂର୍ଖ କରଇ ତାକୁ ମାୟା । ଯ ବତ ଥିବ ତାର କାୟା ॥
ତାବତ ସୁଖ ନାହିଁ ମୋର । କହନ୍ତି କରୁଣା ସାଗର ॥
ଏବେ ଏ ଜଳନ୍ଧର ଆସି । ମାୟାରେ ତୁମ୍ଭ ପୁରେ ପଶି ॥
ଏଥି ଲଭିଲା ଯେଉଁ କାର୍ଯ୍ୟ । ଆମ୍ଭେ କରିବା ମାୟା ଆଜ ॥
ସେ ଆଗର କଲା କର୍ମ ନାଶ । ପଛନ୍ତେ ନାହିଁ କିଛି ଦୋଷ ॥
ସେ ଯେଉଁ ରୂପେ ଅପରାଧୀ । ଆମ୍ଭେ କରିବା ସେହି ବୁଦ୍ଧି ॥
ତାର ସୁବର୍ଣ୍ଣ ସଦାବ୍ରରେ । ଦୈତ୍ୟ ଅସୁରୁ ତିନିପୁରେ ॥
ତାହା କରିବୁ ଆମ୍ଭେ ନାଶ । ତେବେ ମରିବ ସିନ୍ଧୁ ଶିଷ୍ୟ ॥
ଏତେକ କହି ଭଗବାନ । ସେଠାରୁ ହେଲେ ଅନ୍ତର୍ଦ୍ଧାନ ॥
ବିଷ୍ଣୁ ବଚନେ ମହାମାୟେ । ମନରୁ ଛାଡ଼ିଲେ ସଂଶୟେ ॥

ସେ ଦୁର୍ଗା ମାଧବ ଚରଣେ । ମୋ ମନ ରହୁ ଅନୁକ୍ଷଣେ ॥
ଭଣଇ ମହାଦେବ ଦାସ । ସୁଜନେ କ୍ଷମା କର ଦୋଷ ॥

ଇତି ଶ୍ରୀପଦ୍ମପୁରାଣେ ଉତ୍ତରଖଣ୍ଡେ କାର୍ତ୍ତିକ ମାହାତ୍ମ୍ୟେ ଜଳନ୍ଧର ମାୟା ବଧାନେ ନାମ ଦ୍ୱାଦଶୋଽଧ୍ୟାୟଃ ।

—*—

## ତ୍ରୟୋଦଶ ଅଧ୍ୟାୟ

### ନାରଦ ଉବାଚ

ବିଷ୍ଣୁ ଜଳନ୍ଧରଂ ଗତ୍ୱା ତଦ୍ଦୈତ୍ୟପୁର ଭେଦନଂ ।
ପାତିବ୍ରତ୍ୟସ୍ୟ ଭଙ୍ଗାୟ ବୃନ୍ଦାୟାଶ୍ଚାକରୋନ୍ମତିଃ ।

ଶୁଣ ରାଜନ ମନୁ ବଂଶୀ । ବିଷ୍ଣୁ ଯେ ଶିବ ପୁରୁ ଆସି ॥
ପ୍ରବେଶ ଜଳନ୍ଧର ପୁରେ । ମାୟା ରଚିଲେ ତାର ଠାରେ ॥
ସେ ମାୟା ଦେବେ ଅଗୋଚର । ଶୁଣ କହିବା ନୃପବର ॥
ସୁଜନ ଜନଙ୍କର ହିତେ । ବିସ୍ତର କରି ଦେଞ୍ଚ ଭୂତେ ॥
ବୈଷ୍ଣବୀ ମାୟାରେ ଅଚ୍ୟୁତ । ମୋହିଲେ ବୃନ୍ଦାବତୀ ଚିତ୍ତ ॥
ସେ ଜଳନ୍ଧର ରାଜାରାଣୀ । ସ୍ୱାମୀ ସେନେହ ମନେ ଗୁଣି ॥
ପତି ଭାବରେ ମନଦେଇ । ରାତ୍ରେ ପଲଙ୍କେ ଥିଲା ଶୋଇ ॥
ଏମନ୍ତେ ନିଶି ଅର୍ଦ୍ଧମାନ । ନିଦ୍ରାରେ ଦେଖଇ ସ୍ୱପନ ॥
ଯେ ନିଜ ପତି ଜଳନ୍ଧର । ଅଙ୍ଗେ ତଇଲ ଜର ଜର ॥
ବସ୍ତ୍ର ବହିନେ ମୁକ୍ତ କେଶ । କଣ୍ଠରେ ମାଳ ରଙ୍ଗପୁଷ୍ପ ॥
ଅବେଶ୍ୱ ମହିଷ ବାହନ । ଦକ୍ଷିଣ ଦିଗକୁ ଗମନ ॥
ହସ୍ତରେ ଛିନ୍ନ ମୁଣ୍ଡେ ଅଛି । ଏ ସ୍ୱପ୍ନ ଦେଖିଲା ମୃଗାକ୍ଷୀ ॥
ତକ୍ଷଣେ ନିଦ୍ରାଭଙ୍ଗ ହୋଇ । ଉଠି ବସିଲା ନଦା ଦେଖି ॥
ସମ୍ମୁଖେ ମଣିଲା ଶକୁନ । ବହୁଛି ଦକ୍ଷିଣା ପବନ ॥
ଡାହାଣେ ନେଉ କରେ ନୃତ୍ୟ । ଦୂରରେ ଶୁଭିଲା ନର୍ଦ୍ଧାତ ॥

ଉଲ୍ଲୂକ ପକ୍ଷୀ ଉଡ଼ି ଆସି । ଡାକଇ ଗୃହପରେ ବସି ॥
ପୁର ବାହାରେ ଶିବା ରବେ । ଶବଦ ଶୁଣି ଶ୍ୱାନ ଧାବେ ॥
ଏମନ୍ତ ଉପଦ୍ରବ ଧ୍ୱନ । ଶୁଣନ୍ତେ ଅସୁର କାମିନୀ ॥
ଭୟଇ ମନରେ ବଡ଼ାଡ଼େ । ଆଦର ନ ଭଜଇ ନଡ଼େ ॥
ବସି ରଜନୀ ପୁହାଇଲା । ପ୍ରଭାତେ ଶୁଭ ନ ଦେଖିଲା ॥
ମନ୍ଦିରୁ ହୋଇଲା ବାହାର । ଦେଖିଲା ପୂର୍ବ ଦିନକର ॥
ଉଦୟ କାଳେ ଶ୍ୱେତବର୍ଣ୍ଣ । ମଣ୍ଡଳ ଦିଶେ ଛିନ୍ନ ଭିନ୍ନ ॥
ଚାରୁପଶେ ତାରଗଣ ଦିଶେ । ଶୋଣିତ ଧାର ଶୂନ୍ୟ ଖସେ ॥
ଦିଗ ଦିଶନ୍ତି ଧୂମମୟେ । ତା ଦେଖି ବୃନ୍ଦାବତୀ କାୟେ ॥
ଭୟେ କମ୍ପଇ ଥରହର । ଲୋଚନୁ ବହେ ଅଶ୍ରୁ ଧାର ॥
ପୁଣ ମିଳିଲା ପୁରେ ଆସି । କ୍ଷଣମାତ୍ରକେ ସ୍ଥିରେ ବସି ॥
ସ୍ୱାମୀ ଭବରେ ଦେଇ ଚିତ୍ତ । ଆକୁଳ ତାର ପଞ୍ଚଭୂତ ॥
ମନରେ କରଇ ବିଚାର । କାଳ ସ୍ୱରୂପୀ ବିଶ୍ୱେଶ୍ୱର ॥
ଜୀବ ସଂହାରେ ଯୋଗବଳେ । ଧରଣୀ ଧ୍ୱଂସେ ଅନ୍ତକାଳେ ॥
ତେଣୁ କାଳଙ୍କ ନାମ ତାର । ଜୀବ ଉପରେ ଜୀବେଶ୍ୱର ॥
ତାର ସଙ୍ଗତେ ମୋର ପତି । ନ ଜାଣି କଲା ଯେ ଅପ୍ରୀତି ॥
ଏ କାହୁଁ ଜିଣିବେ ତାହାଙ୍କୁ । ଏ କଥା ନ ଆସେ ମନକୁ ॥
ନଷ୍ଟ ହୋଇବେ ଆପେ ନାଶ । ଏ କଥା ହେଉଅଛି ଦୃଶ୍ୟ ॥
କେମନ୍ତେ ପାଇବି ବାରତା । ଏତେ ବସ୍ମୟ ମନେ ଚିନ୍ତା ॥
ପୁଣି ଉଠିଲା ଧାଡିକାରେ । ପ୍ରବେଶ ହୋଇ ପୁରେ ପୁରେ ॥
କାହିଁ ନ ରହେ ତା'ର ମନ । ତେଜିଲା ଅସନ ବ୍ୟସନ ॥
ବେଗେ ପାଶିଲା ନିତ୍ୟକର୍ମ । କ୍ଷଣ କ୍ଷଣକେ ମତି ଭ୍ରମ ॥
ଏକ ବସନ ଅଛି ପିନ୍ଧି । ଲୋଟଣି ଛନ୍ଦେ କେଶ ବାନ୍ଧି ॥
ସଙ୍ଗତେ ଦେଶନ ବେନ ସଖୀ । ପୁଚ୍ଛ ବାହାର ଚନ୍ଦ୍ରମୁଖୀ ॥

ଗୋଗୋଷ୍ଟେ ହେଲା ପରବେଶ । ଚହ୍ନି ନ ଦେଖି ସୁଖ ଲେଶ ॥
ବେଗେ ବାହାର ହେଲ ଚନ୍ଦ୍ର । ହିଂସ୍ରୁ ଜନ୍ତୁଅଛି ଦେହ୍ରୁ ॥
ଉଚ୍ଚ ସ୍ଥାନରେ ଯାଇ ଉଠେ । ହିଂସ୍ର ମାନଙ୍କୁ ଦେଇ ଦୃଷ୍ଟେ ॥
ଚିତ୍ତ ଆଗମ ଅନୁସରି । ଚିତ୍ତ ନ ପାରେ ସ୍ଥିର କରି ॥
ନଷ୍ଟେ ପ୍ରମାଦ ବୋଲି ଭଜି । ଜଗତ ମଣୁଅଛି ସଜି ॥
ସଖୀଙ୍କ ବଚନ ନ ଶୁଣେ । ସ୍ୱଚ୍ଛେଦେ ଭ୍ରମେ ଏଣେ ତେଣେ ॥
ନଗ୍ର ବାହାର ହୋଇ ସତ୍ତି । ସ୍ୱାମୀ ସ୍ୱରୂପ ମନେ ଚନ୍ତି ॥
ପଶିଲ୍ସ ଯାଇ ବନ ଘୋରେ । ଉଠିଲ୍ସ ପର୍ବତ ଉପରେ ॥
ଆପେ ଆପଣା କର୍ମ ନିନ୍ଦ । ଦଶ ଦିଗକୁ ଚହ୍ନି କାନ୍ଦ ॥
ଚହ୍ନି ସଖୀଙ୍କ ଭୁଜ ଧରି । ଆକୁଳେ ପର୍ବତୁ ଉତୁରି ॥
ବନେ ବୁଲଇ ଦୁଃଖେ ପଡ଼ି । ବିଷ୍ଣୁ ମାୟାରେ ବୁଦ୍ଧି ହୁଡ଼ି ॥
ସ୍ୱାମୀ ସ୍ୱଚ୍ଛେଦେ ଦୁଃଖ ମନେ । ଖୋଜି ବୁଲଇ ବନ ବନେ ॥
ବେନି ସଜନୀ ଛନ୍ତି ମେଳେ । ଏମନ୍ତ ବିଷ୍ଣୁ ମାୟା ବଳେ ॥
ଘୋର ଦାନବ ବେନି ବେଗେ । ମିଳିଲେ ବୃନ୍ଦାବତୀ ଆଗେ ॥
ସିଂହର ପ୍ରାୟେ ତାଙ୍କ ମୁଖ । ବିକଟ ଦନ୍ତ ତୀକ୍ଷ୍ଣ ନଖ ॥
ଉଗ୍ର କଣ୍ଠ ପୃଷ୍ଠ ହନୁ । ପର୍ବତ ପ୍ରାୟେ ଦିଶେ ତନୁ ॥
ମୁକୁଳା କେଶ ଉଚ୍ଚ ଆଖି । ଯୁବତୀ ଭୟ କଲେ ଦେଖି ॥
ଅସୁରେ ଘୋର ନାଦ କରି । କରେ କଣ୍ଟକ ବୃକ୍ଷ ଧରି ॥
ପାଟିବିସ୍ତାରି ଧାଇଁଛନ୍ତି । ତା ଦେଖି ଭୟେ ବୃନ୍ଦାବତୀ ॥
ବେନି ସଜନୀ ଘେନି ସଙ୍ଗେ । ପଳାଇ ମନର ଆତଙ୍କେ ॥
କେତେକ ଦୂରେ ଏକ ଋଷି । ଯୋଗ ଧ୍ୟାନରେ ଛନ୍ତି ବସି ॥
ଅପୂର୍ବ ରୂପ ଦିବ୍ୟ ଶୋଭା । ଅନଳ ପ୍ରାୟେ ଜ୍ୟୋତିପ୍ରଭା ॥
କର୍ଣ୍ଣେ କୁଣ୍ଡଳ ଶିରେ ଜଟା । ପିନ୍ଧିଛନ୍ତି ଚର୍ମର କାଛଟା ॥
ସର୍ବାଙ୍ଗେ ଭସ୍ମ ବିଲେପନ । ମଣ୍ଡନେ ନିଶ୍ଚଳ ଆସନ ॥

ବେନ ନଯୁନ ବୃକ୍ଷ ବସି । ମନକୁ ବ୍ରହ୍ମରେ ନବେଶି ॥
ଏମନ୍ତ ଯତି ଆଗେ ଦେଖି । ବୃନ୍ଦା ସନ୍ତତେ ହୋଇ ଦୁଃଖୀ ॥
ଶରଣ ଗଲେ ତାଙ୍କ ପାଶେ । ଅସୁରେ ଦେଖିଲେ ପ୍ରତ୍ୟକ୍ଷେ ॥
ଅତଙ୍କେ ତାଙ୍କନ୍ତ ଚରଣୀ । ମୁନି ରୁନ୍ଧିଲେ ତାହା ଶୁଣି ॥
ହସ୍ତ ଉଞ୍ଚାଇ ହୁଁ ହୁଁ କରି । ଅସୁରେ ପଳାଇଲେ ଡରି ॥
ଦେଖି ଆନନ୍ଦ ବୃନ୍ଦା ହୃଦେ । ପ୍ରଣାମ କଲା ମୁନି ପାଦେ ॥
କରଯୁଗଳ ଶିରେ ଦେଇ । ବୋଲଇ ଶୁଣିବା ଗୋସାଇଁ ॥
ତୁମ୍ଭ ପ୍ରସାଦେ ଆମ୍ଭେ ପ୍ରାଣେ । ରକ୍ଷା ପାଇଲୁ ତିନିଜଣେ ॥
ଏବେ ମୁଁ ପୁଚ୍ଛଇ ଏମନ୍ତ । ତୁମ୍ଭେ ସର୍ବଜ୍ଞ ତପୋବନ୍ତ ॥
ତ୍ରିଶିପୁ କାଳ କଥା ଜାଣ । ମୋର ବଚନ ଏବେ ଶୁଣ ॥
ମୋ ସ୍ୱାମୀ ନାମ ଜଳନ୍ଧର । ଈଶ୍ୱର ସଙ୍ଗେ ଯୁଦ୍ଧ ତାର ॥
ସମ୍ପୂର୍ଣ୍ଣ ମାସେ ଯୁଦ୍ଧ କଲା । କେହି କାହାକୁ ନ ଜିଣିଲା ॥
ଆଜ ମୁଁ ଦେଖିଲି ସ୍ୱପନ । ମୋର ସ୍ୱାମୀର କୁଶକୁନ ॥
ତେଣୁ ମୋ ମନେ ଗୁରୁ ଚିନ୍ତା । ସବୁ ଲାଗଇ ବିଷ ପିତା ॥
ସ୍ୱାମୀ ବିଚ୍ଛେଦେ ଦୁଃଖମନେ । ଗୃହ ଉପେକ୍ଷି ଘୋରବନେ ॥
ବୁଲଇ ବାଉଳ ସ୍ୱଭାବେ । ତୁମ୍ଭଙ୍କୁ ଭେଟିଲଇଁ ଏବେ ॥
ଏ ବଡ଼ ଭାଗ୍ୟ ମୋର ଯଶ । ପାଇବି ସ୍ୱାମୀର ସନ୍ଦେଶ ॥
ଭଲେ କି ଅଛୁ ମୋର ପତି । ବିସ୍ତାରି କହ ମହାଯତି ॥
ବୃନ୍ଦାର ଏ ବଚନ ଶୁଣି । ସେ ମୁନି ହୃଦପଦ୍ମେ ଗୁଣି ॥
ନିଃଶ୍ୱାସ ଛାଡ଼ି ଊର୍ଦ୍ଧ୍ୱ ଦେଶେ । ରୁନ୍ଧିଲା ଉତ୍ତର ଆକାଶେ ॥
ଏହି ସମୟେ ଶୂନ୍ୟମାର୍ଗେ । ବାନର ଦୁଇ ଗୋଟି ବେଗେ ॥
ଗିରି କନ୍ଦର ପ୍ରାୟେ ଦିଶି । ପବନୁ ବେଗେ ଖସି ଆସି ॥
ତାହାଙ୍କ କରେ ମୃତ ପିଣ୍ଡ । ଛେଦନ କରି ଗଣ୍ଡି ମୁଣ୍ଡ ॥
ଦୁହେଁ ଅଛନ୍ତି ତାହା ଧରି । ବେଗେ ଭୂମିରେ ଅବତରି ॥

ମୁନଙ୍କ ଆଗେ ତାହା ଥୋଇ । ଗଲେ ସେ ଅନ୍ତର୍ଦ୍ଧାନ ହୋଇ ॥
ସେ ମୃତଶବ ବେନି ଖଣ୍ଡ । ବୃନ୍ଦା ଚିହ୍ନିଲା ସ୍ୱାମୀମୁଣ୍ଡ ॥
ପ୍ରତ୍ୟକ୍ଷେ ଜଳନ୍ଧର ଅଙ୍ଗ । ରକତେ ବିଶ୍ୱଅତି ରଙ୍ଗ ॥
ଯେ ପୂର୍ବେ ଆଭରଣ କାୟେ । ସର୍ବ ଶକୁନ ଖାଉ ଦେହେ ॥
ବସ୍ତ୍ର ସହିତେ ଅସ୍ତ୍ର ଧନୁ । ବାଣେ ଛିନ୍ନଭିନ୍ନ ହୋଇ ତନୁ ॥
ଭୂମିରେ ପଡ଼ିଅଛି ଟୁଳଳ । ସାଗର ସୁତ ମହାବଳୀ ॥
ଏମନ୍ତ ଦେଖି ବୃନ୍ଦାବତୀ । ସ୍ୱାମୀ ନିଧନେ ମହାସତୀ ॥
କାନ୍ଦଇ ଧରଣୀରେ ପଡ଼ି । ହୃଦରେ ବେନି କର ତାଡ଼ି ॥
ପୁଣି ସାଉଁଟି ସ୍ୱାମୀ ଶିର । ନକ୍ଷି କରେ ହାହାକାର ॥
ତା ବେନି ସଖୀ ଛନ୍ତି ଧରି । ବିକଳେ କାନ୍ଦଇ ସୁନ୍ଦରୀ ॥
ସୁମରି ସ୍ୱାମୀ ଗୁଣମାନ । ବୋଲଇ ଧିକ ମୋ ଜୀବନ ॥
ହେ ନାଥ ମୋର ପ୍ରାଣ ନାହା । ଶତ୍ରୁମର୍ଦ୍ଦନ ତୋର ବାହା ॥
ବିଧାତା କରେ ବୀର ଭୁଜ । ଜିଣିଲୁ ଚତୁର୍ଦ୍ଦଶ ମହୀ ॥
ଅଇରି ବଳ ଧୂମକେତୁ । କେ ତୋତେ ଦେଲା ଅପମୃତ୍ୟୁ ॥
ଏତେ ଅବସ୍ଥା ତୋର ରହିଁ । ମୋ ପ୍ରାଣ ଅଛି କିମ୍ପା ରହି ॥
ତୁମେ ନ ଦେଖ ମୋର ଦୁଃଖ । ଜୀବନ୍ତେ ଦେଲୁ କେତେ ସୁଖ ॥
ସେ ଗୁଣ ଶୁଣିବି କେମନ୍ତେ । ହେ ନାଥ ଘେନିଯାଅ ମୋତେ ॥
ତୋର ଜୀବନ ଅଛି ଯହିଁ । ମୋ ପ୍ରାଣ ବେଗେ ପଶୁ ତହିଁ ॥
ମୋର ଶରୀର ତୋର ପିଣ୍ଡେ । ଦହନ ହେଉ ଅଗ୍ନିକୁଣ୍ଡେ ॥
ଏ କଥା କହିବଇଁ ବେଗେ । ବୁଡ଼ି ତ ଦିଶୁନାହିଁ ଆଗେ ॥
ତୁ ନାଥ ରାଜ ରାଜେଶ୍ୱର । ତୋର ବାନ୍ଧବ ଚନ୍ଦ୍ରଧର ॥
ଇନ୍ଦ୍ରାଦି ଦଶଦିଗ ପାଳେ । ସୁର ଅସୁର ନରମେଳେ ॥
ଏ ସର୍ବେ ତୋର ବଶବର୍ତ୍ତୀ । ଏବେ ପାଇଲୁ ଏଡ଼େ ଶାସ୍ତି ॥
କିମ୍ପା ଅସାତ କର୍ମ କଲୁ । ଈଶ୍ୱରେ ଅପରାଧୀ ହେଲୁ ॥

ସେ ଶିବ ନାସ୍ତି ମହାସତୀ । ତାର ହରଣେ କଲୁ ମତି ॥
ଏଣୁ ତୋ ମରଣ ଉଚିତ । ମୁଁ ଯେ ପାଳୁଛି ସତ୍ୟବ୍ରତ ॥
ଏ ଧର୍ମ କେଉଁଣ ଗଲା ମୋର । ଦେଖିଲି ମୃତ ପିଣ୍ଡ ତୋର ॥
ଏଣୁ ମୁଁ ନ ଯାଏ ପରତେ । ଶ୍ରେ ମୁନି କହ କଥା ମୋତେ ॥
ଅନ୍ୟାୟୁ ନାହିଁ ମୋର ମନେ । ବିଧବା ହୋଇଲି କେସନେ ॥
ମୁନି ବୋଲନ୍ତି ଶୁଣ ସତୀ । ଯେବେ ସ୍ୱଧର୍ମେ ତୋର ମତି ॥
ତେବେ ବର୍ତ୍ତିବ ତୋର ନାହା । ଶୁଣ ସଂଶୟ ଅଛି ଯାହା ॥
ଜଗତ ଈଶ୍ୱର ପୁରୁଷ । ସେ ଯାହା କରିଅଛି ନାଶ ॥
ରଣେ ତୋ ପତି ମୁଣ୍ଡ କାଟି । ତା ଭୃତ୍ୟ ନନ୍ଦ ଯେ ଭ୍ରୁକୁଟି ॥
ଶିବ ଚଳାଇ ତାର ହାତେ । ସେ ଆଣି ପକାଇଲେ ଏଥେ ॥
ପ୍ରତ୍ୟକ୍ଷେ ଦେଖୁଅଛୁ ଶବ । କେମନ୍ତେ ହୋଇବା ଜୀଇବ ॥
ଏ ବାକ୍ୟ ଶୁଣି ବୃନ୍ଦାବତୀ । ମୁନିରେ କଲା ସେ ବିନତି ॥
ତାହାଙ୍କ ଆଗେ ମୁଣ୍ଡ ଥୋଇ । ସାଷ୍ଟାଙ୍ଗ ପାଏ ପଡ଼ି ଶୋଇ ॥
ପୁଣି ଉଠିଲା ତତକ୍ଷଣ । ହସ୍ତରେ ସାଉଁଟି ଚରଣ ॥
କପାଳେ ଯୋଡ଼ି ବେନିକର । ବୋଲଇ ଶୁଣ ମୁନିବର ॥
ତୁମ୍ଭେ ପ୍ରତ୍ୟକ୍ଷ ବ୍ରହ୍ମବେତା । ବିଷ୍ଣୁ ସମାନ ବରଦାତା ॥
ମୋର ବିନତି ତୁମ୍ଭେ ଘେନ । ସ୍ୱାମୀଙ୍କି ଦିଅ ଜୀବଦାନ ॥
ଏମନ୍ତ କହି ପୁଣ ପୁଣି । ପ୍ରଣାମ କରଇ ତରୁଣୀ ॥
ତାର ବିନୟ ଭାବ ଦେଖି । ମୁନି ବୋଇଲେ ବୁଜ ଆଖି ॥
କ୍ଷଣେ ବିଷ୍ଣୁଙ୍କୁ ଧ୍ୟାନ କର । ଜୀଆଇ ଦେବା ତୋର ବର ॥
ଏମନ୍ତ ଶୁଣି ତନ ସତୀ । ବସନେ ନିବେଶିଲେ ଆଖି ॥
ସେ ମୁନି ମୃତ ପିଣ୍ଡ ଛୁଇଁଲେ । ତତକ୍ଷଣେ ଅନ୍ତର୍ଦ୍ଧାନ ହେଲେ ॥
ଆସି ମିଳିଲା ଜଳନ୍ଧର । ଧନୁ ନାରାଚ ଧରି କର ॥
କଟି କିଙ୍କିଣି ନାଦ ଶୁଣି । ତୁରିତେ ଗୁହିଁଲେ ତରୁଣୀ ॥

ପ୍ରତ୍ୟକ୍ଷ ଜଳନ୍ଧର ମୂର୍ତ୍ତି । ଦେଖି ଆନନ୍ଦ ବୃନ୍ଦାବତୀ ॥
ଉତ୍ସୁକ କର ପଞ୍ଚମନ । ଦରିଦ୍ର ଯେହ୍ନେ କୋଟିଧନ ॥
ସୁରଙ୍ଗ ଚୂତ ଫଳ ଲକ୍ଷି । ବାଳକେ ଯେହ୍ନେ ଦୂରୁ ଧାଇଁ ॥
ସେହି ପ୍ରକାରେ ବୃନ୍ଦାବତୀ । ସନ୍ନିଧେ ଦେଖି ନିଜ ପତି ॥
ନିର୍ଭୟେ କଲା ଆଲିଙ୍ଗନ । ବଦନେ ଦେଲା ଚୁମ୍ବଦାନ ॥
ପୁଲକେ ରୋମାବଳୀ ଗାତ୍ରେ । ଆନନ୍ଦେ ଅଶ୍ରୁଜଳ ନେତ୍ରେ ॥
ସ୍ନେହେ ବଲ୍ଲଭ ମୁଖ ଲକ୍ଷି । ବୋଲଇ ତୁମ୍ଭେ ଥିଲ କାହିଁ ॥
ତୁମ୍ଭଙ୍କୁ ନ ଦେଖି ମୋ ମନ । ଦରଧ ପଙ୍କଜ ଯେସନ ॥
ଖେମନ୍ତ ହୋଇ ପୋଡ଼ୁଥିଲା । ଆଜ ସେ ଦୁଃଖ ଦୂର ଗଲା ॥
ତୁମ୍ଭେ ଯେ ଥିଲ ଘୋର ରଣେ । ଛେଦନ ହୋଇ ଶିବ ବାଣେ ॥
ବ ନରେ ଆଣି ମୃତ ପିଣ୍ଡ । ମୋ ଆଗେ ଦେଲେ ବେନିଖଣ୍ଡ ॥
ଏଠାରେ ଥିଲେ ଏକ ଯତି । ମୁଁ ତାଙ୍କୁ କଲଇଁ ଭକତି ॥
ତେଣୁ ସେ ହୋଇଣ ପ୍ରସନ୍ନ । ତୁମ୍ଭଙ୍କୁ ଦେଲେ ଜୀବଦାନ ॥
ମୋର କାମନା ସିଦ୍ଧ କରି । ସେ କେଣେ ଗଲେ ତପସ୍ୱୀ ॥
ତୁମ୍ଭେତ ପାଇଲ ଜୀବନ । ଏକଥା ମୋର ବଡ଼ ପୁଣ୍ୟ ॥
ଏବେ ପୁରକୁ ଚାଲ ଯିବା । ଗହନ ବନେ କମ୍ପା ଥିବା ॥
ବୃନ୍ଦା ବଚନ କର୍ଣ୍ଣେ ଶୁଣି । ମାୟା ପୁରୁଷ ବାକ୍ୟ ଭଣି ॥
ହେ ପ୍ରିୟେ ଶୁଣ ସାବଧାନେ । ସର୍ବ କୁଶଳ ତୋର ପୁଣ୍ୟେ ॥
ମରଣୁ ଜୀଆଇଲୁ ମୋତେ । କି ପଟାନ୍ତର ଦେବି ତୋତେ ॥
ଏବେ ତୁ ମୋର ବୋଲ ଘେନ । ଏ ଯେ ଅରଣ୍ୟ ରମ୍ୟ ସ୍ଥାନ ॥
ଏଠାରେ ରହି ଦିନାକେତେ । କ୍ରୀଡ଼ା କରିବା ମନ ସ୍ନେହେ ॥
ସମର ଶ୍ରମ ଦେହୁଁ ହରି । ବିଜେ କରିବା ନିଜ ପୁରୀ ॥
ଶୁଣି ଆନନ୍ଦ ବୃନ୍ଦାବତୀ । ସ୍ୱାମୀ ସେନେହେଁ କଲା ପ୍ରୀତି ॥
ବିପିନେ ଏକ ପୁର ରଚି । ଅତି ଆନନ୍ଦେ ଦିନ ବଞ୍ଚି ॥

ଏମନ୍ତେ ଗଲା ଷଣ୍ଡମାସ । ଶରତ ଋତୁ ପରବେଶ ॥
ବିଷ୍ଣୁ ଯେ ମାୟାରୂପ ଧରି । ହରିଲେ: ଜଳନ୍ଧର ନାରୀ ॥
ତା ପାତିବ୍ରତ୍ୟ କରି ନାଶ । ପୁଣି ଚିନ୍ତିଲେ ନିଜ ବେଶ ॥
ମନେ ବିଚାର କଲେ ହରି । ଏ ସତୀ ହୋଇଲା ଦୋଷୀ ॥
ସ୍ୱଧର୍ମ ପଣ ହେଲା ଦୂର । ଏବେ ମରିବ ଜଳନ୍ଧର ॥
ଦେବଙ୍କ କାର୍ଯ୍ୟ ଯେବେ ହେବ । ଅନ୍ତ ଏ ରୂପ କିମ୍ପା ଥିବ ॥
ଏତେ ବିଚାରି ନରହରି । ବୃନ୍ଦାକୁ କୋଳେ ଛନ୍ତି ଧରି ॥
ମାୟା ମୂରତି ଉପେକ୍ଷିଲେ । ନିଜ ସ୍ୱରୂପ ପ୍ରକାଶିଲେ ॥
ମେଘ ଗମ୍ଭୀର ବାଣୀ ଶୁଣି । ସେ ଜଳନ୍ଧର ରାଜା ରାଣୀ ॥
ଲେଉଟି ଚାହିଁଲା ନିରେଖି । କାତର ବିଷ୍ଣୁ ରୂପ ଦେଖି ॥
ସମ୍ଭ୍ରମେ ବୁଜିଲା ନୟନ । କମ୍ପେ ଅଧର ଘନ ଘନ ॥
କୋଳୁ ଉଠିଲା ଧାତିକାରେ । ପୁଣି ଚାହିଁଲା ଅଙ୍ଗ ଥରେ ॥
ପ୍ରତ୍ୟକ୍ଷେ ହେଲେ ଦେବହରି । କୋଟି କନ୍ଦର୍ପ ରୂପ ଧରି ॥
ଅତସୀ ପୁଷ୍ପ ବର୍ଣ୍ଣ କାନ୍ତି । ନୀଳ ନବୀନ ଘନ ଜ୍ୟୋତି ॥
କଦମ୍ବ କଞ୍ଜଳ ସଂକାଶେ । ପୀତ ଅମ୍ବର ମଧ୍ୟ ଦେଶେ ॥
ଆଜାନୁ ଲମ୍ବେ ଭୁଜ ଚାରି । ଧନୁ ନାରାଚ ଗଦା ଧରି ॥
ଅମ୍ବୁଜ ପୁଷ୍ପ ଏକ କରେ । ମଣି ମୁକୁଟ ଶୋଭେ ଶିରେ ॥
କର୍ଣ୍ଣେ କୁଣ୍ଡଳ କଣ୍ଠେ ହାର । ଭୁଜେ କଙ୍କଣ ରତ୍ନସାର ॥
ପାଦେ ନୂପୁର କେନ ଶୋଭା । ଆଦିତ୍ୟ ପ୍ରାୟେ ତାଙ୍କ ପ୍ରଭା ॥
କପାଳେ ଚନ୍ଦନର ବିନ୍ଦୁ । ନିଶି ଗର୍ଭରେ ଯେହ୍ନେ ଇନ୍ଦୁ ॥
କଣ୍ଠେ ଲମ୍ବଇ ବନମାଳ । ବୀର ବାହୁଟି ଭୁଜ ମୂଳ ॥
ଅଙ୍ଗୁଳିମାନଙ୍କରେ ମୁଦି । ନବଗ୍ରହଙ୍କ ଜ୍ୟୋତି ନିଧି ॥
ଏମନ୍ତ ରୂପେ ବ୍ରହ୍ମବଶି । ବୃନ୍ଦାକୁ ଚାହିଁ ଅଳ୍ପ ହସି ॥
ତା ଦେଖି ବୃନ୍ଦା କଲା କୋପ । ବୋଇଲା ଧିକ ତୋର ରୂପ ॥

ଧିକ ତୋହର ପ୍ରଭୁପଣ । ତୁ ଯେ ସଂସାରେ ବଡ଼ ଜଣ ॥
ସକଳ ଧର୍ମ ପ୍ରତିପାଳୁ । ତୁ ପର ପରମ ଦୟାଳୁ ॥
ତୋ ନାମ ଧରି ପାପୀଜନେ । ସଂସାରୁ ତରନ୍ତି କେସନେ ॥
ମୋ ପତି ବାନ୍ଧବ କେଶବେ । ଏହା ଅର୍ଜିଲି ରଖି ଧରେ ॥
ତୁ ତ ସୁହୃଦ ଫଳ ଦେଲୁ । ଏଡ଼େ ଅକର୍ମ କର୍ମ୍ମ କଲୁ ॥
ମୂର୍ଖଜନଙ୍କୁ ନାହିଁ ଦୟା । ଏବେ ଜାଣିଲି ତୋର ମାୟା ॥
ଯେବଣ ବେଳ ଦୈତ୍ୟ ବନେ । ଦେଖି ଡରିଲୁଁ ଭୟ ମନେ ॥
ଯେ ରକ୍ଷି କରୁଥିଲା ତପ । ସେ ବେଳ ମର୍କଟ ସ୍ୱରୂପ ॥
ଯେ ମୃତଶବ ମୋର ଆଗେ । ଏ ସର୍ବ କୃତ୍ୟ ତୋର ଯୋଗେ ॥
ମୁଁ ସ୍ତ୍ରୀ ଅବଳା ଯୁବତୀ । ଏଡ଼େ କପଟ କର୍ମ୍ମ ମୋତେ ॥
କପଟେ ହରିଲୁ ମୋ ତପ । ଏବେ ତୁ ନେଇ ମୋର ଶାପ ॥
ତୋର ଘରଣୀ ନାମ ଶିରୀ । ତାକୁ ଅସୁର ନେବେ ହରି ॥
ମୋତେ ଭଣ୍ଡିଲ ଯେଉଁ ବାଗେ । ସେହି ପ୍ରକାରେ ତୋହ ଆଗେ ॥
ଅସୁର ଦେବ ଶିର ଛେଦ । ତୋ ନାରୀ କାନ୍ଧେ ତାହା ଯେନ ॥
ତୁ ଯେଉଁ ଯତି ବେଶ ଧରି । ମୋତେ ଭଣ୍ଡିଲୁ ମାୟା କରି ॥
ସେହି ସ୍ୱରୂପେ ବନେ ବୁଲି । ତୋ ସଖା ହେଉ କପିକୁଳ ॥
ଧର୍ମ ପୁରାଣ ଯେବେ ସତ । ଏ ତେତେ ହେଉ ପରାପତ ॥
ମୋତେ ଯେ କଲୁ ବିଡ଼ମ୍ବନ । ଏ ଦେହ ହେଲା ଅକାରଣ ॥
ମୁଁ ଏହା ନ ରଖିବି ଆଜ । ତୋର ଉପରେ ହତ୍ୟା ହେଉ ॥
ଏମନ୍ତ ବୋଲି ବୃନ୍ଦାବତୀ । ବଦନ ଆଣିଲା ଝଟତି ॥
ବନେ ଯେ ଥିଲା କାଷ୍ଠ ରାଶି । ଅନଳ ସେ କୁଣ୍ଡେ ପ୍ରବେଶି ॥
ସମିଧ ପାଇ ଅଗ୍ନି ଜ୍ୱଳେ । ପ୍ରଚଣ୍ଡାନଳ ଧକଧକେ ॥
ତା ଦେଖି ଜଗତ ଠାକୁର । ବୃନ୍ଦାକୁ ସମ୍ମାର୍ଜନ୍ତ କରି ॥
ବୋଲନ୍ତି ନ ପଡ଼ ଅନଳେ । ତୋ ପତି ବର୍ତ୍ତିଛି କୁଶଳେ ॥

ବୃପତ କଥାକୁ ନ ଶୁଣ । ଆମ୍ଭେ ଜଣନ୍ତା ସବୁ ଭଲ ।
ଏମନ୍ତ ଗୋବିନ୍ଦ ବଚନେ । ବୃନ୍ଦା ତା ନ ଶୁଣିଲା କର୍ଣ୍ଣେ ।
ହବ୍ୟବାହନ ପରେ ବସି । ତକ୍ଷଣେ ହେଲା ଭସ୍ମ ରାଶି ।
ଦେଖି ସେ ଅବଳାର ମତି । ବିସ୍ମୟ ହୋଇ ଲକ୍ଷ୍ମୀପତି ।
ଅଙ୍ଗେ ତା ଭସ୍ମରାଶି ବୋଳି । ତହିଁରେ ନ ପାରିଲେ ଚଳି ।
ବୃନ୍ଦାକୁ ମନେ ଧ୍ୟାନ କରି । ସେହିଠାରେ ଅଚଳ ମହୀଗିରି ।
ତେମନ୍ତ ଭାବେ ନାରାୟଣ । ବ୍ରତରେ ହୋଇଲେ ମଗନ ।
ସେ ପ୍ରଭୁ ଚରଣ କମଳେ । ସୁମନେ ଚିତ୍ତ ଯୋଗବଳେ ।।
ତେଣେ ହୋଇବେ ପ୍ରଭୁ ବଶ । ଭଣଇ ମହାଦେବ ଦାସ ।

ଇତି ଶ୍ରୀ ପଦ୍ମପୁରାଣେ ଉତ୍ତର ଖଣ୍ଡେ କାର୍ତ୍ତିକ ମାହାତ୍ମ୍ୟେ ବିଷ୍ଣୁ ବୃନ୍ଦାବଣ୍ଟ ହରଣେ ନାମ ତ୍ରୟୋଦଶୋଽଧ୍ୟାୟଃ ।

—*—

## ଚତୁର୍ଦ୍ଦଶ ଅଧ୍ୟାୟ

### ନାରଦ ଉବାଚ

ତତୋ ଜଳନ୍ଧରୋ ଦୃଷ୍ଟ୍ୱା ରୁଦ୍ରମଦ୍ଭୁତ ବିକ୍ରମଂ ।
ଚକାର ମାୟୟା ଗୌରୀଂ ତ୍ର୍ୟମ୍ବକଂ ମୋହୟନ୍ନିବ ।।

ଶୁଣ ହେ ପୃଥୁ ମହାରଥୀ । ଏଥି ଅନ୍ତରେ ଯେଉଁ କଥା ।
ସେ ଜଳନ୍ଧର ନାମେ ବୀର । ଶିବ ସଙ୍ଗତେ ଯୁଦ୍ଧ ତାର ।
ବାଣକୁ ବାଣ ଯୁଦ୍ଧ କଲା । ଡର ଅସୁର ରଣେ କଲା ।।
ଏମନ୍ତେ ହିନ୍ଦୁଳଜା ସୁତ । ଯୁଦ୍ଧେ ଦେଖିଲେ ବିପରୀତ ।।
ପରମ ସୁଖ ପାଇ ରଣେ । ନୃତ୍ୟ କରନ୍ତି କ୍ଷଣେ କ୍ଷଣେ ।
ତା ଦେଖି ସାଗର ତନୟ । ମନରେ ଉପୁଜିଲା ଭୟ ।
ବସୁର କଲା ହୃଦ ମଧ୍ୟେ । ଏହାକୁ କେ ଜିଣିବ ଯୁଦ୍ଧେ ।
ଶମ୍ଭୁକୁ ଭୟ ନାହିଁ କିଛି । ସମରେ ନୃତ୍ୟ କରୁଅଛି ।

ଏଣୁ ଅଜେୟ ଶୂଳପାଣି । ମୟା ନ କଲେ ନୋହେ ଜିଣି ॥
ଏତେ କହିଣ दैत्य ରାୟ । ମାୟାରେ ରଚିଲ ଉପାୟ ॥
ସମର ଗୃହ ବେଗେ ଗଲ । ଘଡ଼ିକେ ବାହୁଡ଼ି ଆଇଲ ॥
ପାର୍ବତୀ ରୂପ ପ୍ରାୟେ କରି । ରଥେ ବସାଇ ଏକ ନାରୀ ॥
ପ୍ରବେଶ ହେଲ ଆସି ରଣେ । ଦେଖନ୍ତି ସର୍ବ ଶିବଗଣେ ॥
ରଥେ ବସାଇ ଦୈତ୍ୟ ନାରୀ । ବାନ୍ଧନ୍ତି ପାଦ ଟାଣି ଧରି ॥
ତୁମ୍ଭେ ନମୁ କେନ ଭାଇ । ତାଙ୍କ ଗୋଚରେ ଦେଲ ନେଇ ॥
ସେ ମହା ଯୁବତୀକ ଧରି । କୋପେ ସୁପୋତେ ମୁଖେ ମାରି ॥
ଭର୍ତ୍ସନା କରି ଦୈନ୍ୟ ଗାଳି । ବଚନେ କାନ୍ଦୁଅଛି ବାଳୀ ॥
ମତ୍ତ କୋକିଳ ପ୍ରାୟେ ବାଣୀ । ବୋଲଇ ରଖ ଶୂଳପାଣି ॥
ହେ ରୁଦ୍ରଗଣେ ଗଣେତ । ତୁମ୍ଭେ ଦେଖନ୍ତେ ଏତେ ଶାସ୍ତି ॥
ହେ ମୋର ପୁତ୍ର ଚତୁର୍ମୁଖ । ତୁ ଦେଖୁଅଛୁ ଏତେ ଦୁଃଖ ॥
ନନ୍ଦୀଭୃଙ୍ଗୀରେ ମହାକାଳ । ଧିକ ତ ହେଉ ତୁମ୍ଭ ବଳ ॥
ଅସୁର ଧରି ଆଣି ବେଗେ । ଦଣ୍ଡ ଦେଉଛି ତୁମ୍ଭ ଆଗେ ॥
ଏହା ଯେ ସୃଜିଥିଲ ମୂର୍ତ୍ତି । ଈଶ୍ୱର ପ୍ରାୟେ ପତି ପାଇ ॥
ହେ ପ୍ରଭୁ ତ୍ରୈଲୋକ୍ୟର ନାହା । କେମନ୍ତେ ସହୁଅଛ ତାହା ॥
ଅସୁର ଗଞ୍ଜୁଅଛି ମୋତେ । ତୁମ୍ଭେ ଜାଣିଛ କି ମନରେ ॥
ପାରିଲେ ମୋତେ ରକ୍ଷାକର । ନୋହିଲେ ରଣୁ ଅପସର ॥
ଏମନ୍ତ ବୋଲି ବାଳୀ କାନ୍ଦେ । ଈଶ୍ୱର ବଳ ଧୈର୍ଯ୍ୟ ଛନ୍ଦେ ॥
ଶୁଣି ସକଳ ଶିବଗଣେ । ଛତ୍ରଭଙ୍ଗ ହେଲେ ଜଣେ ଜଣେ ॥
ଙ୍କେ ସହ୍ୟ ନ ପାରନ୍ତି ଧରି । ଅସୁରେ ରୁଦ୍ର ପାଞ୍ଚ ମାରି ॥
ଶିବ ଯେ ସର୍ବ ଅପମାନେ । ବହୁତ ଦୁଃଖ ଜାତ ମନେ ॥
ନିଜ ଧୈର୍ଯ୍ୟ ନିନ୍ଦା କରି । ଅଧୋବଦନେ ତ୍ରିପୁରାରି ॥
ହୋଇଲେ ଧରଣୀକ ଦୃଷ୍ଟି । କ କର୍ମ କଲ ଆଣି ସୃଷ୍ଟି ॥

ଏଡ଼େ ବିବାଦ ଯେଉଁ ଅର୍ଥେ । ସେ ତ ପଡ଼ିଲା ଶତ୍ରୁ ହାତେ ॥
କର୍ମା ହୋଇଲା ଏତେ କର୍ମ । ସତ ଯେ ଗୁରଯୁଗେ ଧର୍ମ ॥
ଅସୁରେ କଲେ କେଉଁ ତପ । ପାର୍ବତୀ ଅଙ୍ଗେ ନାହିଁ ପାପ ॥
ତେବେ ପାର୍ବତୀ ହେଉ ପାର । ଯେ ତାକୁ ଦଣ୍ଡ ଅଛୁ ଧର ॥
ସେ ଶମ୍ଭୁ ନଶମ୍ଭୁ ରାକ୍ଷସେ । ମରନ୍ତୁ ଗଉରୀ ଧକାଶେ ॥
ଏମନ୍ତ ବୋଲି ଶାପ ଦେଲ । ପୁଣି ଚନ୍ଦ୍ରେଲ ଉମାସାଇଁ ॥
ଏ ସବୁ ମିଥ୍ୟା ହେବ ତବ । ଯେ ଅଗ୍ନି କାନ୍ତ ଉଗ୍ରତାର ॥
ତାଙ୍କୁ ଛୁଇଁବ କାହିଁ ଦୈତ୍ୟ । ଏମନ୍ତ ବୋଲି କଲେ ନୃତ୍ୟ ॥
ତା ଦେଖି ଦୈତ୍ୟ ଜଳନ୍ଧର । ବିନ୍ଧିଲା କୋଟି କୋଟି ଶର ॥
ବରଷାକାଳେ ଯେହ୍ନେ ଜଳ । ବୃଷ୍ଟି କରନ୍ତି ମେଘମାଳ ॥
ସେହି ପ୍ରକାରେ ସିନ୍ଧୁ ସୁତ । ବାଣ ବିନ୍ଧିଲା ଅପ୍ରମିତ ॥
ଈଶ୍ୱର ଅଙ୍ଗେ ବାଣ ପଡ଼ି । ଯେସନେ ପର୍ବତେ କୁହୁଡ଼ି ॥
ଶରେ ଶରୀର ହେଲା ଗୋପ୍ୟ । ତା ଦେଖି ଶିବ କଲେ କୋପ ॥
ରୁଦ୍ର ସ୍ୱରୂପେ ଶୂଳପାଣି । ଜ୍ୟୋତି ଯୁଗାନ୍ତ ଅଗ୍ନି ଜାଣି ॥
ନିର୍ଦ୍ଦୟେ ବିଜେକଲେ ଯୁଦ୍ଧେ । ଯେହ୍ନେ ମନ୍ଦର ସିନ୍ଧୁ ମଧ୍ୟେ ॥
ସେହି ପ୍ରକାରେ ଅନ୍ଧକାରି । ଶମ୍ଭୁ ମନ୍ଥନେ ଶୂଳ ଧରି ॥
ମାରନ୍ତି ଅସୁର ସଇନ୍ୟ । ଯେସନେ ବତାସେ ରମ୍ଭାବନ ॥
କେତି ପଡ଼ନ୍ତି ଭୂମିଗତେ । ଯେହ୍ନେ ଈଶ୍ୱର ଶୂଳ ଘାତେ ॥
ପଡ଼ିଲେ ଅନେକ ଅସୁର । ତା ଦେଖି କୋପେ ଜଳନ୍ଧର ॥
ବିନ୍ଧଇ ଅସଂଖ୍ୟକ ବାଣ । ଅଗ୍ନି କୁଣ୍ଡକୁ ଯେହ୍ନେ ତୃଣ ॥
ଅସୁର ଶର ସେହି ରୂପେ । ଦଗ୍ଧ ହୋଇଲା ରୁଦ୍ରତାପେ ॥
ମହାବୃଷଭ ଆଘାତେ । ଦୈତ୍ୟ ପଡ଼ନ୍ତି ପଦାଘାତେ ॥
ଅସ୍ଥି ମାଉଁସ ମିଶି ଦଳି । ରୁଦ୍ର ତେଜରେ ଯାନ୍ତି ଜଳି ॥
ତା ଦେଖି ନିଶାଚର ଥାଟ । ପଳାନ୍ତେ ନ ଦିଶଇ ବାଟ ॥

ଗଣେଷ୍ଟୁ ଦୈତ୍ୟମାନେ ଥିଲେ । ରାଜାଙ୍କୁ ଗୁଡ଼ ପଳାଇଲେ ॥
ସୈନ୍ୟ ଅଗ୍ରେ ଜଳନ୍ଧର । ଷଡ଼ିପୁ ଗୁଣେ ମହାବୀର ॥
ମରଣେ ଉପେକ୍ଷିଲା ଶଙ୍କା । ଯାଉ ବରଧି ରଣଢଙ୍କା ॥
ପଟେଷ ଯେନ ପରଚଣ୍ଡେ । ପିଟିଲା ରୁଦ୍ର ରଥେ ଗୁଣ୍ଡେ ॥
ଧ୍ୱନି ଶୁଭିଲା ଘଡ଼ଘଡ଼ । ବୃଷଭ ମୂର୍ଚ୍ଛାଯାଇ ପଡ଼ ॥
ବାହନ ଅଗ୍ରେ ଈଶ୍ୱର । ହେଲେ ଅତ୍ୟନ୍ତ କ୍ରୋଧଭର ॥
ବସ୍ତୁ ଆୟୁଧ ସୁଦର୍ଶନ । କରେ ଧଇଲେ ତ୍ରିଲୋଚନ ॥
ଦଶ ମୁହଁଟି ଯେ ପ୍ରକାଶି । କାଳ ପୁରୁଷ ପ୍ରାୟେ ଦିଶି ॥
ସ୍ୱଭାବେ ଅନନ୍ତ ପୁରୁଷ । ଅସ୍ତ୍ର ସଂହାରେ ବଶୁବାସ ॥
ତାର ଶ୍ରୀକରେ ବସ୍ତୁ ବାଣ । ତଶେଷ ଦେବଙ୍କ ଜୀରଣ ॥
ସେ ଚକ୍ର ଚଣ୍ଡ କରେ କୋଟି । ତେଜେ ବ୍ରହ୍ମାଣ୍ଡ ଖଣ୍ଡ ଯୋଟି ॥
ଦୈତ୍ୟ ନାଶନେ ଦେବ କାଶୀ । ଚକ୍ରକୁ ପେଷିଲେ ଆକର୍ଷି ॥
ଶବଦ କଲା ଦଶ ଦିଗେ । କମ୍ପିଲେ ଧରଣୀ ଆକାଶେ ॥
ପ୍ରଖର ଜ୍ୟୋତି ତାର ଦେଖି । ଦୈତ୍ୟ ବୁଜିଲେ ବେନି ଆଖି ॥
ଚକ୍ର ପଡ଼ିଲା ବକ୍ଷସ୍ଥଳେ । ଯେହ୍ନେ ତଡ଼କ ଗିରିମାନେ ॥
ତେହ୍ନେ ଶବଦ ପରଚଣ୍ଡ । ଛିଣ୍ଡିଲା ଜଳନ୍ଧର ମୁଣ୍ଡ ॥
ଶିର ଶରୀର ଏକାନ୍ତବଳେ । ରଥୁ ପଡ଼ିଲା ଟଳ ତଳେ ॥
ଧ୍ୱନି ଶୁଭିଲା ତିନିପୁରେ । ଚକ୍ର ମିଳିଲା ହର କରେ ॥
ଅସୁର ମୁଣ୍ଡ ତଳେ ପଡ଼ । ଓଷ୍ଠ ଅଳପ ଦନ୍ତ ଭିଡ଼ ॥
ନୟନେ ଗ୍ରହିଁଲ ଚଉଠି । ଦେଖିଲା ଶିବ ରୂପ ଗୋଟି ॥
ତାର ଶରୀର ଜ୍ୟୋତି ଲଗେ । ପଶିଲା ଯାଇ ରୁଦ୍ର ଅଙ୍ଗେ ॥
ଯେ ତାଙ୍କ ନାରୀ ବୃନ୍ଦାବତୀ । ଅଗ୍ନିରେ ଝାସିଥିଲା ସତୀ ॥
ତା ଆତ୍ମା ଅନ୍ତରୀକ୍ଷେ ଥିଲା । ଗଉରୀ ଅଙ୍ଗେ ସମ୍ଭାଇଲା ॥
ଦେଖନ୍ତି ସର୍ବ ଦେବତାଏ । ଶୂନ୍ୟେ ଶୁଭିଲା ଜୟେ ଜୟେ ॥

ବ୍ରହ୍ମା ସହିତେ ସୁରସୂନ । ବିଶେଷ ପୂଜାବିଧି ଘେନ ॥
ଆସି ମିଳିଲେ ଶିବ ପାଶେ । ଜୟ ମଙ୍ଗଳ ନାଦ ଘୋଷେ ॥
ବିବିଧ ଉପହାର ଦ୍ରବ୍ୟ । ଶିବଙ୍କୁ ସମର୍ପିଲେ ସର୍ବ ॥
ସ୍ନାନ କରାଇ ଗଙ୍ଗାମାରେ । ଅଙ୍ଗ ମଣ୍ଡିଲେ ଅଳଙ୍କାରେ ॥
ସୁସ୍ମ ଚନ୍ଦନ ଗନ୍ଧ ଧୂପ । ପଞ୍ଚ ଆଳତି ହୋମଦୀପ ॥
କପିଳା କ୍ଷୀରେ ଅର୍ଦ୍ଧ୍ୟଦେଇ । ଶିବଙ୍କୁ ସନ୍ତୋଷ କରାଇ ॥
ସ୍ତୁତି କରନ୍ତି ଦେବଲୋକ । ବୋଲନ୍ତି ନମୋ ତ୍ରିଅମ୍ବକ ॥
ନମୋ ଈଶ୍ୱର ନମୋ ଶିବ । ତୁ ଦେବ ଦେବ ମହାଦେବ ॥
ସର୍ବ ଦେବଙ୍କ ଶିରୋମଣି । ନମୋ ଶଙ୍କର ଶୂଳପାଣି ॥
ତୁ ଦେବ ଆଦ୍ୟ ମହେଶ୍ୱର । ବୃଷଭ ଧ୍ୱଜ ସର୍ବେଶ୍ୱର ॥
ଅଖିଳ ବ୍ରହ୍ମାଣ୍ଡର ପତି । ତୋତେ ଭଜନ୍ତି ସିଦ୍ଧଯତି ॥
ନମସ୍ତେ ଦେବ ପଶୁପତି । ତୁ ଦେବ ଏକା ଅଷ୍ଟମୂର୍ତ୍ତି ॥
ତୋର ଚରଣେ ଯୋଗୀଜନେ । ଶଙ୍କା ଉପେକ୍ଷି ଘୋରବନେ ॥
ଆନନ୍ଦ କାଳ କାମ ନାଶି । ଜନ୍ମ ମରଣ ଦୁଃଖ ଧ୍ୱଂସି ॥
ସେ ଭସ୍ମ ରେଣୁ ଅଙ୍ଗେ ମାଖି । ଆତ୍ମାକୁ କରୁଥାନ୍ତି ସୁଖୀ ॥
ଏବେ ତୋ ବିଭୂତି ସମ୍ପଦ । ଜ୍ଞାନୀଙ୍କ ଜ୍ଞାନର ପ୍ରମୋଦ ॥
ଅଜ୍ଞାନୀ ଜନଙ୍କୁ ତୋ ଭାବ । କେବେହେଁ ନୁହଇ ସୁଲଭ ॥
ପାଷାଣ୍ଡେ ତୋର ମାର୍ଗ ଭୁଲି । ସଂସାରେ ମରୁଥାନ୍ତି ବୁଲି ॥
ତୋର ବିଭୂତି ଘେନ ଭ୍ରାନ୍ତ । ସିଦ୍ଧ ନ ପ୍ରାପ୍ତେ ନାଶ ଯାନ୍ତି ॥
ଏ ଦୈତ୍ୟ ସାଗର ତନୟ । ଆମ୍ଭଙ୍କୁ କାଳଦଣ୍ଡ ପ୍ରାୟ ॥
ଦେବଙ୍କୁ ଦେଲା ଯେତେ ଦୁଃଖ । ତୋତେ ନ ଚହ୍ନି ମହାମୂର୍ଖ ॥
ତୋର ଶ୍ରୀକରେ ପ୍ରାଣ ଦେଲା । ତେଣେ ଜଗତ ଦୁଃଖ ଗଲା ॥
ତୁ ଦେବ ଦେବ ଦୁର୍ଗପତି । ଖଣ୍ଡିଲୁ ଦେବଙ୍କ ବିପତ୍ତି ॥
ଏବେ ହୋଇଲୁ ଆମ୍ଭେ ସୁଖୀ । କେ ପାରେ ତୋ ମହିମା ଲେଖି ॥

କେବଳ ଶିବ ନାମ ତାର । ତନ୍ତ୍ରକେ ଦୁଃଖ ଯିବ ଦୂର ॥
ଯେ ଜନ ଦୃମଣ୍ଡଳ ଅନ୍ତେ । ସେ ଶିବଲୋକେ ଯିବ ଅନ୍ତେ ॥
ଏ କଥା ଅଟଇ ପ୍ରମାଣ । ଏବେ ଦୁର୍ଲଭ କଥା ଶୁଣ ॥
ବିଷ୍ଣୁ ଯେ ତବ ପ୍ରିୟା ହୁଅନ୍ତି । ଅସୁର ପୁରେ ମାୟାବନ୍ତେ ॥
ହରିଲେ ଜଳନ୍ଧର ନାରୀ । କପଟେ ଦୈତ୍ୟ ରୂପ ଧରି ॥
ତା ସତିବ୍ରତ କରି ନାଶ । ପୁଣି ଧଇଲେ ନିଜ ବେଶ ॥
ସେ ରୂପ ଦେଖି ବୃନ୍ଦାବତୀ । ବିଷ୍ଣୁଙ୍କୁ ଶାପ ଦେଇ ସତୀ ॥
ଆପେ ଅନଳେ ଦେଲା ଝାସ । ତା ଦେଖି ଅନାଦି ପୁରୁଷ ॥
ବିଷାଦେ ଭୂମିଭୂତ ହୋଇ । ବଦେଶ ସ୍ଥାନେ ଛନ୍ତି ରହି ॥
ଏ ବଡ଼ ଦୁଃସହ ପ୍ରମାଦ । କେମନ୍ତେ ଖଣ୍ଡିବ ବିଷାଦ ॥
ଅମ୍ଭେ ନ ଜାଣୁ ସୁରମୁନି । ତୁମ୍ଭେ ଯେ ଏକ ଆତ୍ମା ବେନି ॥
କହ ଏଥିକୁ ଉପଦେଶ । ବିଷ୍ଣୁ କେମନ୍ତେ ହେବେ ତୋଷ ॥
ମନୁ ସନ୍ତାପ ଉପେକ୍ଷିବେ । ସନ୍ତୋଷେ ନିଜ ପୁରେ ଯିବେ ॥
ଏଥିକୁ କହିବା ଉପାୟେ । ଏମନ୍ତ ବୋଲି ଦେବତାଏ ॥
ନମିଲେ ଈଶ୍ୱର ଚରଣେ । ଅଶେଷ ବ୍ରହ୍ମାଣ୍ଡ କାରଣେ ॥
ଏମନ୍ତ ଦେବଙ୍କ ବଚନେ । ଶ୍ରୀ ମହାଦେବ ସୁପ୍ରସନ୍ନେ ॥
ବୋଇଲେ ଶୁଣ ସର୍ବ ଦେବେ । ବିଷ୍ଣୁ ବିସୁସ୍ତମନା ଯେବେ ॥
କେ ତାଙ୍କୁ ପାରିବ ପ୍ରବୋଧି । ମୋଠାରେ ତ ନ ଦିଶଇ ବୁଦ୍ଧି ॥
ଯୋଗ ମାୟାଦି ମହାମାୟେ । ସେ ଅବା ଜାଣିବେ ଉପାୟେ ॥
ତୁମ୍ଭେ ତାହାଙ୍କୁ କର ସ୍ତୁତି । ଖଣ୍ଡିବେ ସେ ତୁମ୍ଭ ଦୁର୍ଗତି ॥
ଏମନ୍ତ କହି ଉପଦେଶ । ହର ଗମିଲେ କପିଳାସ ॥
ସକଳ ଶିବଗଣ ଙ୍କୁଳେ । ନିଜ ଭୁବନେ ବିଜେ କଲେ ॥
ଗଙ୍ଗା ଈଶ୍ୱର ଅଛନ୍ତି । ଦର୍ଶନେ ସୁଖ ଅବା କେତେ ॥
ଜାଣନ୍ତି ଅବା ବେନି ଜନେ । କେ ତାହା କହିବ ବଚନେ ॥

ଏଥୁ ଅନ୍ତରେ ଶୁଣ ସପ୍ରେ । ଶିବ ଆଜ୍ଞାରେ ଦେବତାଏ ॥
ଜାହ୍ନବୀ ଜଳେ ସ୍ନାନ କରି । ଯୋଗମାୟାଙ୍କୁ ସ୍ତୁତି କରି ॥
ମହା ଶୂନ୍ୟକୁ ଦୃଷ୍ଟି ସ୍ଥିରେ । କରି ଅଞ୍ଜଳି ନିଜ ଶିରେ ॥
ସର୍ବ ବଦନେ ଏକ ସ୍ତୁତି । ବୋଲନ୍ତି ନମୋ ଆଦିଶକ୍ତି ॥
ନମୋ ତ୍ରିପୁର ମହାକାୟେ । ତ୍ରିଗୁଣ ଲକ୍ଷଣ ଉପାୟେ ॥
ମନ ମୋହିନୀ ମହାମାୟା । ତଣ୍ଟ ସନ୍ଦବ ବଣ୍ଟ ଛାୟା ॥
ବିଶ୍ୱ ସଂସାରେ ଅଧିକାରୀ । ସର୍ବ ସ୍ୱରୂପୀ ସିଦ୍ଧେଶ୍ୱରୀ ॥
ସର୍ବ ମଙ୍ଗଳ ନାମ ବହୁ । ଅଶ୍ରିତ ଜନ ଦୁଃଖ ଦହୁ ॥
ଆମ୍ଭେ ତୋହର ନିଜ ଭୃତ୍ୟ । ପ୍ରସନ୍ନ ହୁଅ ଆଦ୍ୟମାତ ॥
ଏମନ୍ତ ସ୍ତୁତି କେବେ ଭଣି । ସେ ଯୋଗମାୟା ଯୋଗେ ଜାଣି ॥
ଆକାଶେ ହୋଇଲେ ଉଦୟ । ଜାଜ୍ୱଲ୍ୟ ତେଜ ଜ୍ୟୋତିର୍ମୟ ॥
ଯେସନେ ନିର୍ଧୂମ ଅନଳ । ବିରାଜେ ଗଗନ ମଣ୍ଡଳ ॥
ଦେଖନ୍ତି ସର୍ବ ଦେବଗଣ । ଆକାଶେ ଉଜ୍ଜୁଳେ କିରଣ ॥
ତେଜ ବିକାଶେ ଦଶଦିଶେ । ରବି ମଣ୍ଡଳେ ଅଗ୍ନି କି ସେ ॥
ତେମନ୍ତ ବିରାଜଇ ପ୍ରଭା । ଯେତେହେଁ ସୁନ୍ଦର ଦେହ ଆଭା ॥
ସେହି ସ୍ୱରୂପେ ମହାମାୟେ । ବୋଲନ୍ତି ଶୁଣ ଦେବତାଏ ॥
ମୁହିଁ ଜାଣିଲି ତୁମ୍ଭ ମନ । ଯେତେଣ ସନ୍ତୋଷ ଭଗବାନ ॥
ଏକଥା କହିବା ବିସ୍ତରି । ସଂସାରେ ତିନିରୂପ ଧରି ॥
ଏମନ୍ତ କହି ମହାଦେବୀ । ଅନ୍ତର ବଦ୍ଦ୍ୟିକ ପ୍ରାପ୍ତ ହୋଇ ॥
ଗଗନେ ହୋଇଲେ ଅଦୃଶ୍ୟ । ପୁଣି ଭୂମିରେ ପରବେଶ ॥
ମିଳିଲେ ତିନିରୂପ ଧରି । ନାମ ଶାରଦା ଶିଖିଗୌରୀ ॥
ଶ୍ୱେତ କୁସୁମ କୃଷ୍ଣ କାନ୍ତି । ତ୍ରିଲୋକ ମୋହନ ତ୍ରିମୂର୍ତ୍ତି ॥
ଦେବଙ୍କ ଆଗେ ଉଭା ହୋଇ । ବୃକ୍ଷର ବୀଜ ତାଙ୍କୁ ଦେଇ ॥
ତିନିହେଁ ଦେଲେ ତିନି ମୁଷ୍ଟି । ବୋଇଲେ ଏତେ କଷ୍ଟ ତୁଷ୍ଟି ॥

ତାଙ୍କ ସନ୍ନିଧେ ନେଇ ବୁଣ । ସନ୍ତୋଷ ହେବେ ନାରାୟଣ ॥
ଏ ବୀଜୁଁ ହେବ ଯେଉଁ ବୃକ୍ଷ । ତେଣୁ ସଂସାର ଜନେ ମୋକ୍ଷ ॥
ଦେବଙ୍କ ମଙ୍ଗଳ ନିମନ୍ତେ । ଏ ବନସ୍ପତି ତ୍ରିଜଗତେ ॥
ହୋଇବ ସର୍ବ କାମ ସିଦ୍ଧି । ଏବେ ବିଷ୍ଣୁଙ୍କୁ ଏଣେ ବୋଧି ॥
ଏମନ୍ତ କହି ଶୁଭ୍ରକେଶୀ । ଗଲେ ସେ ଅନ୍ତରୀକ୍ଷେ ମିଶି ॥
ତହୁଁ ସକଳ ସୁରମୁନି । ତ୍ରିବନସ୍ପତି ବୀଜ ନେନି ॥
ଚଳିଲେ ନାରାୟଣ ପାଶେ । ସେ ସଙ୍ଗେ ମହାଦେବ ବାସେ ॥
ସର୍ବ ଦେବଙ୍କ ସଙ୍ଗେ ଥିଲା । ବିଷ୍ଣୁ ଦର୍ଶନେ ନୟିଲା ॥

ଇତି ଶ୍ରୀ ପଦ୍ମପୁରାଣେ ଉତ୍ତରଖଣ୍ଡେ କାର୍ତ୍ତିକ ମାହାତ୍ମ୍ୟେ
ଜଳନ୍ଧର ବଧେ ନାମ ଚତୁର୍ଦ୍ଦଶୋଽଧ୍ୟାୟଃ ।

---

## ପଞ୍ଚଦଶ ଅଧ୍ୟାୟ

### ନାରଦ ଉବାଚ

କ୍ଷିପ୍ତେଭ୍ୟସ୍ତସ୍ୟ ବୀଜେଭ୍ୟୋ ବନସ୍ପତ୍ୟୋଽଭବନ୍
ଧାତ୍ରୀ ଚ ମାଳତୀ ଚୈବ ତୁଳସୀ ଚ ନୃପୋତ୍ତମ ॥

ମୁନି ବୋଲନ୍ତି ରାଜେନ୍ଦ୍ର ଶୁଣ । ବିଷ୍ଣୁ ସମୀପେ ଦେବଗଣ ॥
ତିନି ଦେବୀଙ୍କ ତିନି ଲଞ୍ଜି । ବୁଣିଲେ ବିଷ୍ଣୁ ମନ ରଞ୍ଜି ॥
ଶୀତଳ ଜଳ ବୃଷ୍ଟି କରି । ଦେବେ ଚଳିଲେ ଯେଝାପୁରୀ ॥
ଏଥି ଉତ୍ତାରୁ ବିଷ୍ଣୁ ସ୍ଥାନେ । ବୃକ୍ଷ ଅଙ୍କୁରେ ପଞ୍ଚଦିନେ ॥
ଅପୂର୍ବ ଶୋଭା ତିନି ଦ୍ରୁମ । ଏବେ କହିବା ତାଙ୍କ ନାମ ॥
ଶୁଣ ରାଜନ ଦିବ୍ୟଜ୍ଞାନେ । ସେ ବୃକ୍ଷ ତ୍ରିଗୁଣ ବିଧାନେ ॥
ଯେ ଦେବୀ ଅଂଶେ ଯେଉଁ ଗୁଣ । ବୃକ୍ଷ ବିଧାନେ ତାହା ଶୁଣ ॥
ରଜୋ ଗୁଣରେ ସରସ୍ୱତୀ । ତା ଅଂଶେ ଧାତ୍ରୀ ଉତପତ୍ତି ॥
ତୁଳସୀ ସତ୍ତ୍ୱଗୁଣେ ଜାତ । ଗଉରୀ ଅଂଶରେ ଉଦିତ ॥

ରଜ ଅଂଶରେ ତମୋଗୁଣେ । ମାଳତୀ ଉପୁଜିଲା ବନେ ॥
ଏମନ୍ତେ ତିନି ବୃକ୍ଷ ଶୋଭା । ଏକୁ ଅନେକ ମୂର୍ତ୍ତି ପ୍ରଭା ॥
ବିଷ୍ଣୁ ସନ୍ନିଧେ ବନପ୍ରାନ୍ତ । ଅତେବ ଶୋଭି ସେ ଦିଶନ୍ତ ॥
ଯେବଣ ବୃକ୍ଷ ଯେଉଁ ରୂପ । ତାହା କହିବା ଶୁଣ ନୃପ ॥
ଧାତ୍ରୀ ଯେ ଅଂଶେ ସରସ୍ୱତୀ । ଶୁକଳ ବର୍ଣ୍ଣ ତାର ଜ୍ୟୋତି ॥
ବର୍ତ୍ତୁଳ ଫଳ ଛିଦ୍ର ପତ୍ର । ସେହେତୁ ବରୁଣ ଦଣ୍ଡଛତ୍ର ॥
ତେମନ୍ତେ ଦିଶେ ତରୁ ଶୋଭା । ଦେଖି ଗୋବିନ୍ଦ ମନ ଲୋଭା ॥
ରଜସ ଅଂଶେ ବୃନ୍ଦାବତୀ । ତୁଳସୀ ବୃକ୍ଷ ଉତପତ୍ତି ॥
ସାତ୍ତ୍ୱିକ ଗୁଣ କରି ଧ୍ୟାନ । ରୂପ ହୋଇଲା କୃଷ୍ଣବର୍ଣ୍ଣ ॥
ତା ଦଳ ଦୁର୍ଲ୍ଲଭ ମଞ୍ଜରୀ । ସୁବାସେ ବିଷ୍ଣୁ ମନ ହରି ॥
ତା ଦେଖି ଲକ୍ଷ୍ମୀ ତମ ଅଂଶେ । ମାଳତୀ ଫୁଲ ରୂପେ ବାସେ ॥
ଉଭଏ ରହି ନ ପାରିଲା । ଅନ୍ୟ ସ୍ଥାନରେ ଆଉଜିଲା ॥
ଏମନ୍ତେ ଯୋଗମାୟା ବଳେ । ତ୍ରିବିଧ ରୂପ ମହୀ ତଳେ ॥
ବିଷ୍ଣୁ ସମୀପେ ବୃକ୍ଷ ତିନି । ଯେ ଯାହା ଗୁଣମାନ ଘେନି ॥
ଏକୁ ଆରେକ ଶୋଭା ଦ୍ରୁମ । ନବ ପଲ୍ଲବ ମନୋରମ ॥
ସୁଗନ୍ଧ ସୁଶୀତଳ ବାୟୁ । ଉଲ୍ଲାସ କଲେ ବିଷ୍ଣୁ କାୟୁ ॥
ବିଷ୍ଣୁ ଯେ ଭ୍ରାନ୍ତିଭୂତ ହୋଇ । ବୃନ୍ଦା ରୂପକୁ ଥିଲେ ଧ୍ୟାଇ ॥
ଅପୂର୍ବ ବନପ୍ରାନ୍ତ ଦେଖି । ହରି ମନରେ ହେଲେ ସୁଖୀ ॥
ତକ୍ଷଣେ ଦିବ୍ୟରୂପ ଧରି । ରହିବା ଠାରୁ ଅବତରି ॥
ଧାତ୍ରୀ ତୁଳସୀ ବୃକ୍ଷ ବେନି । ତାହାଙ୍କୁ ସଙ୍ଗତରେ ଘେନି ॥
ବୈକୁଣ୍ଠେ ଗଲେ ଲକ୍ଷ୍ମୀପତି । ଅରଣ୍ୟେ ରହିଲେ ମାଳତୀ ॥
ବିଷ୍ଣୁ ଆଗମ ଅନୁସରି । ମାଳତୀ ବନେ ବାସ କରି ॥
ଏବେ ହୋ ଶୁଣ ନରପତି । ଧାତ୍ରୀ ତୁଳସୀ ବନପ୍ରାନ୍ତ ॥
ସେ ବେନି ବୃକ୍ଷଙ୍କ ମହିମା । କହିବା ଶୁଣ ପୁଣ୍ୟତମ ॥

ବିଷ୍ଣୁ ଯେ ସଙ୍ଗେ ଘେନି ଗଲେ । ବୈକୁଣ୍ଠ ଭୁବନେ ମିଳିଲେ ॥
ତା ଦେଖି ବ୍ରହ୍ମା ଆଦି ଦେବେ । ଶିବ ସହିତେ ମିଳି ସର୍ବେ ॥
ଲକ୍ଷ୍ମୀ ଯେ ସିନ୍ଧୁ ଦେଶେ ଥିଲେ । ତାଙ୍କ ସମ୍ମୁଖକୁ ସର୍ବେ ଗଲେ ॥
ସକଳ ଦେବସ୍ତ୍ରିଏ ମିଳି । ଲକ୍ଷ୍ମୀଙ୍କି କଲେ ନିଜସ୍ତୁତି ॥
ଯୋଗମାୟାକୁ ସ୍ତୁତି କରି । ବୃନ୍ଦାକୁ ଆଣିଲେ ଉଦ୍ଧରି ॥
କମଳଧ୍ୱଜ ରଥ ନେଇ । ଲକ୍ଷ୍ମୀଙ୍କି ସେ ଯାନେ ବସାଇ ॥
ସକଳ ଦେବଗଣେ ଭୁଟିଲେ । ବୈକୁଣ୍ଠ ଭୁବନକୁ ଗଲେ ॥
ବିଷ୍ଣୁଙ୍କୁ କଲେ ଦରଶନ । ସନ୍ତୋଷ ଦେଖି ପ୍ରଭୁ ମନ ॥
ଆନନ୍ଦ ସବୁଙ୍କର ଚିତ୍ତ । ନମିଲେ ପ୍ରଭୁ ପାଦଗତ ॥
ଲକ୍ଷ୍ମୀଙ୍କି ବିଷ୍ଣୁ କୋଳେ ଦେଇ । ଦର୍ଶନେ କୃତକୃତ୍ୟ ହୋଇ ॥
ସନ୍ତୋଷ ହୋଇ ନାରାୟଣ । ବୋଲନ୍ତି ଶୁଣ ଦେବଗଣ ॥
ଆମ୍ଭେ ଯେ ତୁମ୍ଭ ଉପକାରେ । ରହିଲୁ ଜଳନ୍ଧର ପୁରେ ॥
ସେ ଦୁଷ୍ଟ ନାଶ ଯିବ ଯେଣେ । ଆମ୍ଭେ ପ୍ରବେଶ ହେଲୁ ତେଣେ ॥
ତାର ଘରଣୀ ବୃନ୍ଦାବତୀ । ସର୍ବ ଲକ୍ଷଣୀ ସାଧ୍ୱୀ ସତୀ ॥
ତାର ସ୍ୱଧର୍ମ ଫଳ ଘେନ । ଦୈତ୍ୟ ଜିଣିଲା ପୁର ତିନ ॥
ଆମ୍ଭେ ତା ଜାଣି ହେଲୁ ଚୋଷ । ତା ସତ୍ତ୍ୱବ୍ରତ କଲୁ ନାଶ ॥
ମାୟାରେ ଦୁଃଖ ଦେଲୁଁ ଯେତେ । ସେ ଧର୍ମ ନୋହେ କଦାଚିତେ ॥
ତେଣୁ ଆମ୍ଭର ମନ ମୋହ । ପଞ୍ଚତ ପ୍ରାପ୍ତ ହେଲା ଦେହ ॥
ଆପେ ଆପଣା କର୍ମ ମାନ । ରହି ଯେ ଥିଲୁ ଦେହ ଘେନ ॥
ତୁମ୍ଭେ ସକଳେ ସୁର ଲୋକେ । ମୋ ଦୁଃଖ ଦେଖି ଗୁରୁଶୋକେ ॥
ଯୋଗମାୟାକୁ ସ୍ତୁତି କରି । ବୃନ୍ଦାକୁ ଆଣିଲ ଉଦ୍ଧରି ॥
ସେ ବୃନ୍ଦା ମୋର ଅପମାନେ । ଝାସି ଯେ ଥିଲା ହୁତାଶନେ ॥
ମୋର ଉପରେ ଦେଇ ଦୋଷ । ନିଜ ଶରୀର କରି ଧ୍ୱଂସ ॥
ତା ଆତ୍ମା ଅନ୍ତରୀକ୍ଷେ ଯାଇ । ତ୍ରିଗୁଣେ ତିନି [illegible] ହୋଇ ॥

ମନେ ଯେତେକ ଭମ କଲା । ସେ ଭାବ ଲକ୍ଷ୍ମୀଦେହେ ହେଲା ॥
ଯେ ତାର ରଜୋଗୁଣ ଭାବ । ଶାରଦା ଅଙ୍ଗେ ହେଲା ଠାବ ॥
ସାତ୍ତ୍ୱିକ ଭାବ ଯେତେ ହୋଇ । ଗଙ୍ଗା ଅଙ୍ଗରେ ସମ୍ଭାଇ ॥
ଏମନ୍ତ ଗୁଣେ ତିନିଭାଗେ । ଆତ୍ମା ଯେ ଥିଲା ତିନି ଅଙ୍ଗେ ॥
ସେ ପୁଣି ଯୋଗମାୟା ବଳେ । ଅଶେଷ ଜନ୍ମ ପୁଣ୍ୟ ଫଳେ ॥
ନିଜ ସ୍ୱରୂପ ଜାତ ହୋଇ । ମୋ ହୃଦେ ସ୍ୱବରକୁ ପାଇ ॥
ଯେଣୁ ତା ପର୍ବ ଦୋଷ ନାହିଁ । ତେଣୁ ମୁଁ ଅଙ୍ଗେ ଥିବ ବହି ॥
ସେ ତିନି ବୃକ୍ଷଙ୍କର ଗୁଣ । କହିବା ଏବେ ଏକେ ଶୁଣ ॥
ସେ ମୋର ଆତ୍ମା ସମ ଦ୍ୱିଜା । ପାଇବେ ସର୍ବ ଲୋକେ ପୂଜା ॥
ଯେବଣ ଜନ ତାଙ୍କୁ ଜାଣି । ମୋ ପୂଜାବିଧି ଯୋଗେ ଆଣି ॥
କରିବ ମୋତେ ସମର୍ପଣ । ସେ ଧର୍ମ ଏବେ ଏକେ ଶୁଣ ॥
ଯେ ବୃନ୍ଦାବତୀ ତିନି ମୂର୍ତ୍ତି । ମୋ ଅର୍ଥେ ହେଲା ବନସ୍ପତି ॥
ମୁଁ ତାଙ୍କୁ ରଖିଲି ଯେମନ୍ତେ । ସେ କଥା ଶୁଣ ଦଇବତେ ॥
ମାଳତୀ ଦେହେ ଭମ ଦେଖି । ବନେ ଅଇଲି ତାଙ୍କୁ ରଖି ॥
ସେ ଯେ ବନସ୍ତେ ଥିବେ ରହି । ମୁଁ ଯେବେ ନରଦେହ ବହି ॥
ଜାତ ହୋଇବି ଯଦୁକୁଳେ । ବନେ ବରଜ ସୁତ ମେଳେ ॥
ବିହାର କରିବି ବିପିନେ । ମାଳତୀ ଲଭିବ ସେ ଦିନେ ॥
ଶିର ହୃଦରେ ମାଳ କରି । ମାଳତୀ ପୁଷ୍ପ ଥିବି ଧରି ॥
ଯେ ମୋତେ ଦେବ ସେ କୁସୁମ । ମାଳା ଗୋଟିକେ ଯଜ୍ଞଧର୍ମ ॥
ଅବଶ୍ୟ ଲଭିବ ସେ ଜନ । ବିଶେଷେ ଏକାଦଶୀ ଦିନ ॥
ଏବେ ତୁଳସୀ ଧର୍ମ ଶୁଣ । ସେ ବୃକ୍ଷ ସାତ୍ତ୍ୱିକ ଲକ୍ଷଣ ॥
ହୋଇବ ତ୍ରିଲୋକେ ପ୍ରସିଦ୍ଧି । ମୋର ସମାନେ ପୂଜାବିଧି ॥
ପାଇବ ସକଳ ଲୋକରେ । ବିଶେଷେ କାର୍ତ୍ତିକମାସରେ ॥
ତୁଳସୀ ଆରାଧିବ ଯେହୁ । ତାଙ୍କ ସୁକୃତ ଫଳ କହୁଁ ॥

ରୋପିଣ ପାଳିବ ଯତନେ । ପ୍ରତିଦିନକିଁ ଜଳଦାନେ ॥
ଏମନ୍ତ ଭାବେ ପୂଜା କରି । ଚତୁର ବଧ ପାପ ହରି ॥
ମନ ବଚନ କାୟ କୃତ୍ୟ । ଏମନ୍ତେ ପାପ ଥିବ ଯେତେ ॥
ପ୍ରଥମ ଦିନ ପିତ ନାଶ । ଦିନକୁ ଦିନ ପୁଣ୍ୟ ଯଶ ॥
ବଢ଼ିବ ବାଳଚନ୍ଦ୍ର ପ୍ରାୟ । ପୁଣି ନୋହିବ ଆଉ କ୍ଷୟ ॥
ଯେ ତାର ପତ୍ର ଘେନି ମୋତେ । ପୂଜା କରିବ ଶୁଦ୍ଧ ଚିତ୍ତେ ॥
ସକଳ ବ୍ରତ ତପ ଫଳେ । ତା ଅଙ୍ଗେ ରହିବ ନିଶ୍ଚଳେ ॥
ପାଳନେ ହବ ତୀର୍ଥ ଧର୍ମ । ଦର୍ଶନେ ସର୍ବ ଇଷ୍ଟ କାମ ॥
ଯେ ଜଳ ଦାନ ଦେବ ନିତ୍ୟ । ତୁଳାଦି ଦାନ ଫଳ ଯେତ ॥
ତାଙ୍କୁ ପ୍ରାପତ ଦିନେ ଦିନେ । ଭ୍ରମ ନୋହିବ ଭବବନେ ॥
ତୁଳସୀ ପ୍ରଦକ୍ଷିଣ କଲେ । କି ପୁଣ୍ୟ ଅନ୍ୟ ତୀର୍ଥେ ଗଲେ ॥
ଅଶେଷ କ୍ଷେତ୍ର ତୀର୍ଥ ଫଳ । କ୍ଷଣକେ ପାଇବ ସକଳ ॥
ବ୍ରହ୍ମହତ୍ୟାଦି ଯେତେ ଦୋଷ । ପଦ ପଦକେ ଯିବ ନାଶ ॥
ସ୍ପୃଜନେ ସର୍ବ ଦଣ୍ଡ ବିଧି । ପ୍ରାପତ ହେବ ଫଳ ସିଦ୍ଧି ॥
ପ୍ରଣାମ ଯେ କରିବ ଆଗେ । ତା ସର୍ବ ପାପ ଭୂମି ଭାଗେ ॥
ତକ୍ଷଣେ ଶାପ ହେବ ନାଶ । ତା ଅଙ୍ଗେ ପୁଣ୍ୟ ପରବେଶ ॥
ଶୁଣ ସକଳ ସୁରଲୋକେ । ଯେ ଜଳ ତୁଳସୀ ପାଳକେ ॥
ତଳର ହସ୍ତ ବିଧିମତେ । ଲେପନ କରୁଥିବ ନିତ୍ୟେ ॥
ତହିଁର ହେବ ଯେତେ ପୀଢ଼ । ଜାଣିବ ତେତେ ଉହ୍ନୂଢ଼ ॥
ତେତେ ଭୁବନ ଉର୍ଦ୍ଧ୍ୱେ ଆସି । ମେର ସମୀପେ ଥିବ ବସି ॥
ମୃତ୍ତିକ ହେବ ଯେତେ ରେଣୁ । ତେତେ ସଂଖ୍ୟାରେ ଯୁଗ ଗଣୁ ॥
ମେର ମଧ୍ୟରେ ଥିବ ସୁଖେ । ତଦନ୍ତେ ନ ପଡ଼ିବ ଦୁଃଖେ ॥
ସନ୍ଧ୍ୟା ସମୟେ ଯେଉଁ ଜନ । ତୁଳସୀ ମୂଳେ ଧୂପ ଦାନ ॥
ଶ୍ରଦ୍ଧାରେ ବସାଇବ ନିତ । ଅଗ୍ନି ପର୍ଯ୍ୟନ୍ତେ ତାର ଜ୍ୟୋତି ॥

ସୁନ୍ଦର ହେବ ସବୁ ଗୁଣେ । କମଳା ନ ଛାଡ଼ିବ କ୍ଷଣେ ॥
ତାର କଣ୍ଠରେ ନିତ୍ୟ ଥିବ । ଧର୍ମାର୍ଥ ଧନ ଜନ ହେବ ॥
ତୁଳସୀ ଆରାଧନେ ବାଡ଼ । ଯେ ଯେତେ କରିବ ଉହାଡ଼ ॥
ସେ ବାଡ଼ ଯେତେଦିନ ଥାଏ । ମୋ ପୁରେ ତେତେ ଦିନ ଯାଏ ॥
କୈବଲ୍ୟ ଭୁଞ୍ଜୁଥିବ ବସି । କହନ୍ତି ପ୍ରଭୁ ବ୍ରହ୍ମବାର୍ତ୍ତି ॥
ତୁଳସୀ ମୃତ୍ତି ଅନ୍ୟ ଦଳ । ବାଟୁ ଯେ କରିବ ନିର୍ମଳ ॥
ତାର ଦୁରିତ ସବୁ ଧ୍ୱଂସେ । କଳଙ୍କ ନ ଲାଗଇ ଅଂଶେ ॥
ତୁଳସୀ ମୂଳରୁ ମୃତ୍ତିକା । ଯେ ଘେନି ଊର୍ଦ୍ଧ୍ୱ ପୁଣ୍ଡ୍ରଟିକା ॥
ତାର କଲୁଷ ଦେହୁ କ୍ଷୟ । ରବି ପ୍ରକାଶେ ତମ ପ୍ରାୟ ॥
ତୁଳସୀ ଦଳ ଯତ୍ନ କରି । କି ଅବା କୋମଳ ମଞ୍ଜରୀ ॥
ଅଥବା ଶୁଷ୍କକାଷ୍ଠ ମାନେ । ମୋତେ ସମର୍ପି ଏକାବେଳେ ॥
କଣ୍ଠେ କଣ୍ଠରେ ଥିବ ଧରି । ସେ ଜନ ମୋର ସଙ୍ଗେ ସରି ॥
ତା ଅଙ୍ଗେ ନ ରହିବ ପାପ । ଗରୁଡ଼ ଆଗେ ଯେହ୍ନେ ସର୍ପ ॥
ଯା ଗୃହେ ତୁଳସୀ କାନନ । ଥିବ ମନ୍ଦିର ସନ୍ନିଧାନ ॥
ତେଣେ ନ ଯିବ ଯମଦୂତ । ବ୍ରହ୍ମଙ୍କୁ କହୁଅଛୁ ସତ ॥
ତୁଳସୀକାଷ୍ଠ ଶିରେ ଘୋରି । ପୂଜାରେ ମୋତେ ଲାଗିକରି ॥
କପାଳେ ଘେନିବ ତିଳକ । ପ୍ରତ୍ୟକ୍ଷ ଦେବତା ସେ ଲୋକ ॥
ସେ ଜନ ଯିବ ଯେଉଁ ମାର୍ଗେ । ବିପତ୍ତି ନ ଥିବ ସେ ଢଗେ ॥
ତୁଳସୀ ବୃକ୍ଷ ଯେଉଁ ଦ୍ୱାରେ । ମୋତେ ଦେଖିବ ତାର ଘରେ ॥
ତାର ଭୁବନେ ବିଷ୍ଣୁ କ୍ଷେତ୍ର । ତା ଅଙ୍ଗ ସର୍ବଦା ପବିତ୍ର ॥
ତୁଳସୀ ଛାୟାରେ ସଶ୍ରଦ୍ଧେ । ଯେ ଦେବ ପିଣ୍ଡ ପିତୃଶ୍ରଦ୍ଧେ ॥
ତାର ସଗୋତ୍ର ସାତ କୁଳେ । ବସିବେ ଆସି ବିଷ୍ଣୁ ଆଳେ ॥
ଯାବତ ଥିବ ବସୁମତୀ । ତାବତ ନ ପଡ଼ି ଦୁର୍ଗତି ॥
ମୃତ୍ୟୁ କାଳରେ ଯେଉଁ ଜନ । ତୁଳସୀ ନିକଟେ ଶୟନ ॥

ତୁଳସୀ ଦଳ ଥିବ ମୁଣ୍ଡେ । ଉଦକ ଦେଉଥିବ ତୁଣ୍ଡେ ॥
ପିଣ୍ଡରୁ ପ୍ରାଣ ଛାଡ଼ିଯିବ । ସେ ଆସି ମୋ ଅଙ୍ଗେ ମିଶିବ ॥
କହନ୍ତି ପ୍ରଭୁ ନାରାୟଣ । ଏଥି ଆଶ୍ଚର୍ଯ୍ୟ କଥା ଶୁଣ ॥
ଅତ୍ୟନ୍ତ ପାପୀ ହୋଇଥିବ । ଅକାଳେ ଅଜ୍ଞାନେ ମରିବ ॥
ତା ମୃତ୍ୟୁପିଣ୍ଡ ଦଗ୍‌ଧକାଳେ । ତୁଳସୀ କାଷ୍ଠ ଯେବେ ମିଳେ ॥
ଦହନେ ପକାଇଲେ ନେଇ । ତା ଆତ୍ମା ଯିବ ମୋକ୍ଷହୋଇ ॥
ଏମନ୍ତ ତୁଳସୀ ଚରିତ । ଯେତେ କହିଲୁ ତୋତେ ସତ୍ୟ ॥
ଏକ କଥାଏ ପାଳଥିବ । ଯେଉଁଣ ଦିନେ ନ ତୋଳିବ ॥
ସେ କଥା ଶୁଣ ସର୍ବ ଦେବେ । ଗ୍ରହଣ ରବି ଚନ୍ଦ୍ର ଯେବେ ॥
ଦ୍ୱାଦଶୀ ସଙ୍କ୍ରାନ୍ତି ଦିନେ । ଅଥବା ଚତୁର୍ଥୀ ସମ୍ପୂର୍ଣ୍ଣେ ॥
ପ୍ରତ୍ୟହ ସନ୍ଧ୍ୟାବେଳେ ନିଶି । ଅଶୌଚେ ନ ତୋଳି ତୁଳସୀ ॥
ଯେ ଅବା ଅଜ୍ଞାନେ ତୋଳିବ । ମୋତେ ଦଣ୍ଡିବା ଦୋଷ ହେବ ॥
ପୁଣ କହନ୍ତି ବନମାଳୀ । ତୁଳସୀ ମମ ଅର୍ଥେ ତୋଳି ॥
ଏଥି ଯେ ଅନ୍ୟ କାର୍ଯ୍ୟ ଖଣ୍ଡେ । ତା ନଖ ଘାତ ମୋର ପିଣ୍ଡେ ॥
ବାଜିବା ପ୍ରାୟେ ହେବ ପ୍ରାଏ । ଶୁଣ ହେ ସକଳ ନିଦେଶ ॥
ତୁଳସୀ ଦଳ ମୋ ନିମନ୍ତେ । ଯେ ଜନ ତୋଳେ ଅବିରତେ ॥
କରପଲ୍ଲବ ତାର ଧନ୍ୟ । କିସ କହିବା ତାର ପୁଣ୍ୟ ॥
ବିଶେଷେ କାର୍ତ୍ତିକ ମାସରେ । ତୁଳସୀ ସେବା କରି ନରେ ॥
ଲଭିବେ କୈବଲ୍ୟ ମୁକତି । ଖଣ୍ଡିବେ ଅଶେଷ ବିପତ୍ତି ॥
ତୁଳସୀ ମୂଳେ ଉଦ୍ୟାପନ । ଯେ କରେ କାର୍ତ୍ତିକ ବିଧାନ ॥
ସେ ଜନ ବଇକୁଣ୍ଠ ପୁରେ । ଆସି ମିଳିବ ଦେହାନ୍ତରେ ॥
ଲୀନ ହୋଇବ ମୋର ଅଙ୍ଗେ । ନୋହିଲେ ଥିବ ମୋର ସଙ୍ଗେ ॥
କେବେହେଁ ନୋହିବ ଅନ୍ତର । ଏ ବାକ୍ୟ ସତ୍ୟ ସତ୍ୟ ମୋର ॥
ଏବେ ହୋ ଶୁଣ ସୁରଗଣେ । ଧାତ୍ରୀ ଯେ ଏହି ପରିମାଣେ ॥

ଯେବଣ ହୋଇବ ଯେ ବାସୀ । ତାରେ ସକଳ ପାପ ନାଶି ॥
ଯଶ ଲଭଇ ଉଦଭରକେ । ମୋତେ ପାଇବ ଅନ୍ତକାଳେ ॥
ସେ ଧାତ୍ରୀ ଫଳ ପତ୍ର ଯୋଗେ । ତୁଳସୀ ଦଳ ଚର୍ଣ୍ଣ ସଙ୍ଗେ ॥
ସଙ୍ଖ୍ୟା ନ କରି ଦେବ ମୋତେ । ହୋଇବ ସନ୍ତୋଷ ମୋହିଚିତ୍ତେ ॥
ପତ୍ର ଗୋଟିକେ ଲକ୍ଷମଣି । ଫଳ କାଞ୍ଚନ ପରିମାଣି ॥
ଏମନ୍ତେ ହୋଇବ ସନ୍ତୋଷ । ହସି କହନ୍ତି ହୃଷୀକେଶ ॥
ଶୁଣ ସନ୍ତୋଷେ ଦେବଲୋକେ । ଧାତ୍ରୀ ଯେ ବିଶେଷେ କାର୍ତ୍ତିକେ ॥
ସକଳ ସୁରମୁନି ସଙ୍ଗେ । ମୁଁ ଥିବି ଧାତ୍ରୀବୃକ୍ଷ ଅଙ୍ଗେ ॥
ଛେଦେ ଯେ ବୃକ୍ଷ ପତ୍ର ଫଳ । ଅକାମେ ସକାମେ ନ ତୋଳ ॥
ଆଶ୍ୱିନ ମାସୁ ଫଳ ଆଣି । କାର୍ତ୍ତିକ ଆଗମନ ଜାଣି ॥
ଯତ୍ନେ ସାଇତି ରଖିଥିବ । କାର୍ତ୍ତିକେ ଆହାର କରିବ ॥
ସ୍ନାହାନେ ଶିରପରେ ଲେପି । ସ୍ମରଣେ ମୋର ନାମ ଜପି ॥
କଣ୍ଠକରେ ଆଭରଣ କରି । ଅଶେଷ ଜନ୍ମ ପାପ ହରି ॥
ଲଭିବ ଯଶ ଶ୍ରୀ ଆୟୁଷ । ଅନ୍ତେ ପାଇବ ମୋ ନିବାସ ॥
ଧାତ୍ରୀ ଗୁମ୍ଫାରେ ଯେଉଁ ଜନ । କରିବ ଗୋବିନ୍ଦ କୀର୍ତ୍ତନ ॥
ଦଣ୍ଡକେ ଦଶଯୁଗ ଲେଖି । ମୋ ପୁରେ ବସି ହେବ ସୁଖୀ ॥
କାର୍ତ୍ତିକେ ଧାତ୍ରୀ ବୃକ୍ଷ ତଳେ । ହବିଷ୍ୟ ଅନ୍ନ ଏକବେଳେ ॥
ଯେ ଜନ କରିବ ଭୋଜନ । ତା ପାପ ହୋଇବ ଦହନ ॥
ଅଶୌଚ ଦ୍ରବ୍ୟ ଥିଲେ ଭକ୍ଷି । ସେ ଦୋଷ ନ ଲାଗିବ କିଛି ॥
ନିର୍ମଳ ହୋଇବ ଶରୀର । ତେଣୁ ଅଁଳା ନାମ ତାର ॥
କହନ୍ତି ପ୍ରଭୁ ଲକ୍ଷ୍ମୀପତି । ଏମନ୍ତ ତିନ ବନସ୍ପତି ॥
ଯେ ବୃନ୍ଦାବନ୍ତି ତିନିଗୁଣେ । ହିପୁରା ଆଜ୍ଞା ପରମାଣେ ॥
ଅଁଳା ତୁଳସୀ ମାଳତୀ । ଏ ତିନି ମୋର ପ୍ରିୟବନ୍ତି ॥
ବିଶେଷେ ତୁଳସୀ ପ୍ରଧାନ । ସହସ୍ର ମୋହର ସମାନ ॥

କହନ୍ତି ପ୍ରଭୁ ନାରାୟଣ । ମୋ ଠାରୁ ଶ୍ରେଷ୍ଠ ବୋଲି ଜାଣ ॥
ତୁଳସୀ ବୃକ୍ଷ ସେବା କଲେ । ମୋତେ ପାଇବ ପ୍ରାଣୀ ଭଲେ ॥
ତୁଳସୀ ବିନା ଯେତେ ଭୋଗ । ମୋତେ ନୁହଇ ଉପଯୋଗ ॥
ତୁଳସୀ ଦଳେ ମୋତେ ପୂଜ । ତୁଳସୀ ଘେନି ମୋତେ ଭଜ ॥
ତୁଳସୀ ଦେବ ମୋର ଶିରେ । ପ୍ରାଣୀ ବସିବେ ମୋର ପୁରେ ॥
ଏ କଥା ତୁମ୍ଭେ ଭଲେ ଜାଣ । ବ୍ରହ୍ମାଦି ମୁନି ସୁରଗଣ ॥
ଯକ୍ଷ ରାକ୍ଷସ ନର ନାଗେ । ଯେ ଜ୍ଞାନ ଚେତା ଦଣ୍ଡଦଗେ ॥
ଶିବ ସହିତେ ସିଦ୍ଧ ଯତି । ଲକ୍ଷ୍ମୀ ମୋହର ପ୍ରିୟବନ୍ତି ॥
ଯାବନ୍ତ ଆଦି ସ୍ତ୍ରୀଗଣେ । ସର୍ବେ ମୋ ଅଜ୍ଞା ପରମାଣେ ॥
ଯେ ତାରେ ହେବ ଅପରାଧୀ । ତାର ନ ଗଳେ କର୍ମ ସିଦ୍ଧି ॥
କହିବା ଶୁଣ ସର୍ବ ଦେବେ । ମୁଁ ତାକୁ ମାୟା କଲି ଯେବେ ॥
ସେ ଦୋଷ ହଗୃର ମନରେ । ରହିଲି ପର୍ବତ ଆକାରେ ॥
ଏ ଦେହେ ଅଛୁ ସେହି ରୂପ । ସର୍ଣ୍ଣ ବଧାତେ ହେଉ ପାପ ॥
ସେ ପାପ ବଜ୍ର କୀଟ ରୂପେ । ମୋ ଦେହ କାଟୁଥିବେ କୋପେ ॥
ସହସ୍ର ସମୁଦ୍ରରେ ଶିଳା । ଗଣ୍ଡକୀ ଜଳେ ହେବ ମେଳା ॥
ସେ ବିଷ୍ଣୁ ଶିଳା ମୋର ମୂର୍ତ୍ତି । ପୂଜା କରିବେ ବିପ୍ର ଯତି ॥
ତୁଳସୀ ଦଳେ ପୂଜା କରି । ଭବସାଗରୁ ହେବ ପାରି ॥
ଏ ମୋର କଲି କର୍ମ ପୁଣ । କହନ୍ତି ପ୍ରଭୁ ନାରାୟଣ ॥
ଏବେ ସକଳ ଦେବେ ଚଳ । ଆମ୍ଭ ବଚନ ପ୍ରତିପାଳ ॥
ତୁଳସୀ ମହିମା ଜଗତେ । ବିସ୍ତାର କର ଯେଝାମତେ ॥
ଏମନ୍ତେ ବିଷ୍ଣୁ ଆଜ୍ଞା ଘେନି । ଅତି ଆନନ୍ଦେ ସୁରମୁନି ॥
ବିଷ୍ଣୁ ଚରଣେ ପୂଜା କଲେ । ଯେ ଯାହା ଭୁବନକୁ ଗଲେ ॥
ପୃଥୁକୁ କହନ୍ତି ନାରଦ । ଯେ ବିଷ୍ଣୁ ଲୋକର ସମ୍ବାଦ ॥
ଏଣୁ ଏ ତୁଳସୀ ମହିମା । ବଚନେ କି ହେବ ସୀମା ॥

ବିଷ୍ଣୁଙ୍କ ଏଡ଼େ ପ୍ରିୟ ଫୁଲ । ସଂସାରେ ନାହିଁ ତାକୁ ତୁଲ ॥
କେବଳ ସ୍ନାନ ସାର ତୋଳ । ତେଣେ ସନ୍ତୋଷ ବନମାଳୀ ॥
ଅଶୁଚ ବେଳେ ଯେବେ ଛୁଇଁ । ଦାନକ ଧର୍ମ କ୍ଷୟ ଯାଇ ॥
ସ୍ନାନ ନ କରି ତୋଳ ଯେବେ । ପୂଜାରେ ଫଳ ନାହିଁ ତେବେ ॥
ଦାନକ ଧର୍ମ ହୋଏ କ୍ଷୟ । ଭସ୍ମ କୁଣ୍ଡରେ ଘୃତ ପ୍ରାୟ ॥
ସ୍ନାନ ନ କରି ଆନ ପୁଷ୍ପ । ତୋଳିଲେ ସର୍ବ ଦେବେ ତୋଷ ॥
ଏମନ୍ତ ପୁଷ୍ପକ ତପୃନ । ଧାଇଁ ତୁଳସୀ ବିଦ୍ୟମାନ ॥
ଯେ ତାହା ବିଷ୍ଣୁ ପ୍ରୀତି କରି । ଶିର ହୃଦରେ ନେଇ ଧରି ॥
ତାର ଦୁରିତ ନାଶେ ହେଳେ । ଅଳପ ଅଗ୍ନି ଯେହ୍ନେ ଜଳେ ॥
ଏ କଥା ଅଟଇ ପ୍ରମାଣ । ହେ ରାଜା ସାବଧାନେ ଶୁଣ ॥
ତୁ ଯେ ପୁଚ୍ଛିଲୁ ଶୁଦ୍ଧମତି । ତୁଳସୀ କାହୁଁ ଉତପତ୍ତି ॥
ସେ କଥା କହିଲି ସଂକ୍ଷେପି । ସେ ଧର୍ମ ସର୍ବ ଲୋକ ବ୍ୟାପି ॥
ଯେ ଯାହା ଶୁଣନ୍ତି ଶ୍ରବଣେ । ପ୍ରସ୍ତାବ ବାକ୍ୟ ମୁଖେ ଭଣେ ॥
ସେହି ଲଭଇ ମୋକ୍ଷ ଗତି । କାର୍ତ୍ତିକ ବ୍ରତ ଫଳ ଶ୍ରୁତି ॥
କେବଳ ନ କର ସଂଶୟେ । ନନ୍ଦିଲେ ମହାପାପ ହୋଏ ॥
ଏ କଥା ସର୍ବ ଶାସ୍ତ୍ର ମତ । ଅମୂଳ ପୁରାଣେ ଉକତ ॥
ଉତ୍ତରଖଣ୍ଡେ ବିଷ୍ଣୁଲୀଳା । ସଂସାର ସାଗରକୁ ଭେଳା ॥
କହଇ ମହାଦେବ ଦାସ । ହେ ପ୍ରଭୁ କମଳା ବିଳାସ ॥
ତାଙ୍କ ଚରଣ ପରସାଦେ । ପଦ ପ୍ରସରେ ମୋର ହୃଦେ ॥
କହଇ ସାଧୁଜନ ଆଗେ । ସୁଜନେ ଶୁଣ ଅନୁରାଗେ ॥

ଇତି ଶ୍ରୀ ପଦ୍ମପୁରାଣେ ଉତ୍ତର ଖଣ୍ଡେ କାର୍ତ୍ତିକ ମାହାତ୍ମ୍ୟେ
ତୁଳସୀ ମହିମା କଥନେ ନାମ ପଞ୍ଚଦଶୋଽଧ୍ୟାୟଃ ।

---

## ଷୋଡଶ ଅଧ୍ୟାୟ

ପୃଥୁ ଉବାଚ

ସେତି ହାସମିଦଂ ବ୍ରହ୍ମନ୍ ମାହାତ୍ମ୍ୟଂ କଥିତଂ ତ୍ୱୟା
ଅତ୍ୟା ଶ୍ଚର୍ଯ୍ୟମିଦଂ ସମ୍ୟକ୍ ତୁଳସ୍ୟାସ୍ତୁ ଶ୍ରୁତଂ ମୟା ॥

ନାରଦ ପଦେ କରି ପୂଜା । ପୁଣି ପୁଚ୍ଛନ୍ତି ପୃଥୁ ରାଜା ॥
ହେ ମୁନିବର ! ପୁଣ୍ୟଦେହା । କହିଲ ପରସ୍ତାବ ଯାହା ॥
ତୁଳସୀ ଆଦି ଜନ୍ମ ବାଣୀ । ଆତ୍ମା ପବିତ୍ର ହେଲା ଶୁଣି ॥
ତେଣୁ ତୁଳସୀ ମୂଳ ସିଦ୍ଧି । କାର୍ତ୍ତିକ ଉଦ୍ୟାପନ ବିଧି ॥
ସେ ମହାତପ ବ୍ରତ ଫଳେ । ଏବେ କହିବା ତପଶୀଳେ ॥
ପୂର୍ବେ କେ ଉଦ୍ୟାପନ କରି । ଭବ ସାଗରୁ ଗଲେ ତରି ॥
ସେ କଥା କହ ଦୃଷ୍ଟାନ୍ତରେ । ଅଖିଳ ଜନ ଉପକାରେ ॥
ନାରଦ ନୃପତି ବଚନେ । ବୋଲନ୍ତି ଶୁଣ ସାବଧାନେ ॥
କାର୍ତ୍ତିକ ଉଦ୍ୟାପନ ଧର୍ମ । ଶୁଣନ୍ତେ ଶୁଭ ସବୁ କର୍ମ ॥
ସେ କଥା କହିବା ପ୍ରସ୍ତାବେ । ଯେ ଧର୍ମ ଇତିହାସ ପୂର୍ବେ ॥

ନାରଦ ଉବାଚ

ଆସୀତ୍ ସହ୍ୟାଦ୍ରି ଶିଖରେ କରବୀରପୁରେ ପୁରା ।
ବ୍ରହ୍ମଣୋ ଧର୍ମଦତ୍ତାକଶ୍ଚିଦ୍ଧର୍ମଦତ୍ତ ଇତି ସ୍ମୃତଃ ॥

ସହ୍ୟାଦ୍ରି ନାମ ଗିରିପାଶେ । ବ୍ରାହ୍ମଣ କରବୀର ଦେଶେ ॥
ନାମ ତାହାର ଧର୍ମଦତ୍ତ । ବିଷ୍ଣୁ ସେବାରେ ଅନୁରକ୍ତ ॥
ଜାଣଇ ସର୍ବ ଧର୍ମ ଖ୍ୟାତି । କାର୍ତ୍ତିକ ବ୍ରତେ ମହାପ୍ରୀତି ॥
ଏମନ୍ତ ଏକ ସମୟରେ । କାର୍ତ୍ତିକ କୃତ୍ୟ ବିଧାନରେ ॥
ମାସ ସମ୍ପୂର୍ଣ୍ଣ ଉଦ୍‌ଯାପନ । ସାରିଲ ଯାବତ ବିଧାନ ॥
ଏମନ୍ତ ନିଶି ଅବଶେଷେ । ନୃସିଂହ ଦରଶନ ଆଶେ ॥
ବ୍ରାହ୍ମଣ ନିତ୍ୟକର୍ମ ସାରି । କରେ ଉଦକ ପାତ୍ର ଧରି ॥

ସେ ଜଳ ମିଶ୍ରିତ ତୁଳସୀ । ମୁଖେ ଗୋବିନ୍ଦ ନାମ ଘୋଷି ॥
ପଥେ ଚାଲଇ ଦ୍ୱିଜବର । ସ୍ୱଭାବେ ଗିରି ଭୟଙ୍କର ॥
ନୃସିଂହରୂପୀ ନରହରି । ଯହିଁ ଅଛନ୍ତି ବିଜେ କରି ॥
ବିପ୍ର ଗମଇ ସେହି ମାର୍ଗେ । ଏକ ପିଶାଚୀ ଆସି ବେଗେ ॥
ପଥ ନିରୋଧି ଅଛି ରହି । ଦ୍ୱିଜ କାତର ତାକୁ ଚାହିଁ ॥
ସ୍ୱଭାବେ ଭୟଙ୍କର ମୂର୍ତ୍ତି । ଲମ୍ବୋଷ୍ଠ ବଟ ଦନ୍ତପନ୍ତି ॥
ଉଲଗ୍ନ ମୁକୁଳିତ କେଶ । କରାଳ ମୁଖ ଶୁଷ୍କ ମାଂସ ॥
ଅତି ଦୁର୍ବଳ କଳେବର । ଅସ୍ଥି ଜଡ଼ିତ ଚର୍ମ ଶିର ॥
ରକ୍ତ ନୟନ ଘର୍ଘ ଧ୍ୱନି । ଜିହ୍ୱାରେ ଜଳୁଅଛି ବହ୍ନି ॥
ଚମଣୀ ପକ୍ଷୀ ପ୍ରାୟେ ସ୍ତନ । ଦୁର୍ଗନ୍ଧ ନାସିକା ପବନ ॥
ଶରୀର ଧୂମ୍ରବର୍ଣ୍ଣ ବର୍ଣ୍ଣି । ବିପ୍ରକୁ ଓଗାଳିଲା ଆସି ॥
ତାହାକୁ ଦେଖି ଧର୍ମଦତ୍ତ । ହସ୍ତେ ଯେ ଥିଲା ତମ୍ବାପାତ୍ର ॥
ତୁଳସୀ ଜଳ ସହିତରେ । ଫିଙ୍ଗିଲା ପିଶାଚୀ ଉପରେ ॥
ଅଙ୍ଗେ ପଡ଼ିଲା ତାର ଯାଇ । ପିଶାଚୀ ଦିବ୍ୟରୂପ ହୋଇ ॥
ବ୍ରାହ୍ମଣ ଆଗେ ହେଲା ଠିଆ । ଚନ୍ଦ୍ରମା ପ୍ରାୟ ମୁଖ ଶୋଭା ॥
କାଞ୍ଚନ ପ୍ରାୟେ ତନୁ ଗୋରୀ । ଯେସନେ ସ୍ୱର୍ଗ ବିଦ୍ୟାଧରୀ ॥
ଅମୂଲ୍ୟ ଅଳଙ୍କାର ବାସ । ଗନ୍ଧ ଚନ୍ଦନ ଜାତିପୁଷ୍ପ ॥
ସୁନ୍ଦରୀ ଶରୀରେ ଭୂଷଣ । ତା ଦେଖି ଆଶ୍ଚର୍ଯ୍ୟ ବ୍ରାହ୍ମଣ ॥
ମନରେ ଭୟ ନାହିଁ କିଛି । ସୁବର୍ଣ୍ଣ ମୁଖ ଚାହିଁ ପୁଚ୍ଛି ॥
ହେ ରୂପବତି କି କାରଣେ । ରୂପ ଅନ୍ତର ଏହିକ୍ଷଣେ ॥
ଅଇଲୁ ଯେଉଁ ରୂପ ଧରି । ସେ ରୂପ ଦେଖି ଭୟ କରି ॥
ତୋତେ ଫିଙ୍ଗିଲି ଜଳପାତ୍ର । ତେଣୁ ସୁନ୍ଦରୀ ତୋର ଗାତ୍ର ॥
କହ ଏ କିସ ବିପରୀତ । ପୂର୍ବେ ତୁ କଲୁ କେଉଁ କୃତ୍ୟ ॥
କି ଜନ୍ମ ଲଭିଲୁ ତୁ କାହିଁ । କି ଦୋଷେ ପାପ ତନୁ ବହି ॥

ଘୋର ଗହନ ମାର୍ଗେ ଥିଲୁ । ଏବେ କି ଭାବେ ନିସ୍ତରିଲୁ ॥
ତୁ ଏହା କହ ପରମାଣି । ମୋର ସଂଶୟ ଯାଉ ଶୁଣି ॥
ଏ ପ୍ରଶ୍ନ ଶୁଣି ସେ ସୁନ୍ଦରୀ । ବିପ୍ରଙ୍କୁ ନମସ୍କାର କରି ॥
ବୋଲଇ ଶୁଣ ଦ୍ୱିଜବର । ଏ ଯେ ଅର୍ଜିଲି କର୍ମ ମୋର ॥
କହିବି ଶୁଣ ବିପ୍ର ଶ୍ରେଷ୍ଠ । ପୂର୍ବେ ଯେ ନଗ୍ର ସଉରାଷ୍ଟ୍ର ॥
ସେ ଦେଶେ ବିଷ୍ଣୁ ଭିକ୍ଷୁ ନାମେ । ଦ୍ୱିଜ ବଞ୍ଚଇ ଗୃହ ଧର୍ମେ ॥
ମୁହିଁ ସେ ଦ୍ୱିଜର ଘରଣୀ । କଳହା ନାମେଣ ବ୍ରାହ୍ମଣୀ ॥
ମୁଁ ପାପୀ ଯେମନ୍ତ ଦୁର୍ମତି । ସ୍ୱାମୀରେ ହୋଇଲି ଅପ୍ରୀତି ॥
ଯାହା ବୋଲଇ ମୋର ନାହା । ମୁଁ ସୁଖ ନ ମଣଇ ତାହା ॥
ସଂଯୋଗେ ନ ବଢ଼ଇ ଅନ୍ନ । କହଇ ନିଷ୍ଠୁର ବଚନ ॥
ଗୃହେ ଯେ ଭଲ ଦ୍ରବ୍ୟ ଥାଇ । ମୁଁ ତାହା ଭୁଞ୍ଜଇ ଲୁଚ୍ଛଇ ॥
ମୋ ତହୁଁ ଉବୁରଇ ଯାହା । ଚୁଲିରେ ନିବେଶଇ ତାହା ॥
ସ୍ୱାମୀ ଯତ୍ନିକ ମନକରେ । ମୁଁ ତାହା ନ ରଖଇ ଘରେ ॥
ସ୍ୱାମୀ ପୁଚ୍ଛିଲେ କରେ କଳ । ତାର ବଚନ ମୋର ଶଳ ॥
ଏମନ୍ତେ ଗଲା କେତେ ଦିନ । ମୋରେ ଭାଜିଲା ସ୍ୱାମୀ ମନ ॥
ଅନ୍ୟ କନ୍ୟା ଏ ଦେଖି ଶୋଭା । ତାକୁ ହୋଇଲା ବିପ୍ର ବିଭା ॥
ତା ଦେଖି ସହି ନ ପାରିଲି । ମହୁରା ପାନ କରି ମଲି ॥
ମୋ ପ୍ରାଣ ପ୍ରେତ ପିଣ୍ଡେ ଭରି । ଯମ କିଙ୍କର ନେଲେ ଧରି ॥
ଚର୍ମରଜ୍ଜୁରେ ବାନ୍ଧି ଭିଡ଼ି । ମୁଣ୍ଡେ ପ୍ରହାରି ବେତ ବାଡ଼ି ॥
ଯାତନା ପଥେ ଘେନିଗଲେ । ଯମ ଛାମୁରେ ନେଇ ଦେଲେ ॥
ମୋତେ ଅନାଇ ଦଣ୍ଡଧାରୀ । କାଳ କୃତାନ୍ତ ରୂପ ଧରି ॥
ପୁଚ୍ଛିଲେ ଚିତ୍ରଗୁପ୍ତଙ୍କୁ । ବୋଇଲେ କି ଦଣ୍ଡ ଏହାକୁ ॥
ବିଚାରି କହ ତୁମ୍ଭେ ବେଗେ । ଧର୍ମ ତ ଦିଶୁନାହିଁ ଆଗେ ॥
ପାପ ଲକ୍ଷଣ ଏହା ଦେହ । ପାଞ୍ଜିରେ କି ଲେଖିଛ କହ ॥

ମୃଣ କରିବା ଯେଉଁ କର୍ମ । ବିଚାରି କହ ଧର୍ମାଧର୍ମ ॥
ରାଜା ବଚନେ ମନ୍ତ୍ରୀ ଚିତ୍ର । କର୍ମ ଲିଖନ ପାଞ୍ଜି ଘେନ ॥
ବୋଇଲନ୍ତି ଶୁଣ ଦଣ୍ଡଧାରି । ଏ ବଡ଼ ପାପୀ ଦୁରାଚାରୀ ॥
କହୁଁ ନ କର ନାହିଁ ଅନ୍ତ । କେତେ କହିବା ଏହା ପାପ ॥
ବ୍ରାହ୍ମଣ କୁଳେ ଦେହ ବହି । ଆଚାରହୀନା ସ୍ୱାମୀ ଦ୍ରୋହୀ ॥
ପତିକି ଦେଲା ଯେତେ ଦୁଃଖ । ତେଣୁ ନ ଚାହିଁ ତାର ମୁଖ ॥
ଯେତେ ଅକର୍ମ କଲା ପୂର୍ବେ । ଦୁଷ୍ଟ ସ୍ୱଭାବେ ମତ୍ତ ଗର୍ବେ ॥
ପାପିନୀ ସ୍ୱାମୀକି ଲୁଚାଇ । ପାକ ଭାଣ୍ଡରେ ଅନ୍ନ ଖାଇ ॥
ତାହାଙ୍କ ଦଣ୍ଡ ଏବେ ଯାହା । କହିବୁଁ ଶୁଣ ଜନନାଥ ॥
ସେ ପାପ ଫଳେ ଜନ୍ମସାତ । ମାର୍ଜ୍ଜାରୀ ରୂପେ ହେବ ଜାତ ॥
ଉଚ୍ଛିଷ୍ଟ ଭକ୍ଷି ଘରେ ଘରେ । ଯନ୍ତ୍ରଣା ପାଇବ ଶରୀରେ ॥
ପୂର୍ବେ ଯେ କୁଟୁମ୍ବଙ୍କୁ ବଞ୍ଚି । ଭଲ ପଦାର୍ଥ ଭୁଞ୍ଜେ ଲୁଚି ॥
ଏ ପାପେ ଜାତ କରି ବାଳ । ଭକ୍ଷିବ ଗର୍ଭ ଫୁଲ ଫଳ ॥
କଳହା ମହାପାପ ଘେନ । ତହିଁ ଅନ୍ତରେ ଜନ୍ମ ତିନ ॥
ଡାକିନୀ ରୂପେ ଜାତ ହେବ । ସକଳ ଜନେ ବୈରଭାବ ॥
ପୂର୍ବ ଚଞ୍ଚଳ ମତି ଘେନ । କୁଠାରି ରୂପେ ଉର୍ଦ୍ଧ୍ୱେ ଯୋନ ॥
ନିଶାରେ ଶମଶାନେ ହରି । ନାନା ଦୁର୍ଗନ୍ଧ ଭୋଗକରି ॥
ସ୍ୱାମୀଙ୍କି ଦୁଃଖ ଦେବା ଫଳେ । ପୁଣି ଜନ୍ମିବ ଗିରିମାଳେ ॥
ବନେ ପିଶାଚୀ ରୂପ ହୋଇ । କର୍ମେ କଳହା ନାମ ବହି ॥
ଭ୍ରମୁ ଯେ ଥିବ ଅନୁବ୍ରତ । ସୁଖ ନ ଲଭି କଦାଚିତେ ॥
ନିଜ ସ୍ୱାମୀର ନିନ୍ଦା ପାପେ । ଛବର୍ଣ୍ଣ ଭୟଙ୍କର ରୂପେ ॥
ନାନାଦ୍ଧ କ୍ଳେଶ ସର୍ବ ଅଙ୍ଗେ । କେହି ନ ଥିବେ ଆତ୍ମ ସଙ୍ଗେ ॥
ଯେବଣ ଭୁଣ୍ଡେ ନିତ୍ୟେ କଳ । ସ୍ୱାମୀକି ଦେଉଥିଲା ଗାଳି ॥
ସେ ଭୁଣ୍ଡେ ଜନ୍ତୁ ଥିବ ଜୂଇ । କହିବି ନ ପାରିବ ଖାଇ ॥

ଏମନ୍ତେ ସୂତ ଏକପ୍ରସ୍ତ । ଥିବ ପିଶାଚୀ ରୂପ ଧରି ॥
ହେ ବିପ୍ର ଶୁଣ ସାବଧାନେ । ଏମନ୍ତ ମନ୍ତ୍ରୀଙ୍କ ବଚନେ ॥
ଯମ ବୋଲଇ ଏତେ ହେଉ । ଏ ପାପୀ କେବେ ଏଥୁ ଯାଉ ॥
ଏ ବାକ୍ୟ ଧର୍ମରାଜା ମୁଖେ । ଶୁଣି ପଡ଼ିଲି ଘୋର ଦୁଃଖେ ॥
ମାର୍ଜାରୀ ହେଲି ଜନ୍ମ ସାତ । ଡାକିନୀ ରୂପେ ପୁଣି ଜାତ ॥
ତିନି ଜନମ ଅନ୍ତେ ମୁହିଁ । ଏବେ ପିଶାଚୀ ରୂପ ହୋଇ ॥
ଆଜକୁ ପନ୍ଦର ବରଷ । ଏ ବନେ କରିଅଛୁ ବାସ ॥
ଅକର୍ମ ଦେହେ ଦୁଃଖ ଯେତେ । ତାହା କହିବ ଅବା କେତେ ॥
କ୍ଷଣେ ତ ସ୍ୱସ୍ଥ ନାହିଁ ମନ । ନିରତେ ହୋଇ ଛନ୍ନ ଛନ୍ନ ॥
କ୍ଷୁଧା ଅନଳେ ଆତ୍ମା ଦୁଃଖୀ । ତୃଷାରେ ଓଷ୍ଠ କଣ୍ଠ ଶୁଖି ॥
କ୍ଷଣ କ୍ଷଣକେ ପୋଡ଼ି ଥାଇ । ପିତ୍ତ ଶ୍ଲେଷ୍ମ ପ୍ରାପ୍ତେ ହୋଇ ॥
ସୁସ୍ଥେ ମୁଁ ନ ପାରଇ ବସି । ଅସ୍ଥି ଦିଗଳୁ ଦିବାନିଶି ॥
ନିସ୍ତାମେ ବୁଲୁଥାଇ ଧାଇଁ । ବାତୁଳ ଜନ ପ୍ରାପ୍ତେ ହୋଇ ॥
କାହିଁତ ନ ଦେଖଇ ସୁଖ । ଅନବରତ ଏକା ଶୋକ ॥
ତା ଶାନ୍ତି ନିମନ୍ତେ ପଦାର୍ଥେ । କାହୁଁହିଁ ନ ମିଳଇ ମୋତେ ॥
ବୃକ୍ଷେ ଯେ ଫଳ ଫଳିଥାଏ । ମୋର ଦୃଷ୍ଟିଲେ ଜଳିଯାଏ ॥
ଅନଳ ପ୍ରାପ୍ତେ ଦିଶେ ମୋତେ । ମୁଁ ତାହା ଭକ୍ଷିବି କେମନ୍ତେ ॥
ତେଣୁ ତା ନ ପାରଇ ଭକ୍ଷ । ଯେମନ୍ତ କର୍ମେ ଅର୍ଜିଅଛୁ ॥
ତେଣୁ ନ ଲଭୁ ଫଳମାନ । ଢକଳେ କରଇ ବେଦନ ॥
ପବନ ଗିଳି ଝର ଜଳ । ସେ ମୋତେ ସଦୃଶ ଗରଳ ॥
ଅନଳ କୁଣ୍ଡେ ଜଳୁଥାଇ । ଶୀତ ତପନ ଆଦି ହୋଇ ॥
ସେ କଥା ଶୁଣ ପୁଣ୍ୟଦେହା । ପ୍ରେତ ପିଶାଚ ଭୋଗ ଯାହା ॥
ଶୁକ୍ର ଶୋଣିତ ପୂଯ ଲାଳ । ଶ୍ରବଣବଠ ନେତ୍ର ମଳ ॥
ନାସା ଶ୍ଲେଷ୍ମ ସ୍ୱେଦ ବାନ୍ତି । ଯେବା ଉଚ୍ଛିଷ୍ଟ ଘୃତ ଖାନ୍ତି ॥

ପାପ ନିର୍ବାଣ କାଳେ ପୁଣି । ଅନ୍ନ ଭୁଞ୍ଜନ୍ତି ଯେଉଁ ପ୍ରାଣୀ ॥
ପତି ନିର୍ବାଣ କାଳେ ନାରୀ । ଅନ୍ନ ଭୁଞ୍ଜଇ ନ ବିଚାରି ॥
ଯେ ତମଭରେ ଦାନ ଦେଇ । ସେ ସର୍ବ ପ୍ରେତଯୋଗ୍ୟ ହୋଇ ॥
ଏମନ୍ତ ଦ୍ରବ୍ୟ ଯେତେ ମିଳେ । ପ୍ରେତ ଭୁଞ୍ଜନ୍ତି ନେଇ ବଳେ ॥
ମୁଁ ତହୁଁ ଲଭଇ କଷ୍ଟିତ । ହେଉଜନେ ତୋଷ ନୋହେ ଚିତ୍ତ ॥
ସୁମରି ପୂର୍ବ କଲା କର୍ମ । କ୍ଷଣ କ୍ଷଣକେ ମତିଭ୍ରମ ॥
କାହୁଁ ଯେ ଥାଇ ବନେ ପଶି । ନିରାଶେ ତରୁ ମୂଳେ ବସି ॥
ପ୍ରଭବ ପାଇଥାଇ ତହିଁ । ଆହା ବୋଲନ୍ତା କେହି ନାହିଁ ॥
ଏ କଷ୍ଟେ ଥିଲି ଘୋର ବନେ । ଆଜ ମୁଁ ତବ ଦରଶନେ ॥
ଦୁଃସହ ଘୋର ଦୁଃଖରାଶି । ତବ ପ୍ରସାଦେ ସର୍ବ ନାଶି ॥
ଆତ୍ମା ପବିତ୍ର ହେଲା ମୋର । ଗତ ଅପରାଧ ଗଲା ଦୂର ॥
ଏବେ କାରଣ କର ମୋତେ । ନମଇ ତୁମ୍ଭ ପାଦଗତେ ॥
କଳହା ମୁଖୁଁ ଏହା ଶୁଣି । ବ୍ରାହ୍ମଣ ମନେ ମନେ ଗୁଣି ॥
ପାଷାଣ ମୂର୍ତ୍ତି ପ୍ରାୟ ହୋଇ । ମଉନେ ବସ୍ତ୍ର ରୂପ ଧ୍ୟାଇ ॥
ଚୋବନ ସୁମରଇ ମନେ । ରାଜନ ଶୁଣ ସାବଧାନେ ॥
ଅଧମ ମହାଦେବ ଦାସ । ଏ କଥା ଭଣି ମହାତୋଷ ॥
ଗୋବିନ୍ଦ ନାମ ଚିନ୍ତି ହୃଦେ । ଶରଣ ଗଲା ପଦ୍ମପାଦେ ॥
ଅଜ୍ଞାନ ଗ୍ରନ୍ଥଙ୍କର ହିତେ । ପଦ୍ମ ପୁରାଣେ ଅର୍ଥ ଗୀତେ ॥
ଜଗତେ କଲା ପରକାଶ । ସୁଜନେ ନ ଦେଖିବ ଦୋଷ ॥

ଇତି ଶ୍ରୀପଦ୍ମପୁରାଣେ ଉତ୍ତରଖଣ୍ଡେ କାର୍ତ୍ତିକ ମାହାତ୍ମ୍ୟେ କଳହା ଗତଜନ୍ମ କର୍ମ କଥନେ ନାମ ଷୋଡ଼ଶ ଅଧ୍ୟାୟଃ ।

---

## ସପ୍ତଦଶ ଅଧ୍ୟାୟ

### ନାରଦ ଉବାଚ

ଶୁଣ ରାଜନ ସାବଧାନେ । ବିପ୍ର ଯେ କଳହା ବଚନେ ॥
କ୍ଷଣେ ମଉନବ୍ରତ ହୋଇ । ପୁଣି ପୁଚ୍ଛନ୍ତି ତାଙ୍କୁ ଚାହିଁ ॥
ହେ ଶୁଭ୍ରକେଶୀ ଚନ୍ଦ୍ରାନନୀ । ଏ ଘୋର କୃତ୍ୟ କର୍ମ ଘେନି ।
ଭ୍ରମୁ ଯେ ଥିଲୁ ପାପ ପଥେ । କଥା ନ ଗଲୁ ପୁଣ୍ୟ ତୀର୍ଥେ ॥
ରାମ ଗୋବିନ୍ଦ ନାରାୟଣ । କେଭେ ନ କଲୁ ଉଚ୍ଚାରଣ ॥
ଅତି ଦୁସ୍ତର ଦୁଃଖ ସହି । ପିଶାଚୀ ତନୁ ଥିଲୁ ବହି ॥
ଏବେ ପାଇଲୁ ଦିବ୍ୟ ଦେହ । ପୁଣି କାର୍ତ୍ତିକ ଯିବୁ କହ ॥

### କଳହୋବାଚ

ତ୍ୱଂ କର୍ମବିପାକେ ଦଶମେତାଂ ଗତାସ୍ମହଂ
ତତ୍କଥଂ ତୁ ପୁନର୍ବିପ୍ର ଯାମ୍ୟହଂ ଗତିମୁତ୍ତମାଂ ।

ହେ ବିପ୍ର ଶୁଣ ସାବଧାନେ । ମୁଁ ମହାପାପୀ ଜ୍ଞାନହୀନେ ॥
କାହୁଁ ଜାଣିବି ଭଲ ଗତି । ପିଶାଚୀ ଦେହ ମନ୍ଦମତି ॥
କେଉଁ ଜନ୍ମରେ କେତେ ଭାଗ୍ୟେ । ଭେଟ ପଡ଼ିଲ ତୁମ୍ଭ ଆଗେ ॥
ତୁଳସୀଦଳ ଜଳ ସଙ୍ଗେ । ପ୍ରପାତ ହେଲା ମୋର ଅଙ୍ଗେ ॥
ଏଣେ ଖଣ୍ଡିଲି ମହାପାପ । ସୁନ୍ଦର ହେଲା ମୋର ରୂପ ॥
କାର୍ତ୍ତିକ ଯିବି ବୋଲି ମୋତେ । ତୁମେ ଯେ ପଚାରିଲ ହିତେ ॥
ମୁହିଁ ଜାଣିଲି ତାହା କସ । ତୁମ୍ଭେ କହିବ ଉପଦେଶ ॥
ତୁମ୍ଭେ ମୋ ପିତା ତୁମ୍ଭେ ଗୁରୁ । ଯେମନ୍ତେ ତରିବି ସଂସାରୁ ॥
ଏ କଥା ଆଜ୍ଞା ହେଉ ମୋତେ । ତୁମ୍ଭେ ଯେ ଇଷ୍ଟ ଦଇବତେ ॥
ଏମନ୍ତ ବୋଲି କର ଯୋଡ଼ି । ବିପ୍ର ଚରଣତଳେ ପଡ଼ି ॥

### ନାରଦ ଉବାଚ

ଏମନ୍ତ କଳହା ବଚନେ । ବିପ୍ର ବିଚାରୁଅଛି ମନେ ॥

ଏ ଯେ ସୁବର୍ଣ୍ଣ ଅରକ୍ଷିତ । ଅମୃତରେ ଝଣ୍ଡିଲ ଦୁରିତ ॥
ଏବେ କାର୍ତ୍ତିକ ଯିବ ଏହି । ବନ୍ଧୁ ସୋଦର କେହି ନାହିଁ ॥
ଆମ୍ଭେ ନ ଦେଲେ ପୁଣ୍ୟ ଗତି । ନରକ ହୋଇବ ସୁବର୍ଣ୍ଣ ॥
ଉତ୍ତମ ଜନେ ଛନ୍ତି କହି । ଦୟା ଉପରେ ଧର୍ମ ନାହିଁ ॥
ଦୟା ଯେ ପର ଉପକାର । ସଜ୍ଜନ ଧର୍ମ ପରେ ସାର ॥
ଏଣୁ ଏହାକୁ ନିସ୍ତାରିବ । ମୋର ଧର୍ମରୁ ଅଧେ ଦେବ ॥
ସେ ଧର୍ମଫଳେ ଏ ସୁନ୍ଦରୀ । ଘୋର ସଂସାରୁ ଯାଉ ତରି ॥
ଏତେ ବଚନ ବିପ୍ରବର । ହସ୍ତେ ଘେନିଲ କୁଶ ନୀର ॥
ଆପଣା କଲା କର୍ମ କୃତ୍ୟ । କାର୍ତ୍ତିକ ଉଦ୍‌ଯାପନ ବ୍ରତ ॥
ସେ ଧର୍ମ ବେନି ଭାଗ କଲା । କଳହା କରେ ଜଳ ଦେଲା ॥
ତତକ୍ଷଣେ ଧର୍ମ ଭାଗ ପାଇ । କଳହା ଗଲା ମୋକ୍ଷ ହୋଇ ॥
କ ଅବା ଦେବା ପଟାନ୍ତର । ଦିଶିଲା କମଳା ଅବତାର ॥
କାର୍ତ୍ତିକ ଦୀପଦାନ ଫଳେ । ଜାଜ୍ୱଲ୍ୟମାନ ଜ୍ୟୋତି ଜ୍ୱଳେ ॥
ଅଙ୍ଗେ ଅମୂଲ୍ୟ ଆଭରଣ । ଦିବ୍ୟକେ ଆଦିତ୍ୟ କିରଣ ॥
ଦିବ୍ୟପଟମା ଅଙ୍ଗେ ଶୋଭା । କନକ କାନ୍ତି ପ୍ରାୟେ ଆଭା ॥
ଏମନ୍ତ ରୂପ ବିପ୍ର ଦେଖି । ମନକୁ କଲା ମହା ସୁଖୀ ॥
ଏହି ସମୟେ ଶୂନ୍ୟ ପଥୁ । ଜ୍ୟୋତି ପ୍ରକାଶ ହେଲା ଦୂରୁ ॥
ସୂର୍ଯ୍ୟମଣ୍ଡଳ ପ୍ରାୟେ ଦିଶି । ଆସଇ ଆକାଶରୁ ଖସି ॥
ଶୁଦ୍ଧ ସୁବର୍ଣ୍ଣମୟ ଯାନ । ଅଷ୍ଟ ରତ୍ନରେ ଶୋଭମାନ ॥
ମଣି ଦର୍ପଣ ପନ୍ତି ପନ୍ତି । ଚନ୍ଦ୍ରମା ପ୍ରାୟେ ଦିଶେ କାନ୍ତି ॥
ଶ୍ୱେତ ଚାମର ରଙ୍ଗ ଶାଢ଼ୀ । ହୀରା ମାଣିକ୍ୟ ହେବ ଜଡ଼ି ॥
ପାରିଜାତକ ପୁଷ୍ପମାଳ । ମୁକୁତା ଶୋଭା ପରିମଳ ॥
ଧ୍ୱଜ କମଳ ଚକ୍ର ଶଙ୍ଖ । ପତାକା ଉଡ଼େ ଫରଫର ॥
ସେ ରଥେ ବିଷ୍ଣୁଗଣେ ବସି । ତାଳ ମୃଦଙ୍ଗ ନାଦ ଘୋଷି ॥

ଗୋବିନ୍ଦ ଗୁଣ ଗୀତ ସ୍ୱରେ । ଗାୟନ କରୁଛନ୍ତି ଧୀରେ ॥
ଉର୍ବଶୀ ପ୍ରାପ୍ତ୍ୟେ ଲକ୍ଷ ନାରୀ । ଖଡ୍ଗ ଚାମର କରେ ଧରି ॥
ବିବିଧ ଉପହାର ଘେନି । ବିମାନେ ଉଭାରି କାମିନୀ ॥
ଅଷ୍ଟଶୀଳ ସୁଶୀଳ ମେଳେ । ଅଶ୍ୱ ବିଶ୍ୱାନେ ଯାନ ଚଳେ ॥
ଶୂନ୍ୟମଣ୍ଡଳୁ ରଥେ ଖସି । ଭୂମି ନିକଟେ ହେଲ ଆସି ॥
ସେ ବେନି ବିଷ୍ଣୁ ଅନୁଚରେ । କଳହା କର ଧରି କରେ ॥
ବିମାନେ ବସାଇଲେ ତୋଳି । ଯୁବତୀ ହେଲେ ହୁଳହୁଳି ॥
ତା ଦେଖି ବିପ୍ର ଧର୍ମଦତ୍ତ । ଭୂମିରେ କଲ ଦଣ୍ଡବତ ॥
ବିଷ୍ଣୁ ଗଣଙ୍କୁ ସ୍ତୁତି ପୁଣି । ଶିରେ ନିବେଶି ବେନି ପାଣି ॥
ବୋଇଲ କ୍ଷଣମାତ୍ର ରହ । କାହୁଁ ଅଇଲ ତୁମ୍ଭେ କହ ॥
କି ତୁମ୍ଭେ ଦେବ ଯକ୍ଷ ଋଷି । କି ଅବା ବଇକୁଣ୍ଠବାସୀ ॥
ବିଷ୍ଣୁଙ୍କ ପ୍ରାପ୍ତେ ତୁମ୍ଭ କାୟ । ବିରାଜୁଅଛୁ ଜ୍ୟୋତିର୍ମୟ ॥
ଏଣୁ ଜାଣିଲି ଉପଦେଶି । ନିଶ୍ଚୟ ବଇକୁଣ୍ଠବାସୀ ॥
ପ୍ରଭୁ ଅଜ୍ଞାରେ ଆସିଅଛ । ମୁଁ ଏହା ଜାଣିଲି ପ୍ରତ୍ୟକ୍ଷ ॥
କଳହା ମୁକତି କାରଣେ । ଅଇଲ ଆଜ୍ଞା ପରମାଣେ ॥
ଏ ନାରୀ ଧର୍ମ ଭାଗ ପାଇ । ଯାଉଅଛି ଯେ ମୋକ୍ଷ ହୋଇ ॥
ମୁଁ ଏହା ଦେଖିଲି ନୟନେ । କାର୍ତ୍ତିକ ବ୍ରତ ମହାପୁଣ୍ୟେ ॥
ସଂସାରୁ ନିସ୍ତରିଲ ନାରୀ । ମୁଁ ଯେ ସେ ବ୍ରତ ଅଛି କରି ॥
ମୋତେ ହୋଇବ କେଉଁ ଗତି । ବିଚାରି କହ ଶୁଦ୍ଧମତି ॥
ବ୍ରାହ୍ମଣ ମୁଖରୁ ଏମନ୍ତ । ଶୁଣି କହନ୍ତି ବିଷ୍ଣୁଦୂତ ॥

ଅଷ୍ଟଶୀଳ ଉବାଚ

ହେ ବିପ୍ର ଶୁଣ ସାବଧାନେ । ତୋର କାର୍ତ୍ତିକ ଧର୍ମଦାନେ ॥
ପିଶାଚୀ ପାପଦେହ ଲେଞ୍ଛି । ବିଷ୍ଣୁଲୋକକୁ ଯାଉଅଛି ॥
ତୁ ସ୍ୱୟଂ ଅର୍ଜିଅଛୁ ଧର୍ମ । ଜନ୍ମରୁ ଦହି ପାପକର୍ମ ॥

ସର୍ବ ସୁକୃତ କର୍ମ ତୋର । ବିଷ୍ଣୁ ସେବାରେ ତତପର ॥
ବେଦାଧ୍ୟୟନେ କର୍ମକାଣ୍ଡ । ବଣା ନୋହୁଛୁ ଧର୍ମଦାଣ୍ଡେ ॥
ଯେ ତୁମ୍ଭ ଶୁଦ୍ଧ ଧର୍ମଘେଣି । କାର୍ତ୍ତିକ କୃଷ୍ଣ ଏକାଦଶୀ ॥
ତୁଳସୀ ସେବା ଶୁଦ୍ଧଚିତ୍ତେ । ଗୋବିନ୍ଦ ନାମ ଅନୁବ୍ରତେ ॥
ସୁମରୁଥାଅ ଶୁଦ୍ଧ ମନେ । ଏକଥା ଜାଣୁ ଆମ୍ଭେମାନେ ॥
ଅନେକ ବଇକୁଣ୍ଠ ପୁରେ । ଶ୍ରୀହରି ଲକ୍ଷ୍ମୀଙ୍କ ସଙ୍ଗରେ ॥
ଭକ୍ତଙ୍କ ଗୁଣ କହୁଥିଲେ । ପୁଣି ପ୍ରଶଂସା କରୁଥିଲେ ॥
ବୋଇଲେ ବିପ୍ର ଧର୍ମଦତ୍ତ । ବୈଷ୍ଣବଗୁଣେ ସାରଯୁତ ॥
ତାର ଘରଣୀ ଜନେଗୋଟି । ସ୍ୱାମୀ ସ୍ନେହରେ ଥାନ୍ତି ଖଟି ॥
ଗୃହସ୍ଥ ଆଜ୍ଞା ପରମାଣେ । ଆମ୍ଭ ସେବାରେ ଅନୁକ୍ଷଣେ ॥
ରତିହେଁ କରୁଥାନ୍ତି ସେବା । କ ପଟାନ୍ତର ତାଙ୍କ ଦେବା ॥
ଆମ୍ଭଙ୍କୁ ସେବା କଲେ ଯେତେ । ସେ ଗୁଣ ଶୁଝିବା କେମନ୍ତେ ॥
ତାଙ୍କ ମରଣ କାଳ ଜାଣି । ବୈକୁଣ୍ଠ ଭୁବନକୁ ଆଣି ॥
ଦୁର୍ଲଭ ଦେହ ତାଙ୍କୁ ଦେବା । ଆମ୍ଭ ନିକଟେ ରଖିଥିବା ॥
ଆମ୍ଭ କୈବଲ୍ୟ ଭୋଗ ପାଇ । ପାରୁଷେ ଥିବେ ସୁଖୀ ହୋଇ ॥
ଏମନ୍ତେ ଦଶଲକ୍ଷ ଯୁଗ । ପାଇବେ ବୈକୁଣ୍ଠରେ ଭୋଗ ॥
ତଦନ୍ତରେ ମର୍ତ୍ତ୍ୟପୁରେ । ସରଜୁ ନାମ ନଦୀତୀରେ ॥
ଅଯୋଧ୍ୟା ନାମେ ମହାଦେଶେ । ଜାତ ହୋଇବେ ସୂର୍ଯ୍ୟବଂଶେ ॥
ନାମ ହୋଇବ ଦଶରଥ । ନୃପତି ପଣେ ସାମରଥ ॥
ହୋଇବେ ଜମ୍ବୁଦ୍ୱୀପେ ରାଜା । ଯୁକତେ ତା ତିନି ଘରଜା ॥
କୌଶଲ୍ୟା କଇକେୟୀ ପୁଣି । ସୁମିତ୍ରା ସହ ତିନି ରାଣୀ ॥
ସେ ସତୀ ସାଧବୀଙ୍କ ଗର୍ଭେ । ଆମ୍ଭେ ଜନ୍ମିବୁ ପୁତ୍ରଭାବେ ॥
ଶ୍ରୀରାମ ନାମେ ଅବତରି । ଏକେ ଚତୁର୍ଦ୍ଧାରୂପ ଧରି ॥
ରଞ୍ଜିବା ଭକତଙ୍କ ମନ । କହିଲେ କମଳଲୋଚନ ॥

ଏ କଥା ଶୁଣିଅଛୁ ଆମ୍ଭେ । ହେ ବିପ୍ର କି ପଚାର ତୁମ୍ଭେ ॥
ନିଶ୍ଚୟ ବଇକୁଣ୍ଠ ଯିବ । ଅଳପ ଦିନ ଏଥି ଥିବ ॥
ଶୁଣି ବ୍ରାହ୍ମଣ କୃତ୍ୟାକୃତ୍ୟ । ବିଷ୍ଣୁ ଭାବରେ ଦେଇ ଚିତ୍ତ ॥
ସେ ବିପ୍ର ବିଷ୍ଣୁଦୂତ ପାଦେ । ମୋ ମନ ରହୁ ଅପ୍ରମାଦେ ॥
କହଇ ମହାଦେବ ଦାସ । ହରି ଚରିତ ସୁଧାରସ ॥

ଇତି ଶ୍ରୀପଦ୍ମପୁରାଣେ ଉତ୍ତରଖଣ୍ଡେ କାର୍ତ୍ତିକ ମାହାତ୍ମ୍ୟେ ବିଷ୍ଣୁଦୂତ ଓ ଧର୍ମଦତ୍ତ ସମ୍ବାଦେ ନାମ ସପ୍ତଦଶୋଽଧ୍ୟାୟଃ ।

—*—

## ଅଷ୍ଟାଦଶ ଅଧ୍ୟାୟ

### ନାରଦ ଉବାଚ

ଇତ୍ଥଂ ତଦ୍ ବଚନଂ ଶ୍ରୁତ୍ୱା ଧର୍ମଦତ୍ତଃ ସୁବିସ୍ମୟଃ ।
ପ୍ରଣମ୍ୟ ଦଣ୍ଡବଦ୍ଭୂମୌ ବାକ୍ୟଂ ଚେଦମୁବାଚହ ॥

ଶୁଣ ରାଜନ ଚୂଡ଼ାମଣି । ବିଷ୍ଣୁଦୂତଙ୍କ ବାକ୍ୟ ଶୁଣି ॥
ସେ ବିପ୍ରବର ଧର୍ମଦତ୍ତ । ପୁଣି ଭୂମିରେ ପ୍ରଣମିତ ॥
ଉଠି କପୋଳେ କର ଦେଇ । ବୋଇଲେ ଶୁଣିମା ଗୋସାଇଁ ॥
ପ୍ରାଣୀ ସୁଚିନ୍ତି ଅର୍ଥେ ବିହି । ଷଡ଼ ପ୍ରକାରେ ଧର୍ମ କହି ॥
ଯଜ୍ଞାଦି ଦାନ ତୀର୍ଥ ବ୍ରତ । ତପସ୍ୟା ବୃନ୍ଦାବନ ମତ ॥
ଏ ବିଧି ଧର୍ମ ଷଡ଼ଗୁଣେ । ଯେ କରେ ସାତ୍ତ୍ୱିକ ଲକ୍ଷଣେ ॥
ବହୁତ ଦିନେ ସିଦ୍ଧ ହୋଇ । ଅନ୍ତେ ଅଚ୍ୟୁତ ପାଶେ ଯାଇ ॥
ତୁଳସୀ ଦଳ ପ୍ରାପ୍ତି ମାତ୍ରେ । କଳୁଷ ନ ରହିବ ଗାତ୍ରେ ॥
ଏ କଥା ଦେଖିଲି ପ୍ରତ୍ୟକ୍ଷ । କଳହା ନାମେ ସ୍ତିରୀ ମୋକ୍ଷ ॥
ଏ ବଡ଼ ଦୁର୍ଲ୍ଲଭ ମହିମା । ତୁମ୍ଭେ ସର୍ବଜ୍ଞ ପୁଣ୍ୟଆତ୍ମା ॥
ଆଉ କି ଦେଖିଅଛ କାହିଁ । ତୁଳସୀ ଯେଣି ତପ ଦାହି ॥
ସଂସାରୁ ଯାଇଛନ୍ତି ତରି । ତୁଳସୀ ବୃକ୍ଷ ସେବା କରି ॥

ଏ କଥା ଦେଖିଥିଲେ କହ । ମୋର ସଂଶୟ ମନୁ ଦହ ॥
ବିପ୍ର ବଚନେ ବିଷ୍ଣୁ ଦୂତ । ବୋଲନ୍ତି ଶୁଣ ଏକଚିତ୍ତେ ॥
ତୁଳସୀ ମହିମା ଯେମନ୍ତ । କହିବା ତହିଁର ବୃତ୍ତାନ୍ତ ॥
ପୂର୍ବେ ଯେ କାଞ୍ଚି ନଗରପତି । ନାମ ତା ଚୋଳ ଚକ୍ରବର୍ତ୍ତୀ ॥
ବିଷ୍ଣୁ ଭକତ ପରେଶ ରାଜା । ଧର୍ମେ ପାଳଇ ଜନ ପ୍ରଜା ॥
ଯାବତ ଅରଜଇ ବିତ୍ତ । ତାବତ ଧର୍ମେ ଥାଇ ଚିତ୍ତ ॥
ଧର୍ମେ ସକଳ ଜନେ ପ୍ରୀତି । ଧର୍ମେ ସଞ୍ଚଇ ସର୍ବ କୀର୍ତ୍ତି ॥
ଆତ୍ମାର କାରଣ ନିମନ୍ତେ । ବିଷ୍ଣୁ ସେବଇ ଶୁଦ୍ଧଚିତ୍ତେ ॥
ପୂର୍ବେ ସମୁଦ୍ର ତୀରେ ରାଜା । ନିତ୍ୟେ କରଇ ବିଷ୍ଣୁ ପୂଜା ॥
ପାଷାଣେ ଦେଉଳ ତୋଳାଇ । ପାରୁଣେ ପେଖଣ ଖେଳାଇ ॥
ବିବିଧ ତରୁ ଫଳ ପୁଷ୍ପେ । ଯତନେ ରୋପି ଗୃହପାଶେ ॥
ଗଢ଼ାଇ ସୁବର୍ଣ୍ଣ ପ୍ରତିମା । ଅନନ୍ତ ପୁରୁଷ ଉତ୍ତମା ॥
ପ୍ରାସାଦ ମଧ୍ୟେ ତାଙ୍କୁ ସ୍ଥାପି । ଆଗେ ପୂଜଇ ନାମ ଜପି ॥
ନବୀନ ରତ୍ନ ହୀର ନୀଳା । ମାଣିକ୍ୟ ମୁକୁତା ପୋହଳା ॥
ବୈଦୂର୍ଯ୍ୟ ପଦ୍ମରାଗ ମଣି । ମର୍କତ ରତ୍ନ ଆଦି ଆଣି ॥
ମଣ୍ଡଣି କରି ବିଷ୍ଣୁ ଅଙ୍ଗେ । ବସ୍ତ୍ର କୁସୁମ ନାନା ରଙ୍ଗେ ॥
ବିବିଧ ଉପହାର କାଢ଼ି । ପୂଜା କରଇ ସ୍ତୁତି ପଢ଼ି ॥
ଗନ୍ଧ ଚନ୍ଦନ ଧୂପ ଦୀପ । ସଂଯୋଗି ଶ୍ରୀହରି ସମୀପ ॥
ପୂଜା କରଇ ଶୁଦ୍ଧ ମନେ । ଆଜ୍ଞା ମାଗଇ ପ୍ରତିଦିନେ ॥
ହେ ପ୍ରଭୁ ପରମ ଈଶ୍ୱର । ମୋର ପ୍ରଜାଙ୍କୁ ସୁଖୀ କର ॥
ପ୍ରକାଶ ହୁଅ ସର୍ବ ହୃଦେ । ମୋ ମନ ରହୁ ତୁମ୍ଭ ପାଦେ ॥
ଏମନ୍ତେ ବୋଲି ଆଜ୍ଞା ମାଗେ । ଜଗତଜନ ଅନୁରାଗେ ॥
ଏମନ୍ତ କେତେ କାଳ ଗଲା । ଦିନେ ଏମନ୍ତ କୃତ୍ୟ ହେଲା ॥
ନୃପତି ବିଷ୍ଣୁ ପୂଜାକାଳେ । ଏକ ବ୍ରାହ୍ମଣ ଆସି ମିଳେ ॥

ନାମ ତାହାର ବିଷ୍ଣୁ ଦାସ । ସେହି ନଗରେ ତାର ବାସ ॥
ଦଶମୀ ତିଥି ଦିନ ଶେଷେ । ବିଷ୍ଣୁଙ୍କ ଦରଶନ ଆଶେ ॥
ସ୍ନାହାନ ସାରି ପ୍ରାତଃକାଳେ । ପ୍ରବେଶ ହୋଇଲା ଦେବ ଆଳେ ॥
ହସ୍ତେ ତା ତୁଳସୀ ମଞ୍ଜରୀ । ବିଶେଷେ ପଦ୍ମ ଦ୍ରୋଣେ ଭରି ॥
ଦେଉଳ ଭିତରେ ପଶିଲାଇ । ମଣ୍ଡିଲା ବିଷ୍ଣୁ ଅଙ୍ଗେ ନେଇ ॥
ତୁଳସୀ ଦଳେ ବିଷ୍ଣୁ ବେଶ । ତାହାଙ୍କୁ ହୋଇଲା ଅଦୃଶ୍ୟ ॥
ତା ଦେଖି କୋପେ ନୃପବର । ବିପ୍ରଙ୍କୁ କରଇ ଧିକ୍କାର ॥
ବୋଲଇ ଧିକ ତୋର ବୁଦ୍ଧି । ତୁ କିସ ଜାଣୁ ପୂଜାବିଧି ॥
ସ୍ୱଭାବେ ଦୁଃଖୀ ଅକିଞ୍ଚନ । ଦରିଦ୍ରପଣେ ଜ୍ଞାନ ହୀନ ॥
ତୋତେ ମିଳିବ ଅବା କିସ । ବିଷ୍ଣୁଙ୍କୁ କରିବୁ ସନ୍ତୋଷ ॥
ଦେଖ ମୋହର ପୂଜାବିଧି । ରତ୍ନକାଞ୍ଚନେ ସର୍ବ ସିଦ୍ଧି ॥
ମଣ୍ଡିଛି ବିଷ୍ଣୁ କଳେବର । କେମନ୍ତେ ଦିଶନ୍ତି ସୁନ୍ଦର ॥
ତୁ ଆସି ବେଶ ଭ୍ରାନ୍ତ କଲୁ । ତୁଳସୀ ଦଳେ ଲଟାଇଲୁ ॥
ଏଣୁ ମୋ ମନେ ମହାତାପ । ନ ଦେଖି ବିଷ୍ଣୁ ନିଜ ରୂପ ॥
ତୁ ଯେ ବ୍ରାହ୍ମଣ ବୁଦ୍ଧି ନଷ୍ଟ । କେବଳ ବର୍ଣ୍ଣ ମଧ୍ୟେ ଶ୍ରେଷ୍ଠ ॥
ତେଣୁ ସହିଲି ତୋର ଦୋଷ । ଆଜ୍ଞା କରିବ ଅବା କିସ ॥
ରାଜା ବଚନ ବିପ୍ର ଶୁଣି । ସଧୀରେ କହୁଅଛି ବାଣୀ ॥
ହେ ନୃପ ନ କରିବା କୋପ । ମୋ ଠାରୁ ଶୁଣିବା ସ୍ୱରୂପ ॥
ଉତ୍ତମ ଋଷିଙ୍କ ବଚନେ । ମୁଁ ଶୁଣିଅଛି ପୂର୍ବେ ଦିନେ ॥
ବିଷ୍ଣୁ ପୂଜା ନିମନ୍ତେ ଦ୍ରବ୍ୟ । ବହୁ ବିଧାନେ ଭିଆଇବ ॥
ପୃଥିବୀ ତୁଲେ ପାଦ୍ୟ କରି । ବ୍ରହ୍ମା ସମାନେ ଶଙ୍ଖ ଧରି ॥
ଦ୍ରବ୍ୟ ସଞ୍ଚିବ ଶୁଦ୍ଧ ଚିତ୍ତେ । ସାତ ସମୁଦ୍ର ଜଳ ଯେତେ ॥
ଅର୍ଘ୍ୟ ନିମନ୍ତେ ଯେତେ କ୍ଷୀର । ମେରୁ ସମାନେ ଅଳଙ୍କାର ॥
ସପତ ନିଧି ରତ୍ନମଣି । ମଣ୍ଡିବ ବିଷ୍ଣୁ ଅଙ୍ଗେ ଆଣି ॥

ପାଦୋଦକ ଆଦି ସୁଷ୍ଟେ । ମଳୟ ଚନ୍ଦନ ସୁବାସେ ॥
ଜଗତେ ଯେତେ ସ୍ୱାଦୁ ଫଳ । ପୂଜାରେ ବାଢ଼ିବ ସକଳ ॥
ଷୋଡ଼ଶ ଦ୍ରବେ ପୂଜାବଧି । ନିଗମ ମନ୍ତ୍ରେ କରିସିଦ୍ଧି ॥
ବ୍ରହ୍ମ ମୁନିଙ୍କ ଉପଦେଶେ । ବିଷ୍ଣୁଙ୍କୁ ପୂଜିବ ହରଷେ ॥
ତେଣେ ହୋଇବ ଯେତେ ଧର୍ମ । ତୁଳସୀ ଦଳେ ନୋହେ ସମ ॥
ତୁଳସୀ କୋମଳ ମଞ୍ଜରୀ । ବେନି ହସ୍ତରେ ଥିବ ଧରି ॥
ଯେ ତାହା ଦେବ ବିଷ୍ଣୁ ଶିରେ । ସେ ଧର୍ମ କହିଲେ ନ ସରେ ॥
ବିଷ୍ଣୁ ଶ୍ରୀମୁଖେ ଛନ୍ତି କହି । ବିଧାତା ସର୍ବଶାସ୍ତ୍ରେ ଲହି ॥
ଈଶ୍ୱର ଆଦି ମୁନିଗଣେ । ପ୍ରକାଶ କଲେ ଜଣେ ଜଣେ ॥
ତେଣୁ ପ୍ରସିଦ୍ଧ ଏ ତୁଳସୀ । ଗୋବିନ୍ଦ ପୂଜାରେ ପ୍ରଶଂସି ॥
କେବେ ଏ କଥା ନୋହେ ମିଛ । ତୁ ରଜା ଗୁରୁଦ୍ୱାରେ ପୃଚ୍ଛ ॥
ଏମନ୍ତ ବ୍ରାହ୍ମଣ ବଚନେ । ରଜା କହଇ କୋପମନେ ॥
ତୁ ବିପ୍ର ନଷ୍ଟେ ବଡ଼ ଦୁଷ୍ଟ । ମୋତେ କରାଉ ଆସି ତୁଷ୍ଟ ॥
ଏ ମୋର ଧର୍ମ କୀର୍ତ୍ତି ଯେତେ । ପ୍ରକାଶ ହେଉଛି ଜଗତେ ॥
କେ ଏହା ସଂଖ୍ୟା କରିପାରି । ତୁ କାହିଁ ମୋର ସଙ୍ଗେ ସରି ॥
ତୁଳସୀ ବୃକ୍ଷ କେତେ ବେଳି । ଆପେ ବୋଲଉଅଛୁ ତପୀ ॥
ଆପଣା ଗୁଣ କହୁ ବଢି । ମୋର ଅଶେଷ ଧର୍ମ ନିନ୍ଦି ॥
ଏକଥା ପୃଚ୍ଛିଣ ବୁଝିବା । ଚାଲ ଉତ୍ତମ ସ୍ଥାନେ ଯିବା ॥
ମୋ ଗୁରୁ ମୁଦୁଗଲ ଋଷି । ସର୍ବଦା ଗୟା ତୀର୍ଥବାସୀ ॥
ତାଙ୍କ ସଙ୍ଗତେ ବିପ୍ରଗଣେ । ଅଛନ୍ତି ବୈଷ୍ଣବ ଲକ୍ଷଣେ ॥
ଯାଗ ସମ୍ବାଦ ଧର୍ମ ବାଟେ । ଅଛନ୍ତି ଗୟା ନଦୀତଟେ ॥
ସେଠାରେ ଧର୍ମ କର୍ମ ବିଧି । ପ୍ରଚ୍ଛନେ ହେଉଅଛି ସିଦ୍ଧି ॥
ତାଙ୍କ ନିକଟେ ଚାଲ ଯିବା । ଏ କଥା ତାଙ୍କୁ ପଚାରିବା ॥
ତୁଳସୀ ସେବା ଧର୍ମ ଫଳ । ଆଉ ଯାବତ କର୍ମ ମୂଳ ।

କେ ଏଥେ ଗୁରୁ ଲଭ୍ୟ ଅବା । ବିପ୍ର ଗୋଷ୍ଠିରେ ପଣ୍ଡିବା ॥
ଏମନ୍ତ ବୋଲି ନୃପମଣି । ବିପ୍ରଙ୍କୁ ସଂଗେ ସଙ୍ଗେ ଆଣି ॥
ସେଦିନ ନିଜ ପୁରେ ରହି । ପ୍ରଭାତୁ ଗଲେ ପଥ ବାହି ॥
ତୃତୀୟ ଦିନ ଅବଶେଷେ । ମିଳିଲେ ଗଦାଧର ଦେଶେ ॥
ଦେଖିଲେ ଗଙ୍ଗାନଦୀ ତୀରେ । ଦକ୍ଷିଣ କୂଳ ବନଘୋରେ ॥
ବହୁତ ଶିଷ୍ୟଗଣ ଭୁଞ୍ଜିଲେ । ଯଜ୍ଞ କରନ୍ତି ମୂଦୁଗଲେ ॥
ବହୁତ ହମ୍ଭାର ଭିଆଇ । ନିରତେ ଅନ୍ନଦାନ ଦେଇ ॥
ବିବିଧ ବନ ମନୋହର । ନିର୍ମାଣ ଧର୍ମଶାଳା ପୁର ॥
ଯତି ବୈଷ୍ଣବବୃନ୍ଦ ମିଳି । ତୁଳସୀ ବନ ପ୍ରତିପାଳି ॥
ଭିଆଇ ନାନା ଉପହାର । ବିଷ୍ଣୁ ସେବାରେ ତତପର ॥
ତୁଳା ମକର ମେଷ ମାସ । ଶ୍ରୀ ଏକାଦଶୀ ଉପବାସ ॥
ଏ ଧର୍ମମାନ କରି ମୁଖେ । ଦିନ ବଞ୍ଚନ୍ତି ଅତି ସୁଖେ ॥
ତା ଦେଖି ଚୋଳ ଚକ୍ରବର୍ତ୍ତୀ । ଆନନ୍ଦେ ସ୍ନେହେଁ ଚଳକନ୍ତି ॥
ସେ ବିଷ୍ଣୁଦାସ ଦ୍ୱିଜବର । ମନେ ଚିନ୍ତିଲେ ଚକ୍ରଧର ॥
ଆନନ୍ଦ ଯଜ୍ଞସ୍ଥାନ ଦେଖି । ରାଜା ହୋଇଲେ ଚିତ୍ତେ ସୁଖୀ ॥
ସୁମରି ଗୁରୁ ଉପଦେଶ । କହଇ ମହାଦେବ ଦାସ ॥
ସକଳ ଲୋକେ ଚିନ୍ତ ହରି । ଭବସାଗରୁ ଯିବ ତରି ॥

ଇତି ଶ୍ରୀପଦ୍ମପୁରାଣେ ଉତ୍ତରଖଣ୍ଡେ କାର୍ତ୍ତିକ ମାହାତ୍ମ୍ୟେ ଚୋଳରାଜ ବିଷ୍ଣୁଦାସ ସମ୍ବାଦେ ନାମ ଅଷ୍ଟାଦଶୋଽଧ୍ୟାୟଃ ।

---

## ଊନବିଂଶ ଅଧ୍ୟାୟ

ବିଷ୍ଣୁଦୂତ ଉବାଚ
ଏବଂ ସମାରାଧୟିତ୍ୱା ଶ୍ରୀପୁଃପତିଂ
ତୟୋସ୍ତୁ ଚୋଳେଶ୍ୱର ବିଷ୍ଣୁଦାସୟୋଃ ।

ଅପାର କାଳେ ବଦ୍ଧ ଜଡବଚ୍ଛନ୍ତ୍ୟେ୍ୱା
ମୁନି ଷ୍ଟସଙ୍ଘଜଧ୍ୟ କର୍ମଣୋରପି ॥

ଶୁଣ ହେ ବିପ୍ର ଧର୍ମଦତ୍ତ । ଯେ ପୂର୍ବେ ପ୍ରଚ୍ଛନ୍ନ ଜଗତ ॥
ସେ ରଜା ଚୋଳ ଚକ୍ରବର୍ତ୍ତୀ । ଧର୍ମେ ନିଷ୍ଠସ୍ଥ ତାର ମତି ॥
ସେ ବିଷ୍ଣୁ ଦାସଙ୍କ ସଙ୍ଗତେ । ଯେଷ୍ଟାଙ୍କୁ ଗମନ କରନ୍ତେ ॥
ମିଳିଲେ ମୁଦ୍ଗଲ ପାଶେ । ଚରଣେ ନମିଲେ ବିଶେଷେ ॥
କଲ୍ୟାଣ କଲେ ମୁନିବର । ରଜା କହଇ ଯୋଡ଼ି କର ॥
ହେ ଗୁରୁ ଶୁଣ ସାବଧାନେ । ଆମ୍ଭେ ବିବାଦୀ ବେନି ଜନେ ॥
ଧର୍ମ ପଚ୍ଛିବି ଆସିଅଛୁ । ଯେ ଯାହା କର୍ମେ ଅଚିଅଛୁ ॥
କହିବୁ ତୁମ୍ଭ ଆଗେ ସତ । ତୁମ୍ଭେ ବୁଝିବ ବେନି ମତ ॥
ଅଧିକ ହେବ କାହା ଧର୍ମ । ତୁମ୍ଭେ କହିବା ଯଥାକ୍ରମ ॥
ପ୍ରଥମେ ମୋର ଧର୍ମ ଶୁଣ । ମୋ ଇଷ୍ଟ ଦେବ ନାରାୟଣ ॥
ତାର ଉଦ୍ଦେଶେ ମୋର ବୁଦ୍ଧି । ନିତ୍ୟ କରଇ ପୂଜାବିଧି ॥
ଯାବତ ଅରଜଇ ଧନ । ଦାନେ ସନ୍ତୋଷ ମୋର ମନ ॥
କ୍ଷୁଧାର୍ତ୍ତ ଅତିଥି ପ୍ରଦେଶୀ । ଏହାଙ୍କୁ ଅନ୍ନ ଦେଇ ତୋଷି ॥
କରଇ ଧର୍ମ କୀର୍ତ୍ତିମାନ । କୂପ ତଡ଼ାଗ ଉପବନ ॥
ଗୋଶାଳା ଧର୍ମଶାଳା ଘର । ନିରକ୍ଷ ଜନଙ୍କ ମନ୍ଦିର ॥
ପ୍ରାସାଦ ପ୍ରାକାର ମଣ୍ଡପ । ବିଜେ କରାଇ ବିଷ୍ଣୁରୂପ ॥
ଅତିଥି ଉପାଧିରେ ଭୁଆଇ । ଯତନେ ଛତ୍ରଦାନ ଦେଇ ॥
ଗ୍ରୀଷ୍ମକାଳେ ଜଳଦାନ । ସର୍ବଦାକାଳେ ମିଷ୍ଟ ଅନ୍ନ ॥
କ୍ଷୁଧାର୍ତ୍ତଜନ ଗ୍ରାସେ ଆଣ୍ଟ । ନିରନ୍ତେ ଦେଉଥାଇ ଯାଚ ॥
ରଜସୂୟାଦି ଯଜ୍ଞ ଯେତେ । କରୁଥାଇ ମୁଁ ବିଧିମତେ ॥
ଆବର ଦେଶ କାଳ ଦିନେ । ସୁପାତ୍ର ଦାନ ଶୁଦ୍ଧମନେ ॥
ଏମନ୍ତେ ଧର୍ମ ମୋର ଯେତେ । ସଂକ୍ଷେପି କହିବି ମୁଁ କେତେ ॥

ତୁମ୍ଭେ ଏ କଥା ଅନୁସର । ବୁଝିବା ବିପ୍ରଙ୍କୁ ପଚାର ॥
ଏ ଧର୍ମ କରଅଛୁ ଯେତେ । ଲକ୍ଷ୍ୟ କ ମୋ ଧର୍ମ ସଙ୍ଗତେ ॥
ଏ ବାଣୀ ଶୁଣି ବିଷ୍ଣୁ ଦାସ । କହୁଛୁ ଯାଜ୍ଞିକର ପାଶ ॥
ବୋଲଇ ଶୁଣ ସାବଧାନେ । ମୁଁ ଦ୍ୱିଜ ଥାଇ ତୋଷମନେ ॥
ତୁଳସୀ ବୃକ୍ଷ ସେବା କରି । ଗୋବିନ୍ଦ ନାମ ମନେ ଧରି ॥
ବେଦାଧ୍ୟୟନ କରି ମୁଖେ । ଦିନ ବଞ୍ଚଇ ଦୁଃଖ ସୁଖେ ॥
ଏଥି ମୋ ଆନ ଧର୍ମ ନାହିଁ । ନୃପତି ତୁଲେ ବାଦ କାହିଁ ॥
ତୁମ୍ଭେ ଏ ଧର୍ମ ଅନୁସର । ରାଜାଙ୍କୁ କହ ବୋଧ କରି ॥
ଏ ବାଣୀ ମୁଦ୍‌ଗଲ ଶୁଣି । କ୍ରୋଧ କରି ମନେ ଗୁଣି ॥
ଜାଣିଲେ ବିପ୍ର ଧର୍ମ ଶ୍ରେଷ୍ଠ । ନୃପତି କରିଛୁ ଅନିଷ୍ଟ ॥
ସ୍ୱଭାବେ ରଜ ଗୁଣ ଫଳେ । ତାମସ ଉପୁଜଇ ବଳେ ॥
ଏ କଥା ଉଚିତ ଏହାର । ଆମ୍ଭେ କହିଲେ ନୃପବର ॥
କି ଅବା ନୋହିବ ସନ୍ତୋଷ । ଏ ଆମ୍ଭ ଯଜମାନ ଶିଷ୍ୟ ॥
ଏ ଏକ ବ୍ରାହ୍ମଣ ମହାତପୀ । ମିଛ କହିଲେ ହେବା ପାପୀ ॥
ଏଥିକୁ ଉପାୟ କରିବା । ଅନ୍ୟ ମୁଖରେ କୁହାଇବା ॥
ଏତେ ବିଚାରି ମୁନିବର । ରାଜାଙ୍କୁ କହନ୍ତି ମଧୁର ॥
ହେ ନୃପ ଶୁଣ ମନ ଦେଇ । ତୁମ୍ଭେ ଆସିଲ କାହିଁପାଇଁ ॥
ସେ କଥା କହିବା ପ୍ରଚ୍ଛନ୍ନ । ଏବେ ଆମ୍ଭର ବାକ୍ୟ ଘେନ ॥
ଯାଗ ସମ୍ପୂର୍ଣ୍ଣ ହେବା ଯାଏ । ତୁ ରାଜା ଥାଅ ଏହିଠାଏ ॥
ବିପ୍ର ହିଁ ଥାଉ ତୋର ମେଳେ । ତୁ ଅନ୍ନ ଭୁଞ୍ଜ ଯାଗଶାଳେ ॥
ବିପ୍ରଙ୍କୁ ଦେଉଥିବା ସଞ୍ଜା । ଧର୍ମ ହିଁ କରୁଥିବା ପଞ୍ଜା ॥
ଦେବଙ୍କୁ ହବି ଦେଇ ତୋଷି । ସମସ୍ତେ ସଭା କରି ବସି ॥
ଫେଡ଼ିବା ତୁମ୍ଭର ସନ୍ଦେହ । ଶୁଣି ନୃପତି ମନେ ତୋଷ ॥
ଗୁରୁଙ୍କ ଆଜ୍ଞା ଘେନ ଶିରେ । ଅନ୍ନ ଭୁଞ୍ଜଇ ତାଙ୍କ ଘରେ ॥

ରନ୍ଧଣା ହାଣ୍ଡୀ ବସାଇର । ବିପ୍ରଙ୍କୁ ଦେଲେ ମୁନିବର ॥
ସେ ବିପ୍ର ପାଇଣ ସମ୍ମାନ । ସ୍ୱହସ୍ତେ ପାକ କଲା ଅନ୍ନ ॥
ବ୍ୟଞ୍ଜନ ଆଦି ଯତ୍ନ କରି । ରଖିଲେ ପଞ୍ଚ ପାତ୍ରେ ଭରି ॥
କବାଟ କିଳି ନିଜ ହାତେ । ନଦୀକି ଗଲେ ସ୍ନାନ ଅର୍ଥେ ॥
ସ୍ନାନ କରିଣ ଗଙ୍ଗାମଧରେ । ପ୍ରବେଶ ହେଲେ ଆସି ଘରେ ॥
ଦ୍ୱାରେ କବାଟ ଫିଟିଅଛି । ଅନ୍ନ ବ୍ୟଞ୍ଜନ ନାହିଁ କିଛି ॥
ଦେଖି ବିସ୍ମୟ ବିପ୍ରବର । ମନରେ କରଇ ବିଚାର ॥
ମୁଁ ସେ କବାଟ ଗଲି କିଳି । ଫିଟାଇ ଦେଲା କେ ଅର୍ଗଳି ॥
ଅନ୍ନ ବ୍ୟଞ୍ଜନ ସବୁ ନେଲା । ଭଲା ସେ ବାଟ ଚାହିଁଥିଲା ॥
ଏ କଥା ହୋଇଲେ ପ୍ରକାଶ । ଲୋକେ କରିବେ ଉପହାସ ॥
ବୋଲିବେ ଆହେ ବିପ୍ରବର । ଏ ପୁଣ୍ୟ ସ୍ଥାନେ ନାହିଁ ଚୋର ॥
ଆହାର ସମ୍ପୂର୍ଣ୍ଣ ନୋହିଲା । ତେଣୁ ବୋଲୁଛ ଚୋର ନେଲା ॥
ହୋଇବ ଭୋଜନ ନିମନ୍ତେ । କହୁଛି ବିଚାରିବେ ଚିତ୍ତେ ॥
କି ଅବା ସମ୍ପାଦିବେ ଶେଷେ । ଚୋରଙ୍କୁ ଦଣ୍ଡ ଦେବେ ଧରି ॥
ସେ ଦଣ୍ଡ ଆମ୍ଭ ଯୋଗୁଁ ହେବ । କେତେ ସେ ପ୍ରାଭବ ପାଇବ ॥
ସ୍ୱଭାବେ ଧନ ହୀନ ନରେ । ସେ ବିନା ଅନ୍ନ ଲୋଭକରେ ॥
ତାର ଶରୀରେ ବଳ ନାହିଁ । ତଞ୍ଚଣା ନ ପାରିବ ସହି ॥
ପ୍ରାଭବ ପାଇଲେ ମରିବ । ସେ ହତ୍ୟା ଆମ୍ଭଙ୍କୁ ଲାଗିବ ॥
କି ଅବା ଧର୍ମ ଆତ୍ମା ଜନେ । ଚୋରଙ୍କୁ ନ ଦଣ୍ଡିବେ ବନେ ॥
ଆମ୍ଭ ନିମନ୍ତେ ଦୁଃଖ ପଡ଼ । ପୁଣି ରନ୍ଧଣା ଥିବେ ଲୋଡ଼ ॥
ଆମ୍ଭଙ୍କୁ ରନ୍ଧାଇବେ ଅନ୍ନ । କେମନ୍ତେ କରିବା ଭୋଜନ ॥
ସ୍ୱଭାବେ ସାୟଂ କାଳ ଗଲା । ରଜନୀ ପ୍ରବେଶ ହୋଇଲା ॥
ନିଶାରେ ପୂଜା ବୈଶ୍ୱଦେବ । କେବେହେଁ ନିର୍ବାହ ନୋହିବ ॥
ରନ୍ଧନ ନ କରିବା ଯେବେ । ସୁଜନେ ସନ୍ତୋଷ ନୋହିବେ ॥

ଏମନ୍ତେ ଅଛୁ ବହୁ କ୍ଳେଶ । ଏ କଥା କଲେ ପରକାଶ ॥
ତେଣୁ ଏ ନିଜ କର୍ମ ଦୋଷେ । ଆଜ ରହିବା ଉପବାସେ ॥
ଏତେ ବଲ୍ଲିର ଦ୍ୱିଜବର । ଭୁଞ୍ଜିଲେ କମଣ୍ଡଳୁ ନୀର ॥
ସନ୍ତୋଷେ ପୁହାଇଲେ ନିଶି । ପ୍ରଭାତେ ସ୍ନାନ ସାରି ଆସି ॥
ଇଷ୍ଟ ଦେବତା ପୂଜା ସାରି । ବିଷ୍ଣୁ ଗାୟତ୍ରୀ ଜପ କରି ॥
ଏଥୁ ଅନ୍ତରେ ସେ ଯାଜ୍ଞିକେ । ଯାବତ ଚରନ୍ତି ସେବକେ ॥
ହବିଷ୍ୟ ଅନ୍ନକୁ ତଣ୍ଡୁଳ । ନବୀନ ଭାଣ୍ଡ କାଷ୍ଠ ଜଳ ॥
ବ୍ୟଞ୍ଜନ ଅର୍ଥେ ମୁଗ ଘୃତ । ଦଧିଲବଣ ସେବା କୃତ ॥
ଅନେକ ଆଦ୍ର ତୃଣ କୂଳେ । ବିଷ୍ଣୁ ଦାସକୁ ଆଣି ଦେଲେ ॥
ବିପ୍ର ତା ଦେଖି ତୋଷ ଚିତ୍ତ । ସ୍ୱପାକ ସମ୍ପାଦ ତୁରତେ ॥
ଦ୍ୱାରେ ସ୍ନାହାନ ବେଗେ ସାରି । କରେ ତୁଳସୀ ଜଳ ଧରି ॥
ଅନ୍ନ ବ୍ୟଞ୍ଜନ ଥିଲା ପହିଁ । ଯାଇ ଦେଖିଲା କିଛି ନାହିଁ ॥
ଚକିତ ହୋଇ ଦ୍ୱିଜବର । ଆତ୍ମା ବୋଧିଲା ଭକ୍ତି ମାଠ ॥
ସେ କଥା ପ୍ରକାଶ ନ କଲା । ଉପାସେ ସେଦିନ ରହିଲା ॥
ଆରେକ ଦିନେ ବିପ୍ର ପୁଣି । ରନ୍ଧଣା ସଜ୍ଜା ଦେଲେ ଆଣି ॥
କ୍ଷୁଧାର୍ତ୍ତ ହୋଇ ବିଷ୍ଣୁ ଦାସ । ସେ ଦିନ ରାନ୍ଧିଲା ପାୟସ ॥
ଶୀତଳ ଅର୍ଥେ ପତ୍ରେ ବାଢ଼ି । ଆପେ ବସିଲା ଦ୍ୱାର ମାଡ଼ି ॥
କ୍ଷୁଧାରେ ପାଇ ବଡ଼ ଶ୍ରମ । ଅଳପ ଆକର୍ଷିଲା ଘୁମ ॥
ଛଷଣେ ତେଜିଲା ଅଳସ । ଗୃହ୍ଣିଲା ନ ଦେଖି ପାୟସ ॥
ମନେ ନୋହିଲା ଆତ୍ମା କ୍ରୋଧୀ । ଉଦକ ପାନେ ଆତ୍ମା ବୋଧି ॥
ପୁଣି ସେ ଚତୁର୍ଥ ଦିବସେ । ଅନ୍ନ ରାନ୍ଧିଲା ନିରଳସେ ॥
ସଇଁରେ ପଖାଳି ପୟର । କ୍ଷୁଧାରେ ହୋଇ ତତପର ॥
ଅନ୍ନ ରାନ୍ଧିଲା ଯତ୍ନ କରି । କରେ ଉଦକ ଚଳୁ ଧରି ॥
ଗୋବିନ୍ଦ ରୂପ ମନେ ହେଜି । ଧ୍ୟାନ ଗୋଚର ଚକ୍ଷୁ ବୁଜି ॥

ବିଷ୍ଣୁଙ୍କୁ କଲି ନିବେଦନ । ଖୁଣ୍ଟିଲି ପାଶେ ନାହିଁ ଅନ୍ନ ॥
ନ ଦେଖି ସମ୍ମୁଖ ନୋହିଲି । ବିସ୍ମରେ ମୋର କର୍ମ ଭଲ ॥
କେଉଁ କ୍ଷୁଧାର୍ତ୍ତ ଦୀନ ଜନ । ନିତ୍ୟ ହରଇ ମୋର ଅନ୍ନ ॥
ଆତ୍ମା କରଇ ତା'ର ତୋଷ । ଏ ମୋର ପୂର୍ବ ଭାଗ୍ୟ ଯଶ ॥
ଏମନ୍ତ ମନେ ବିଚାରିଲା । ସେ ଦିନ ଉପବାସ କଲା ॥
ଏହି ପ୍ରକାରେ ପ୍ରତିଦିନ । କେ ଘେନି ଯାଏ ତାର ଅନ୍ନ ॥
ନପୂଜ ପିତୃଙ୍କ ମାସେ । ଅନ୍ନ ନ ଥାଇ ଆଜ ପାଶେ ॥
ଏମନ୍ତେ ସପ୍ତ ଦିନ ଗଲା । ବ୍ରାହ୍ମଣ ମନେ ବିଚାରିଲା ॥
କେ ହରୁଅଛି ଅନ୍ନ ମୋର । ମୋତେ ତ ନ ହେଲା ଗୋଚର ॥
କି ସେ ଦେବତା ଭୂତ ପ୍ରେତ । କେ କରୁଅଛି ଏତେ କୃତ୍ୟ ॥
କିବା ଉରଗ ନର ଦୁଃଖୀ । ମୁହିଁ ତ ନ ପାରିଲି ଦେଖି ॥
ଆଜ ଧରିବି ଲୁଚି ବସି । କେ ଅନ୍ନ ନେଉଅଛି ଆସି ॥
ଏତେ ବିଚାରି ବିପ୍ରମନ । ଲୁଚିତେ ସାରିଲା ରନ୍ଧନ ॥
କୋଠିରେ ଭୋଜନ ସଂଯୋଗି । ଭିତରେ ବସିଅଛି ଜଗି ॥
ଏହି ସମୟେ ଏକ ନର । ଅତି ଦୁର୍ବଳ କଳେବର ॥
ବପୁସେ ବୃଦ୍ଧ ଅସ୍ଥି ଚର୍ମା । ଚଣ୍ଡାଳରୂପୀ ହୀନକର୍ମା ॥
ଛିଣ୍ଡା ଲେଙ୍କଡ଼ା ବସ୍ତ୍ର ଧଡ଼ି । କଟିରେ ବାନ୍ଧିଅଛି ଭିଡ଼ି ॥
ଗଳାରେ ଲମ୍ବିଅଛି ଖଣ୍ଡେ । ପାଟ ଦଉଡ଼ି ତାର ମୁଣ୍ଡେ ॥
ଚାଲନ୍ତେ ତନୁ ଥର ଥର । ନୟନୁ ଝରୁଅଛି ନୀର ॥
କ୍ଷଣ କ୍ଷଣକେ ତାହା ପୋଛି । ଆଗ ପଛକୁ ଚାହୁଁଅଛି ॥
ଅଳପ ନଇଁବା ପରସ୍ତୁ । ମନେ ଉପୁଜୁଅଛି ଭୟ ॥
ବ୍ରାହ୍ମଣ ଗୃହେ ଆସି ମିଳି । ବାଢ଼ିଲା ଅନ୍ନ ବେଗେ ତୋଳି ॥
ମଧ୍ୟରୁ ଦୁଇଅନ୍ତେ ବାହାର । ବ୍ରାହ୍ମଣ ଡାକିଲା ପଛର ॥
କମ୍ପା ନେଉଛି ଲୁଚ୍ଛା ଅନ୍ନ । ଭିତରୁ ଦିଅଇ ବ୍ୟଞ୍ଜନ ॥

ଗୋ କ୍ଷୀର ଘୃତ ଦଧି ଲୁଣ । ସଂଯୋଗି ଦେବ ଏହିକ୍ଷଣ ॥
ସ୍ୱସ୍ଥାନେ ବସି ଅନ୍ନ ଭୁଞ୍ଜ । ମନରୁ ଭୟ ଭ୍ରାନ୍ତି ତେଜ ॥
ଏମନ୍ତ ବିପ୍ର ବାକ୍ୟ କର୍ଣ୍ଣେ । ଶୁଣି ଚଣ୍ଡାଳ ଭୟ ମନେ ॥
ଅନ୍ନ ପକାଇ ପଳାଇଲା । ଆଗେ ଯେ ଉଚ୍ଚ ଭୂମି ଥିଲା ॥
ଝୁଣ୍ଟି ପଡ଼ିଲା ମୁହଁ ମାଡ଼ି । ପିଣ୍ଡରୁ ପ୍ରାଣ ଗଲା ଛାଡ଼ି ॥
ତା ଦେଖି ବିଷ୍ଣୁ ଦାସ ଧାଇଁ । ଅତି ଆକୁଳ ମନ ହୋଇ ॥
ଅନ୍ନ ଶ୍ୱେରକୁ ତୋଳ ବେଗେ । ଦେଖିଲା ଜୀବ ନାହିଁ ଅଙ୍ଗେ ॥
ତାଟକା ହୋଇ ଦ୍ୱିଜବର । ମୁଖେ ସିଞ୍ଚିଲା ଶୀତ ନୀର ॥
ପତ୍ର ପଲ୍ଲବ ବେନି କରେ । ହସ୍ତ ମୁଖେ ବିଞ୍ଚେ ଧୀରେ ଧୀରେ ॥
ନିଜ ବସନ ଘେନି ଧୂଳି । ପୋଛୁ ଆପଣା ଅଙ୍ଗେ ବୋଲି ॥
ନର୍ଜୀବ ଦେଖି ତାର ଦେହେ । ବିପ୍ର ବୁଡ଼ିଲା ଶୋକ ମୋହେ ॥
ବିକଳେ କରଇ ରୋଦନ । ବୋଲଇ ଧିକ ମୋ ଜୀବନ ॥
ଏଡ଼େ ଦୁକର୍ମ କମ୍ପା କଲି । ନିଷ୍ଠୁର ଜୀବ ଅହଁ ମଲି ॥
କ୍ଷୁଧାର୍ତ୍ତ ଜନ ଅନ୍ନ ଗ୍ରାସ । ମୂର୍ଖ ସ୍ୱଭାବେ କଲି ନାଶ ॥
ମୁନିଏ କହିଛନ୍ତି ପୂର୍ବେ । ଖାଇବା ଗ୍ରାସ ଭାଙ୍ଗେ ଯେବେ ॥
ସପ୍ତଜନ୍ମ ପର୍ଯ୍ୟନ୍ତେ । ଅନ୍ନ ନ ମିଳେ କାଦାଚିତେ ॥
ଆହାର ଦେଖାଇ ଯେ ଜନ । ଘେନଇ ପ୍ରାଣୀଙ୍କ ଜୀବନ ॥
ସେ ପ୍ରାଣୀ କୃମି କୀଟ ହୋଇ । ଚଉଦ ନର୍କେ ପଡ଼ି ଥାଇ ॥
ଯୁଗ ଅନ୍ତରେ ପଶୁ ଯୋନି । ଲଭଇ ପୂର୍ବ କର୍ମ ଘେନି ॥
ମୁଁ ଏହା ଜାଣଇ ସ୍ୱରୂପ । ଅଜ୍ଞାନେ ଅର୍ଜିଲି ପାପ ॥
ଏମନ୍ତେ କରଇ ରୋଦନ । ପୁଣି ଅନେକ ବିଦ୍ୱଜ୍ଜନ ॥
ଆସି ମିଳିଲେ ତାର ପାଶ । ତାହାଙ୍କୁ ଦେଖି ବିଷ୍ଣୁ ଦାସ ॥
ବୋଲଇ ଏ ଅତିଥି ଶ୍ରେଷ୍ଠ । ମୋ ଯୋଗୁ ହେଲା ପ୍ରାଣଭ୍ରଷ୍ଟ ॥
ତେଣୁ ମୁଁ ଏହାର ସଙ୍ଗତେ । ଅନଳେ ଝାସିବି ନିଷ୍ଟିନ୍ତେ ॥

ଏଥିକୁ କର ଉଦଯୋଗ । ନାହିଁ ମୋ ଜୀବନେ ସୁହାଗ ॥
ଏମନ୍ତେ ବିପ୍ର ଶୁଦ୍ଧମନ । ଜାଣିଲେ ଜଗତ ଜୀବନ ॥
ତକ୍ଷଣେ ଆଜ୍ଞା ପରମାଣେ । ସେ ମୃତ ଶବ ଗଲା କେଉଣେ ॥
ଆପଣେ ଦିବ୍ୟରୂପ ଧରି । ଗରୁଡ଼ ପୃଷ୍ଠେ ବିଜେ କରି ॥
ଦେଖନ୍ତି ସୁର ନର ଋଷି । ଜାଜ୍ଜ୍ୱଲ୍ୟ ଜ୍ୟୋତି ବ୍ରହ୍ମରାଶି ॥
ଅତସି ପୁଷ୍ପ କାନ୍ତି ବର୍ଣ୍ଣ । ପୀତବସନ ପରିଧାନ ॥
ଚକ୍ର କମଳ ଶଙ୍ଖ ଗଦା । ଯେ ଅଳଙ୍କାର ଅଙ୍ଗେ ସଦା ॥
ଏକୁ ଆରେକ ତେଜ କାନ୍ତି । ଜ୍ୟୋତି ଶରୀରେ ବିରାଜନ୍ତି ॥
ଶୁଭଇ ଜୟ ଶଙ୍ଖନାଦ । ପାରୁଣେ ବେଢ଼ି ପାରିଷଦ ॥
ବହୁତ ସମ୍ପଦ ବେଷ୍ଟିତେ । ମିଳିଲେ ବିଷ୍ଣୁ ଦାସ ଠାରେ ॥
ଚାରି ଆୟୁଧ ଚାରି ଭୁଜେ । ଯେନ ଦେବାଧି ଦେବରାଜେ ॥
ବିପ୍ରଙ୍କୁ ବେନି କରେ ତୋଳି । ଗରୁଡ଼ କନ୍ଧେ ବନମାଳୀ ॥
କୋଳେ ବସାଇ ଯାନ୍ତି ଶୂନ୍ୟେ । ଦେଖନ୍ତି ଗୟାବାସୀ ଜନେ ॥
ରାଜା ଯେ ତୁରୁ ଚାରଣ ଥିଲା । ତା ଦେଖି ବିସ୍ମିତ ହୋଇଲା ॥
ଗୃହିଙ୍କୁ କହଇ ରାଜନ । କିସ ପୃଚ୍ଛିବ ଆଜ ପୁଣ୍ୟ ॥
ଦେଖ ବ୍ରାହ୍ମଣ କର୍ମ ଗୁଣ । ପ୍ରତ୍ୟକ୍ଷେ ଆସି ନାରାୟଣ ॥
ଗରୁଡ଼ ଆସନେ ବସାଇ । ବିପ୍ରଙ୍କୁ ନିଜ ପୁରେ ନେଇ ॥
ମୁଁ ଯେ ଅନେକ ପୁଣ୍ୟ କରି । ନୋହିଲି ବିପ୍ର ସଙ୍ଗେ ସରି ॥
ସେ ପ୍ରଭୁ ଜଗତ ଜୀବନ । ମୋତେ ନୋହିଲେ ଅବଧାନ ॥
ତେଣୁ ବୃଥାଏ ଜନ୍ମ ମୁହିଁ । ଏ ଦେହ ଥିବ କାହିଁ ପାଇଁ ॥
ବିଷ୍ଣୁ ଅଭାବେ ଯେଉଁ ପ୍ରାଣୀ । ସମ୍ପଦ ସୁଖ ପ୍ରାପ୍ତ ମଣି ॥
ତାର ଜୀବନ ଧିକ ଧିକ । ଯାବତ ଭୋଗ ସବୁ ନର୍କ ॥
ଏଣୁ ମୋ ଦେହେ ନାହିଁ କାର୍ଯ୍ୟ । ଅନଳେ ଧ୍ୱଂସ ଦେବି ଆଜ ॥
ଏମନ୍ତ ବୋଲି ନରସାଇଁ । ପଡ଼ିଲା ଅଗ୍ନି କୁଣ୍ଡେ ଡେଇଁ ॥

ବିଷ୍ଣୁ ଯେ ଥିଲେ ଶୂନ୍ୟମାର୍ଗେ । ତକ୍ଷଣେ ଲେଉଟିଲେ ବେଗେ ॥
ଯଜ୍ଞ ଅନଳ କୁଣ୍ଡେ ପଶି । ରାଜାଙ୍କୁ ଧଇଲେ ଆକର୍ଷି ॥
ବହମି ଗରୁଡ଼ କନ୍ଧରେ । ବିଜୟ କଲେ ଧାତକାରେ ॥
ବେନି ଯାନୁରେ ବେନି ଭୃତ୍ୟ । ବସାଇ କଲେ କୋଳାଗ୍ରତ ॥
ଦକ୍ଷିଣେ ଦ୍ୱିଜ ବାମେ ନୃପ । ଯେସନେ ବ୍ରହ୍ମା ଶିବରୂପ ॥
ମଧ୍ୟେ ସୁନ୍ଦର ଦେବରୂପ । ଶୂନ୍ୟେ ଶୁଭଇ ଜୟ ଜୟ ॥
ପଥେ କୁସୁମ ବୃଷ୍ଟି କରି । ବୈକୁଣ୍ଠେ ବିଜେ କଲେ ହରି ॥
ସେ ବେନି ଭୃତ୍ୟଙ୍କୁ ପାରୁଶେ । ରଖିଲେ ଅତ୍ୟନ୍ତ ବିଶ୍ୱାସେ ॥
ଯେ ବିପ୍ର ନାମ ଅଟଶୀଳ । ସୁଶୀଳ ନାମେ ମହୀପାଳ ॥
ହେ ଧର୍ମଦତ୍ତ ଶୁଣ ତୁମ୍ଭେ । ସେ ବେନି ବିଷ୍ଣୁଗଣ ଆମ୍ଭେ ॥
ସର୍ବଦା ବିଷ୍ଣୁଲୋକେ ଥାଉଁ । କାର୍ତ୍ତିକ ବ୍ରତ ପୂଜା ପାଉଁ ॥
ଯେ ପୂଜେ ଉଦ୍ଯାପନ କାଳ । ସେହି ବସନ୍ତ ଆମ୍ଭ ମେଳେ ॥
ତୁ ଯେ ପୁଚ୍ଛିଲୁ ଧର୍ମଯୁକ୍ତ । ତୁଳସୀ ସେବା ବିଷ୍ଣୁ ଭକ୍ତ ॥
ଏ ବେନି ସମ କରି ଜାଣ । କହୁ ଅଛନ୍ତି ନାରଦ୍ଗଣ ॥
ସେ ପ୍ରଭୁ ଭକତ ବିଶ୍ୱାସ । ଭଣଇ ମହାଦେବ ଦାସ ॥

ଇତି ଶ୍ରୀ ପଦ୍ମପୁରାଣେ ଉତ୍ତରଖଣ୍ଡେ କାର୍ତ୍ତିକ ମାହାତ୍ମ୍ୟେ ଅଟଶୀଳ ସୁଶୀଳ ଚରିତ କଥନେ ନାମ ଊନବିଂଶୋଽଧ୍ୟାୟଃ ।

---

## ବିଂଶ ଅଧ୍ୟାୟ

### ଧର୍ମଦତ୍ତ ଉବାଚ

ଜୟଶ୍ଚ ବିଜୟଶ୍ଚୋଭୌ ବିଷ୍ଣୋର୍ଦ୍ୱାସ୍ଥୌ ତୁ ସର୍ବଦା
କଲୁ ତାଭ୍ୟାଂ ପୁରା ଗୀର୍ଣ୍ଣ ଯସ୍ମାଦ୍ବିଷ୍ଣୁ ପଧାରଣେ ।

ଶୁଣ ରାଜନ ତୋଷ ମନେ । ସେ ବିଷ୍ଣୁ ଦୂତଙ୍କ ବଚନେ ॥
ଆନନ୍ଦେ ତନୁ ପୁଲକିତ । ପୁଣି ପୁଚ୍ଛଇ ଧର୍ମଦତ୍ତ ॥

ହେ ବିଷ୍ଣୁଦୂତେ ତୁମ୍ଭ ବାଣୀ । କୃତାର୍ଥ ହେଲି କର୍ଣ୍ଣେ ଶୁଣି ॥
ଏବେ ମୁଁ ପଚ୍ଛୁରିବ ଯାହା । ପ୍ରସନ୍ନ ହୋଇ କହ ତାହା ॥
ତୁମ୍ଭ ସଙ୍ଗତେ ବେନି ଜନେ । କାର୍ତ୍ତିକ ବ୍ରତ ଉଦ୍ୟାପନେ ॥
ବିଷ୍ଣୁ ସନ୍ନିଧେ ପୂଜା କରି । ଜୟ ବିଜୟ ନାମେ ଧାରି ॥
ସେ ବେନି ଜନଙ୍କର ଧର୍ମ । ପୂର୍ବେ ସେ କଲେ କେଉଁ କର୍ମ ॥
ସେ କଥା କହ ମୋର ଆଗେ । ଶୁଣିବି ତୁମ୍ଭ ଅନୁରାଗେ ॥
ବିଷ୍ଣୁ ଭକତ କଥା ଶୁଣି । ତରିବି ଭବ ତରଙ୍ଗିଣୀ ॥
ଏମନ୍ତ ବ୍ରାହ୍ମଣ ବଚନେ । ସେ ବିଷ୍ଣୁଦୂତେ ସାବଧାନେ ॥
ବୋଲନ୍ତି ଶୁଣ ବିପ୍ରବର । ପୂର୍ବେ ଯେ ବ୍ରହ୍ମାଙ୍କ କୁମର ॥
କର୍ଦ୍ଦମ ନାମେ ମହାମୁନି । ତା ପତ୍ନୀ ମନୁର ନନ୍ଦନୀ ॥
ନାମ ତାହାର ଦେବହୂତି । ସାଧ୍ୱୀ ସୁନ୍ଦରୀ ମହାସତୀ ॥
ତାର ଉଦରେ ନବ ନାରୀ । ସେ କନ୍ୟା ନବ ଋଷି ବରି ॥
ପୁଣି ଜନ୍ମିଲେ ପୁତ୍ର ତିନି । କପିଳ ବିଷ୍ଣୁକଳା ଘେନି ॥
ସିଦ୍ଧଗଣଙ୍କ ମଧ୍ୟେ ରହି । ଯୋଗ ସାଧନେ ଜ୍ଞାନ କହି ॥
ଆବର ଦେବହୂତି ନାମ । ଜୟ ବିଜୟ ନାମେ ସାନ ॥
ସେ ବେନି ଭାଇ ଗୁଣବନ୍ତ । ଧର୍ମେ ନିପୁଣ ଜ୍ଞାନେ ରତ ॥
ନିଗମ ଆଦି ଶାସ୍ତ୍ର ପଢ଼ି । ଦିନକୁ ଦିନ ଜ୍ଞାନ ବଢ଼ି ॥
ଜାଣିଲେ ଆତ୍ମାର କାରଣ । ସେବିଲେ ଶ୍ରୀଗୁରୁ ଚରଣ ॥
ସେ ଗୁରୁ ବ୍ରହ୍ମାଙ୍କ ନନ୍ଦନ । ସନତକୁମାରଙ୍କ ସ୍ଥାନ ॥
କପିଳ ନାମେ ମହାମୁନି । ତାହାଙ୍କ ଠାରୁ ଦୀକ୍ଷା ଘେନି ॥
ଶ୍ରୀ ନାରାୟଣ ମହାମନ୍ତ୍ର । ଅଷ୍ଟ ଅକ୍ଷରେ ଭେଦ ଯନ୍ତ୍ର ॥
ଷୋଡ଼ଶ ଉପଚାରେ ପୂଜା । ଯେଣେ ସନ୍ତୋଷ ଦେବରାଜା ॥
ଗୁରୁଙ୍କ ମୁଖୁଁ ସବୁ ଶିକ୍ଷି । ନିଜ ଆତ୍ମାକୁ କରି ସୁଖୀ ॥

ଜମ୍ବୁ ବଜମ୍ବୁ ବେନି ଭ୍ରାତ । ନିତ୍ୟେ ସେବନ୍ତି ଜଗନ୍ନାଥ ॥
ବିଷ୍ଣୁ ଭକତ ବେନି ଆଣେ । ସୁଖ ନ ଗଲେ ତାଙ୍କ ମନେ ॥
ଏମନ୍ତେ କେତେ ଦିନ ଅନ୍ତେ । ମରୁତ ନୃପେ ମହାଯଜ୍ଞେ ॥
ବିଷ୍ଣୁ ପ୍ରୀତିରେ ଚିତ୍ତ ଧରି । ଜମ୍ବୁ ବଜମ୍ବୁ ଯଜ୍ଞ କରି ॥
ଜ୍ୟେଷ୍ଠ ଭ୍ରାତାକୁ ବ୍ରହ୍ମାପଣେ । କନିଷ୍ଠ ଆଚାର୍ଯ୍ୟ ବରଣେ ॥
ଭିଆଇ ବହୁତ ସମ୍ଭାର । ପୂଜିଲେ ଅଗ୍ନି ଆଦି ସୁର ॥
ମରତଲୋକଙ୍କୁ ମିଷ୍ଟଅନ୍ନ । ବିପ୍ରଙ୍କୁ ଦେଲେ ମହାଦାନ ॥
ସେ ଅବଭୃଥ ସ୍ନାନକାଳେ । ଋତ୍ୱିକଗଣଙ୍କର ମେଳେ ॥
ଜମ୍ବୁ ବଜମ୍ବୁ ବେନି ଭାଇ । ତାଙ୍କୁ ବହୁତ ଧନ ଦେଇ ॥
ଦକ୍ଷିଣା ପାଇ ମନ ତୋଷେ । ଗଲେ ସେ ଆପଣାର ଦେଶେ ॥
ଧନ ରଖାଇ ଯତ୍ନକରି । ଜମ୍ବୁ ବଜମ୍ବୁ କର ଧରି ॥
ଏକାନ୍ତ ସ୍ଥାନେ ଯାଇ ବସି । କନିଷ୍ଠ ଭାଇଙ୍କି ଆଶ୍ୱାସି ॥
ଜମ୍ବୁ ବୋଇଲେ ଶୁଣ ବାବୁ । ତୁ ମୋର ବଚନ ଘେନିବୁ ॥
ରାଜା ଦେଇଛନ୍ତି ଯେତେ ଧନ । ଆମ୍ଭେ ସ୍ୱଭାବେ ତପୀଜନ ॥
ଧନରେ ହେଲେ ଆସକତ । ଧର୍ମ ଯେ ନୋହିବ ପ୍ରାପତ ॥
ତେଣୁ ଏ ଧନ କି କରିବା । ଗୁରୁଙ୍କୁ ସବୁ ନେଇ ଦେବା ॥
ଏ ଧନେ କରନ୍ତୁ ସେ ଯାଗ । ଏଣେ ଆମ୍ଭର ବଡ଼ ଭାଗ୍ୟ ॥
ଏମନ୍ତେ ଜ୍ୟେଷ୍ଠ ବାକ୍ୟ ଶୁଣି । ବଜମ୍ବୁ କହୁଅଛି ବାଣୀ ॥
ହେ ଭ୍ରାତ ମୋର ବାକ୍ୟ ଘେନ । ଆମ୍ଭ ଅର୍ଜିତ ଯେତେ ଧନ ॥
ବେନି ଭାଇଙ୍କ ସନମତେ । ଦେବା ତା ପିତାଙ୍କ ଅଗ୍ରତେ ॥
ସେ ଆମ୍ଭ ତାତ ଆଦି ଗୁରୁ । ଧନରେ ଧର୍ମ କୀର୍ତ୍ତି କରୁ ॥
ଦୁଃଖୀ ଦରିଦ୍ରେ କିଛି ଦେଉ । ପୁଣ୍ୟ ଅର୍ଜିଲେ ଯଶ ପାଉ ॥
ସାନର ବାକ୍ୟ ଶୁଣି କର୍ଣ୍ଣେ । ଜମ୍ବୁ କହୁଛି କୋପମନେ ॥
ତୁ ଶିଶୁ କିଛିହିଁ ନ ଜାଣୁ । କୁଟୁମ୍ବ ସ୍ନେହ ମନେ ଆଣୁ ॥

ପିତା ଜନନୀ ଇଷ୍ଟବନ୍ଧୁ । ଏ ସର୍ବ ମାୟା ମୋହସିନ୍ଧୁ ॥
ଦାସ ତନୟ ସେହ୍ନ ମତ । ଲହଣୀ ପ୍ରାପ୍ତ ହୋଏ ଜାତ ॥
ଉଦରେ ଗିରି ପ୍ରାପ୍ତ ହୋଇ । କୂଳେ ବାଜଲେ ଭଙ୍ଗି ଯାଇ ॥
କୁଟୁମ୍ବ ସ୍ନେହ ସେହ୍ନ ମତ । ଆମ୍ଭାକୁ ନାହିଁ ତେଣେ ମୁକ୍ତ ॥
ଗୁରୁ ସେ ଗତି ମୁକ୍ତି ଦ୍ୟନ୍ତ । ଆମ୍ଭାକୁ ପବିତ୍ର କରନ୍ତ ॥
ଉତ୍ତମ ଜ୍ଞାନ ଦୀକ୍ଷା ଦେଇ । ଅନ୍ତେ ଅଚ୍ୟୁତ ପୁରେ ନେଇ ॥
ତେଣୁ ଶ୍ରୀଗୁରୁ ପାଦେ ସେବା । ଅନ୍ୟେ କି ପ୍ରୟୋଜନେ ଅବା ॥
ଅଗ୍ରଜ ବାକ୍ୟ କର୍ଣ୍ଣେ ଶୁଣି । ତନୟ କହୁଅଛୁ ବାଣୀ ॥
ହେ ଭ୍ରାତ ଜ୍ଞାନ କଥା କହୁ । ସେ ଜ୍ଞାନ ଉପୁଜଇ କାହୁଁ ॥
ଦେହ ନ ଥିଲେ କାହୁଁ ଜ୍ଞାନ । ଦେହ ବିହୀନେ ସର୍ବ ଶୂନ୍ୟ ॥
ଯାବତ ଅଛୁ ଦେହ ବୁଦ୍ଧି । ତାବତ ସର୍ବ କର୍ମ ସିଦ୍ଧି ॥
ସକଳ ଜ୍ଞାନ ସାଧିକରି । ଏ ଦେହ ଥିବା ଯେବେ ଧରି ॥
ତେଣୁ ଏ ଦେହ ସାରସ୍ୱତ । ଯହୁଁ ଏ ହୋଇଲା ସମ୍ଭୂତ ॥
ତା ନାମ ପିତା ମାତା କହ୍ନ । ଏ ପିଣ୍ଡେ ଅଧିକାରୀ ସେହ୍ନ ॥
ତାଙ୍କ ଚରଣେ ତେଣୁ ସେବା । ଅର୍ଜି ଉତ୍ତମ ଧନ ଦେବା ॥
ତାଙ୍କୁ ସନ୍ତୋଷ ଆଗେ କରି । ପଛେ ଯାବତ ଇଷ୍ଟ ବରି ॥
ଯେବଣ ଜନ ମୂର୍ଖପଣେ । ନ ସେବେ ପିଅର ଚରଣେ ॥
ନିଜ ମାତାକୁ ଦୁଃଖ ଦେଇ । ଆନ ଗୁରୁଙ୍କୁ ସେବେ ଯାଇ ॥
କି ଅବା ତପ ସାଧିବାରେ । ଗଙ୍ଗାଦି ନାନା ତୀର୍ଥ କରେ ॥
ତାର ସୁକୃତ ଫଳ ଯେତେ । ଜନନୀ କ୍ରୋଧେ ଜଳେ ନିତେ ॥
ପିତାଙ୍କୁ କଲେ ଅସନ୍ତୋଷ । ସକଳ ଧର୍ମ ଯାଇ ନାଶ ॥
ଏଣୁ ପିଅର ପାଦେ ସେବ । ନଷ୍ଟ'ତେ ଅନ୍ୟ ଇଷ୍ଟ ଭାବ ॥
ଏ କଥା ତୁମ୍ଭ ମନେ ଘେନ । ମାତାପିତାଙ୍କୁ ଦେବା ଧନ ॥
ଏମନ୍ତ ବାକ୍ୟ ଜ୍ୟେଷ୍ଠ ଶୁଣି । ବୋଲଇ ତୁ ରେ ମୂଢ଼ପ୍ରାଣୀ ॥

ଧନ ଲୋଭରେ ଦେଇ ମନ । ମୋ ଚକ୍ଷୁଁ ତୋର କେତେ ଜ୍ଞାନ ॥
ଗୁରୁ ବଚନେ ଅପରାଧୀ । ଧନ ଗ୍ରହଣେ କଲୁ ବୁଦ୍ଧି ॥
ମୋର ବଚନ ଭଙ୍ଗୁ ବଳେ । ଏ ଦୋଷୁ ଗ୍ରାହ ହୁଅ ଜଳେ ॥
ଜଳଚରଙ୍କ ମଧ୍ୟେ ଥାଇ । ବଞ୍ଚ ତୁ ଜଳଜନ୍ତୁ ଖାଇ ॥
ଏମନ୍ତ ବୋଲି ଶାପ ଦେଲା । ଶୁଣି ବଜ୍ରସ୍ୟ କୋପ କଲା ॥
ବୋଇଲା ନାହିଁ ମୋର ଦୋଷ । ନ ବୁଝି କ୍ଷମା କଲୁ ରୋଷ ॥
ଶାପ ଯେ ଦେଲୁ ମୂର୍ଖପଣେ । ଓପ୍ରୋଧ ଗୁଡ଼ ଅକାରଣେ ॥
ଏଣୁ ତୁ ଗଜମୂର୍ଖ ହୁଅ । ଘୋର ଅରଣ୍ୟ ମାର୍ଗେ ଥାଅ ॥
ଏସନେ ଶାପ ଅନ୍ୟୋଅନ୍ୟେ । ଦେଇ କାତରେ ବେନିଜନେ ॥
ଧର୍ମ ସୁମରି ମନେ ଦୁଃଖେ । ବୋଲନ୍ତି ଶୁଣ ପଦ୍ମମୁଖେ ॥
ହେ ପ୍ରଭୁ କରୁଣା ଜଳଧି । ତୋର ସଞ୍ଚିଲା ସବୁ ବିଧି ॥
ସକଳ ଗାବେ ତୋର ବାସ । ତୁ ପ୍ରଭୁ ପରମ ପୁରୁଷ ॥
ପରମ ଆତ୍ମା ରୂପେ ଥାଇ । ଜୀବଙ୍କୁ ଜଗତ ଭ୍ରମାଇ ॥
ଜଗତ ତୋର ମାୟାବଳେ । ଫଳେ ଚକ ପ୍ରାପ୍ତ ଚଳେ ॥
ଏଣୁ ଏ ଦୁର୍ଜ୍ଜୟ ଜଗତ । କାହାର ନୁହଇ ଆପ୍ତ ॥
ତୁ ନାଥ ଜଗତ ଈଶ୍ୱର । ପ୍ରାଣୀଙ୍କ ଅଦୃଷ୍ଟି ଗୋଚର ॥
ଯାହା କରିବୁ ତୋର ଇଚ୍ଛା । କେ ଲଭିପାରେ ମନୋବାଞ୍ଛା ॥
ପ୍ରାଣୀ ଯେ ସଦା ସୁଖ ଅର୍ଥେ । ପଡ଼ନ୍ତି ଘୋରତମ ପଥେ ॥
ଆତଙ୍କେ ତା ନାମ ସୁମରି । ପୁଣି ଦୁସ୍ତରୁ ଯାନ୍ତି ତରି ॥
ଆମ୍ଭେ ସୋଦର ବେନି ଭାଇ । ଅର୍ଥ ମଦରେ ହେଲୁ ବାଇ ॥
ଶାପ ବହିଲୁ ଏକେ ଏକେ । ଏବେ ମରୁଛୁ ଗରୁ ଶୋକେ ॥
ଆତଙ୍କେ ତୋ ନାମ ସୁମରୁ । ତୁ ନାଥ ଉଦ୍ଧର ଦୁସ୍ତରୁ ॥
ଭକତଜନଙ୍କ ସୋଦର । ହେ ଅନ୍ତର୍ଯ୍ୟାମୀ କୃପାକର ॥
ଏମନ୍ତ ବୋଲି ବେନିଭାଇ । ହରି ଚରଣେ ମନଦେଇ ॥

ତାଙ୍କ ଆଡଙ୍କ ମନ ଜାଣି । ଅଶେଷ ଲୋକ ଚିନ୍ତାମଣି ॥
ବେନି ଭକ୍ତଙ୍କ ମଧ୍ୟେ ଆସି । ପ୍ରକାଶ ହେଲେ ବ୍ରହ୍ମରାଶି ॥
ଅପୂର୍ବ ଶୋଭା ଦିବ୍ୟକାନ୍ତି । ଦେଖି ଆନନ୍ଦ ବେନି ଯତି ॥
ଜୟ ବିଜୟ ବେନି ଭାଇ । ଭୂମିରେ ପାଏ ପଡ଼ ଶୋଇ ॥
ତୁରିତେ ଉଠି ଯୋଡ଼ି କର । ବୋଲନ୍ତି ସ୍ୱାମୀ ଚକ୍ରଧର ॥
ସ୍ୱାମୀ ଜଗତନାଥ ସ୍ୱାମୀ । ତୋ ବିନା ଅନ୍ୟ ଗତି ନାହିଁ ॥
ଆମ୍ଭ ଦୁର୍ବୁଦ୍ଧି କର୍ମ ଦୋଷ । ତବ ଦର୍ଶନେ ହେଉ ନାଶ ॥
ଅଧିକ କି କହିବୁଁ ସ୍ୱାମୀ । ତୁ ନାଥ ସ୍ୱୟଂ ଅନ୍ତର୍ଯାମୀ ॥
ଆମ୍ଭର ଅନ୍ତର୍ଗତ ଦୁଃଖ । ଜାଣି ବିନାଶ ପଦ୍ମମୁଖ ॥
ଭକ୍ତ ବଚନେ ଲକ୍ଷ୍ମୀସାଇଁ । ବୋଲନ୍ତି ଶୁଣ ବେନି ଭାଇ ॥
ତୁମ୍ଭେ ଯେ ଆମ୍ଭର ଭକତ । ନାମ ଆମ୍ଭର ଭକ୍ତବ୍ରତ ॥
ଯେ ମୋର ଭକତ ବଚନ । ମୁଁ ତାହା ନ କରଇ ଆନ ॥
ତେଣୁ ତୁମ୍ଭର ଶାପ ଯୋଗ । ଅବଶ୍ୟ ଅଙ୍ଗେ ହେଉ ଭୋଗ ॥
ଗଜ କୁମ୍ଭୀର ରୂପ ହୋଇ । ଜଳ ସ୍ଥଳରେ ବେନି ଭାଇ ॥
ଉଭୟ ଭେଟ ପରଯନ୍ତେ । ସମୟ ଯାଉ ଏହିମତେ ॥
ଯୋଗେ କୁଞ୍ଜର ଜଳପାନେ । ଗଣ୍ଡକୀ ତୀରେ ଏକଦିନେ ॥
ତୃଷାରେ ପିଉଥିବ ପାଣି । ସେ ଜଳେ ଥାଇ ଗ୍ରାହମଣି ॥
ଗଜକୁ ଧରିବ ତୁରିତେ । ସେ ଗଜ ସୁମରିବ ମୋତେ ॥
ମୁହିଁ ଆସିବି ତାହା ଜାଣି । ଚକ୍ରେ କୁମ୍ଭୀର ମୁଣ୍ଡ ହାଣି ॥
ଗଜ ମୋ ରୂପକୁ ଅନାଇଁ । ପ୍ରାଣ ଛାଡ଼ିବ ସେହିଠାଇଁ ॥
ସେ ଦୁଇ ଆତ୍ମା ତୁମ୍ଭେ ବେନି । ମୁହିଁ ସଙ୍ଗତେ ଯିବ ଘେନି ॥
ମୋର ସ୍ୱରୂପେ ମୋର ପୁରେ । ନିଶ୍ଚିନ୍ତେ ରହିଥିବ ଦ୍ୱାରେ ॥
ମୋତେ ଭଜିବ ଯେଉଁ ଜନ । ପ୍ରଥମେ ତବ ଦରଶନ ॥
ତୁମ୍ଭଙ୍କୁ କରିବେ ଭକତି । ତେବେ ପାଇବେ ମୋର ଗତି ॥

ମୁଁ ଏହା କରିବି ନିଶ୍ଚୟ । ଏଥିକୁ ନ କର ସଂଶୟ ॥
ଏମନ୍ତ କହି ବ୍ରହ୍ମବାଣୀ । ଗଲେ ଗଗନ ମାର୍ଗେ ପୁଣି ॥
ଜୟ ବିଜୟ ବେନି ଭାଇ । ବିଷ୍ଣୁ ଶ୍ରୀମୁଖ ଆଜ୍ଞା ପାଇ ॥
କେତେହେଁ କାଳ ଅନ୍ତେ ପୁଣି । ଅର୍ଜିଲ କର୍ମକୁ ନ ଜାଣି ॥
ଗଜ ସ୍ୱରୂପେ ଜୟ ମୁନି । ରହିଲା ବନେ ଆଶ୍ରା ଘେନି ॥
ବିଜୟ ଗ୍ରାହ ରୂପ ଧରି । ଗଣ୍ଡକୀ ଜଳେ ବାସ କରି ॥
ଏମନ୍ତେ କେତେ କାଳ ଗଲା । ଯେମନ୍ତେ କର୍ମ ଲେଖିଥିଲା ॥
ଶ୍ରୀହରି କହିଥିଲେ ଯାହା । ସେହି ପ୍ରକାରେ ଲକ୍ଷ୍ମୀନାହା ॥
ଗଜ କୁମ୍ଭୀର ଯୁଦ୍ଧକାଳେ । ପ୍ରକାଶ ହୋଇ ରବିତଳେ ॥
ପ୍ରାଣୀ ଆତଙ୍କ ଯହୁଁ ହରି । ତେଣୁ ପ୍ରଭୁଙ୍କ ନାମ ହରି ॥
ଗଜ ଆତଙ୍କ ମନ ଜାଣି । ଚକ୍ରେ କୁମ୍ଭୀର ମୁଣ୍ଡ ହାଣି ॥
ବେନି ଜନଙ୍କୁ ମୁକ୍ତି ଦେଲେ । ସେ ସ୍ଥାନ ହରିକ୍ଷେତ୍ର କଲେ ॥
ଗଜ କୁମ୍ଭୀର ଯେ ନିସ୍ତାର । ବୈକୁଣ୍ଠପୁରେ କଲେ ଦ୍ୱାସ୍ଥ ॥
ଜୟ ବିଜୟ ତାଙ୍କ ନାମ । ବୈକୁଣ୍ଠେ ଗୁଣେ ନାହିଁ ସମ ॥
ତାଙ୍କ ଚରିତ ଯେବା ଶୁଣି । ସେ ଅନ୍ତେ ପରଲୋକ ଜିଣି ॥
ଗୋବିନ୍ଦ ମନ୍ଦିରେ ବସନ୍ତି । କୈବଲ୍ୟ ଭୋଗ ଭୁଞ୍ଜୁଥାନ୍ତି ॥
ଶୁଣ ହୋ ବିପ୍ର ଧର୍ମଦତ୍ତ । ବିଷ୍ଣୁ ଆଜ୍ଞାହିଁ ବାକ୍ୟ ସତ୍ୟ ॥
ପୁଣି କହନ୍ତି ବିଷ୍ଣୁଗଣ । ହେ ବିପ୍ର ଦୃଢ଼ମନେ ଶୁଣ ॥
ତୁ ନିଶ୍ଚେ ଯିବୁ ବିଷ୍ଣୁପୁର । ଏବେ ଆମ୍ଭର ବୋଲ କର ॥
କ୍ଷିତିରେ ଥିବୁ ଯେତେ ଦିନ । ଆନନ୍ଦ କରୁଥିବୁ ମନ ॥
ଧର୍ମରେ କରୁଥିବୁ ଆଶା । ଉପେକ୍ଷି କାମ କ୍ରୋଧ ହିଂସା ॥
ଜନ୍ତୁରେ ଥିବ ଦୟା ଭାବ । ଜାଣିବଟି ସ୍ୱୟଂ ବାସୁଦେବ ॥
ତୁଳା ମକର ମେଷ ତିନି । ବ୍ରହ୍ମଚର୍ଯ୍ୟର ଦୀକ୍ଷା ଘେନି ॥
ପ୍ରାତଃସ୍ନାନାଦି ଦିନେ ଦିନେ । ସନ୍ତୋଷ ହବିଷ୍ୟ ଭୋଜନେ ॥

ଆବର ବ୍ରତ ଏକାଦଶୀ । ଗୋ ବସ୍ତ୍ର ଅତିଥି ତୁଳସୀ ॥
ଏହାଙ୍କୁ ପୂଜା ଧର୍ମ କର । ପ୍ରାଣୀ ତରନ୍ତି ଭବପାର ॥
ତୁ ଏବେ କର ତତ୍ତ୍ୱଜ୍ଞାନ । ବସ୍ତୁ ଲୋକରେ ଯେବେ ମନ ॥
ଏମନ୍ତ କହି ଦୂତ ବେନ । ସଙ୍ଗତେ କଳହାଙ୍କୁ ଘେନ ॥
ଆରୋହି ସୁବର୍ଣ୍ଣ ବିମାନ । ଗଲେ ଯେ ବୈକୁଣ୍ଠଭୁବନ ॥
ସୁଜ୍ଞାନ ପାଇ ଧର୍ମଦତ୍ତ । ନିଜ ଆଶ୍ରମେ ଉପଗତ ॥
ଏ ପ୍ରଶ୍ନ ପୃଥୁ ରାଜା ଆଗେ । ନାରଦ ମୁନି ଅନୁରାଗେ ॥
ବୋଲନ୍ତି ଶୁଣ ମହୀପତି । ଏତେ ଲକ୍ଷଣ ବସ୍ତୁ ଭକ୍ତି ॥
କାର୍ତ୍ତିକ ବ୍ରତ ମୂଳ କରି । ସେବିଲେ ଭବଜନ୍ତୁ ତରି ॥
ବିନା କାର୍ତ୍ତିକ ନ ଆରାଧି । କେବେହେଁ ଧର୍ମ ନୋହେ ସିଦ୍ଧି ॥
କାର୍ତ୍ତିକ ସ୍ନାନେ ଯେତେ ବ୍ରତ । ସେ ସବୁ ମନ୍ତ୍ର ଜଳ ସ୍ରୋତ ॥
ଛେଣ୍ଡିଲେ ବହୁଥାଇ ନୀର । ରଖିଲେ ଶୁଖିଯାଇ ଧାର ॥
ସେରୂପେ ସର୍ବ ଧର୍ମ ବିଧି । ସାଧିଲେ ହେଉଥାଇ ସିଦ୍ଧି ॥
କାର୍ତ୍ତିକ ଧର୍ମ ନୋହେ କ୍ଷୟ । ସର୍ବଦା ସୁରନଦୀ ପ୍ରାୟ ॥
ବିଧି ପ୍ରଜାରେ ବୋଲେ କଲେ । ସର୍ବଦା ବହୁଥାଇ ଭୂଲେ ॥
ସେ ସୁଧାରସ ପୁଣ୍ୟମୟ । ଅମ୍ଭା ସେଜଳେ ହଂସ ପ୍ରାୟ ॥
କେବେହେଁ ନ ପଡ଼ଇ ଦୁଃଖେ । ଆନନ୍ଦେ ବିହରଇ ସୁଖେ ॥
ତେଣୁ ଏ କାର୍ତ୍ତିକ ଚରିତ । ଶାସ୍ତ୍ର ପ୍ରବଣ କଲା ଗୀତ ॥
ଶୁଣିଣ ମନରେ ସନ୍ତୋଷ । ବିନାଶେ ଅଶେଷ କଳ୍ମଷ ॥
ମୁକତି ଲଭେ ଅନ୍ତକାଳେ । କାର୍ତ୍ତିକ ବ୍ରତ ଧର୍ମ ଫଳେ ॥
କ୍ଷିତିରେ କଣେ ଯମ ସୀମା । ଏମନ୍ତ କାର୍ତ୍ତିକ ମହିମା ॥
ଅବୋଧ ମହାଦେବ ଦାସ । ଏ ଗ୍ରନ୍ଥ କହିବ ତା କସ ॥
ବୁଧଜନଙ୍କ ଅନୁରାଗେ । ପ୍ରବଣ ଅର୍ଥ ଗୀତ ଯୋଗେ ॥
ଫସାରେ କଲି ପରକାଶ । ସୁଜନେ ଶୁଣି ହୁଅ ତୋଷ ॥

ଇତି ଶ୍ରୀ ପଦ୍ମପୁରାଣେ ଉତ୍ତରଖଣ୍ଡେ କାର୍ତ୍ତିକ ମାହାତ୍ମ୍ୟେ
ଜୟ ବିଜୟ ଚରିତ କଥନେ ନାମ ବିଂଶୋଽଧ୍ୟାୟଃ ।

---

## ଏକବିଂଶ ଅଧ୍ୟାୟ

### ପୃଥୁ ଉବାଚ

ନାରଦ ବାକ୍ୟ କର୍ଣ୍ଣେ ଶୁଣି । ସେ ପୃଥୁରାଜା ନୃପମଣି ॥
ବୋଲନ୍ତି ଶୁଣ ମୁନିବର । ତୁମ୍ଭେ କହିଲ ଧର୍ମସାର ॥
କାର୍ତ୍ତିକ ବ୍ରତ ଧର୍ମମାନ । ଆଉ କି ଅଛି ଇହିତନେ ॥
ସେ କଥା ଜାଣିଥିଲେ କହ । ଜଗତଜନ ଦୁଃଖ ଦହ ॥
ମୁନି ବୋଲନ୍ତି ଧର୍ମ ଅଛି । କାର୍ତ୍ତିକ ବ୍ରତ ଫଳ ଭଣି ॥

### ନାରଦ ଉବାଚ

କୃଷ୍ଣା କୃଷ୍ଣତନୁଃ ସାକ୍ଷାଦ୍‌ବେଣୀ ଦେବୋ ମହେଶ୍ୱରଃ
ତଶ୍ୱଙ୍ଗମପ୍ରଭାବାଂଶ୍ଚ ନାଳଂ ବକ୍ତୁଂ ଚତୁର୍ମୁଖଃ
ତଥାପିତତ୍ପ୍ରସୂତିଂ କୀର୍ତ୍ତୟିଷ୍ୟାମି ତା ଶୃଣୁ ॥

ସେ କଥା ଶୁଣ ମହାରଥ । ଯେ କୃଷ୍ଣବେଣୀ ନାମେ ତୀର୍ଥ ॥
ସେ ପୁଣ୍ୟ ସ୍ଥାନେ ଆଦିମାସେ । ରୋହିଣୀ ପ୍ରଥମ ଦିବସେ ॥
ଯେ ସ୍ନାନ କରେ ଏକବେଳେ । କୃଷ୍ଣ ସୁମରି ପ୍ରାତଃକାଳେ ॥
ସକଳ ପାପ କ୍ଷୟ ଯାଇ । କାର୍ତ୍ତିକ କୃତ୍ୟ ଫଳ ପାଇ ॥
ଅନ୍ତେ ଲଭଇ ବିଷ୍ଣୁପୁର । ଯାବତ ରବି ନିଶାକର ॥
ତାବତ ଥାଇ ବିଷ୍ଣୁ ଆଗେ । ସେ କୃଷ୍ଣବେଣୀ ତୀର୍ଥ ଫଳେ ॥
ଏମନ୍ତ ନାରଦ ବଚନ । ଶୁଣି ସନ୍ତୋଷ ପୃଥୁ ମନ ॥
ପୁଣି ପୃଚ୍ଛଇ ନରନାହା । ହେ ମୁନି ମୋତେ କହ ତାହା ॥
ଏମନ୍ତ ପୁଣ୍ୟ ତୀର୍ଥ ଯେହୁଁ । ପୂର୍ବେ ସେ ଉପୁଜିଲା କାହୁଁ ॥
ସେ କଥା କହ ମହାଯତି । ଦୁର୍ଲ୍ଲଭ ତୀର୍ଥ ପୁଣ୍ୟ ଖ୍ୟାତି ॥

## ନାରଦ ଉବାଚ

ଶୁଣ ରାଜନ ସାବଧାନେ । ସେ ସତ୍ୟଯୁଗେ ପୂର୍ବ ଦିନେ ॥
ବ୍ରହ୍ମ ଯେ ଯଜ୍ଞ କର୍ମକୃତେ । ଗୋବର୍ଦ୍ଧନ ଶଙ୍କର ସହିତେ ॥
ସକଳ ସୁରମୁନି ଭୂଲେ । କଣ୍ଠେପ୍ସୁ ଗିରି ଶିଖେ ଗଲେ ॥
ପବିତ୍ର ସ୍ଥାନେ ରହି ସର୍ବେ । ସେ ଯଜ୍ଞ ବିଧିକୃତ ପୂର୍ବେ ॥
ସର୍ବ ଜାଣନ୍ତି ବେଦବର । ଭିଆଇ ବହୁତ ସମ୍ଭାର ॥
ଭୃଗୁକୁ ଆଚାର୍ଯ୍ୟ ବରଣେ । ଋଷିଗଣ ବରିଲେ ଆପଣେ ॥
ବସ୍ତ୍ର ପ୍ରୀତିରେ କରି ବାଞ୍ଛା । ଯଜ୍ଞ ସଙ୍କଳ୍ପେ କଲେ ଇଚ୍ଛା ॥
ବ୍ରହ୍ମାଙ୍କୁ ଋଷି ନାରଦ ପୁଣ । ବୋଲନ୍ତି ଅନ୍ତ ବାକ୍ୟ ଶୁଣ ॥
ଯେ ତୁମ୍ଭ ଜ୍ୟେଷ୍ଠ ପତ୍ନୀ ସ୍ୱର । ତାର ନଦୀ ନାମ କ୍ଷୀର ॥
ସେ ଯେ ଆମ୍ଭର ପ୍ରିୟବନ୍ତୀ । ସକଳ ଗୁଣେ ସରସ୍ୱତୀ ॥
ଯେ ତାଙ୍କ ମାତା ତୁମ୍ଭ ନାରୀ । ବିଶେଷ ଜ୍ୟେଷ୍ଠ ନାମ ଧରି ॥
ତାଙ୍କୁ ସୁମରି ଯଜ୍ଞସ୍ଥାନେ । ସଙ୍କଳ୍ପ କରି ଆବାହନେ ॥
ଏ ବାକ୍ୟ ଶୁଣି ଭୃଗୁମୁନି । ବୋଲନ୍ତି କାଳ କୃତ୍ୟ ଘେନି ॥
ହେ ସଭାଜନେ ତୁମ୍ଭେ ଶୁଣ । ବ୍ରହ୍ମାଙ୍କ ପତ୍ନୀ ତିନି ଜଣ ॥
ସ୍ୱର ସାବିତ୍ରୀ ଗାୟତ୍ରୀ । ଏ ତିନିକାଳ ରୂପ ଧରି ॥
ସ୍ୱର ଯେ ସାୟଂକାଳ ରୂପୀ । ସାବିତ୍ରୀ ମଧ୍ୟକାଳ ବ୍ୟାପୀ ॥
ପ୍ରଭାତକାଳେ ଗାୟତ୍ରୀ । ଏ ତିନି ବ୍ରହ୍ମାଙ୍କର ନାରୀ ॥
ଏଥିକୁ କାଳ ବର୍ତ୍ତମାନେ । ବିଚାର କର ସାବଧାନେ ॥
ପ୍ରଥମେ ସୁମରିଲେ ସନ୍ଧ୍ୟା । ଯଜ୍ଞ ଆରମ୍ଭ ହେବ ଧନ୍ଦା ॥
ଏଥିକୁ ମୋର ବୋଲ କର । ଯଜ୍ଞେ ଗାୟତ୍ରୀ ନାମ ଧର ॥
ସେ ପ୍ରାତଃକାଳ ଦିନ ଆଦି । ସଙ୍କଳ୍ପେ ସୁମରିବ ଯଦି ॥
ଯଜ୍ଞ ହୋଇବ ବିଧିମତେ । ଯାବତ କର୍ମ ଯଥାକୃତେ ॥
ଏ ବାକ୍ୟ ଭୃଗୁ ମୁଖୁ ଶୁଣି । ନିଷ୍ଟୁର କଥା ବୋଲି ଜାଣି ॥

ସକଳ ମୁନି ସନମତେ । ବିଧାତା ସୁମରିଲେ ଚିତ୍ତେ ॥
ଗାୟତ୍ରୀ ନାମ ସୁମରଣେ । ଆସି ମିଳିଲେ ତତକ୍ଷଣେ ॥
ବ୍ରହ୍ମାଙ୍କ ଦକ୍ଷିଣ ପାରୁଶେ । ସେ ଦେବୀ ମିଳିଲେ ହରଷେ ॥
ତାହାଙ୍କୁ ଦେନି ବେଦପତି । ଯଜ୍ଞରେ ସଙ୍କଳ୍ପ କରନ୍ତି ॥
ଏମନ୍ତ ବେଳେ ଦେବୀ ସୁରୀ । ମନେ ଉଗ୍ର କ ମହାଭରି ॥
ସନ୍ନିଧେ ମିଳିଗଲେ ଆସି । କହନ୍ତି ସର୍ବ ସମଦର୍ଶି ॥
ତୁମ୍ଭେ ସକଳ କଥା ଜାଣ । ମୋ କଥା ସମସ୍ତେ ହେ ଶୁଣ ॥
ତୁମ୍ଭର ସଞ୍ଚିତ ଜଗତ । ଯଜ୍ଞରେ ଯେତେକ ବିଧିମତ ॥
ଏବେ ଅଧର୍ମ କୃତ୍ୟ କଲ । ଜ୍ୟେଷ୍ଠଙ୍କୁ ସଙ୍ଗେ ନ ବରିଲ ॥
ଅପୂଜ୍ୟ ଜନ କରି ପୂଜା । ବିବେକ ପଣ କଲ ତେଜ୍ୟା ॥
ଯେ ଦେଶେ ଏମନ୍ତ ବିଚାର । ଲଭନ୍ତି ଜନେ ସୂପକାର ॥
ସେ ଦେଶେ ନଷ୍ଟେ ଧର୍ମ ଦାନ । ଦୁର୍ଭିକ୍ଷ ମୃତ୍ୟୁ ଭୟ ତିନ ॥
ଅବଶ୍ୟ ଉପୁଜଇ ଏତେ । ଅକୀର୍ତ୍ତି ଶୁଭଇ ଜଗତେ ॥
ତୁମ୍ଭେ କି ନ ଜାଣ ଏ କଥା । ନଷ୍ଟେ ଆଶାରେ କଲ ବୃଥା ॥
ଏଠାରେ ଅଛ ଯେତେ ଲୋକ । ଜଡ଼ର ପ୍ରାୟେ ଅବିବେକ ॥
ମୁଁ ଜ୍ୟେଷ୍ଠ ବ୍ରହ୍ମାଙ୍କ ଘରଣୀ । ସେ ମୋର ସାନ ସପତ୍ନୀ ॥
ତାହାଙ୍କୁ ପତି ସଙ୍ଗେ ବରି । ଯଜ୍ଞ ଆରମ୍ଭ ଅଛ କରି ॥
ଏଣୁ ଅଚେତ ଦେବଜନ । ମୋର ଶାପକୁ ଯୋଗ୍ୟମାନ ॥
ବ୍ରହ୍ମା ସହିତେ ସୁରମୁନି । ସମସ୍ତେ ମୋର ଶାପ ଘେନି ॥
ନଦୀ ସ୍ୱରୂପେ ଅଷ୍ଟ ଦିଗେ । ଏଠାରୁ ବହିଯାଅ ବେଗେ ॥
ସୁରୀ ବଚନେ କୋପ କରି । କ୍ରୋଧେ ବୋଲନ୍ତି ଗାୟତ୍ରୀ ॥
ତୋର ଗୃହସ୍ଥ ଏକା ବିହି । ମୁଁ ତ ନୋହିଲି କହୁ କାହିଁ ॥
ତହିଁକି କଲୁ ଏଡ଼େ କୋପ । ଏକୁ ଅନେକ ଦେଲେ ଶାପ ॥
ଏ ଦୋଷେ ତୁହି ହୁଅ ନଦୀ । ଧର୍ମ ପୁରାଣ ସତ୍ୟ ଯଦି ॥

ଏମନ୍ତେ ଅନ୍ୟୋନ୍ୟର ଶାପେ । ସର୍ବେ ହୋଇଲେ ନଦୀ ରୂପେ ॥
ପଶ୍ଚିମେ ନ ପଶିଲେ ରବି । ଅଷ୍ଟ ଦିଗକୁ ଗଲେ ଜବି ॥
କହନ୍ତି ମୁନିଙ୍କ ଉତ୍ତମ । ଶୁଣ ସେ ନଦୀଙ୍କର ନାମ ॥
ଯେ ହରିହର ଏକ ଦେହୀ । ସେ କୃଷ୍ଣବେଣୀ ନାମ ହୋଇ ॥
ପଶ୍ଚିମ ସମୁଦ୍ରକୁ ଗଲେ । ବ୍ରହ୍ମା ଯେ କକୁଦ୍ମତୀ ନାମେ ॥
ପୂର୍ବ ଦିଗକୁ ବିଜେ କରି । ବେନି ପାରୁଶେ ବେନି ନାରୀ ॥
ଉତ୍ତର ଦିଗେ ସରସ୍ୱତୀ । ଦକ୍ଷିଣେ କହିଲି ଗୋମତୀ ॥
ଯେ ସ୍ୱର ସରସ୍ୱତୀ ନାମ । ଗାୟତ୍ରୀ ଗୋମତୀ ଉତ୍ତମ ॥
ଆବର ଯେତେ ସୁରଗଣେ । ନଦୀ ସ୍ୱରୂପେ ଜଣେ ଜଣେ ॥
ବହିଲେ ଜଳ ରୂପ ଧରି । କହିବା କେତେ ତା ବିସ୍ତାରି ॥
ସହସ୍ର ସଙ୍ଖ୍ୟା ଜଳପଥ । ଯେ କୃଷ୍ଣବେଣୀ ନାମେ ତୀର୍ଥ ॥
ତହିଁ ଯେ ସ୍ନାନ କରେ ଯାଇଁ । ଗୋଦାନ କୋଟି ଫଳ ପାଇ ॥
କାର୍ତ୍ତିକେ ପ୍ରାତଃ ସ୍ନାନ କଲେ । କାର୍ତ୍ତିକ ଧର୍ମ ପାଇ ଭଲେ ॥
ଆବର ଯେତେ ତୀର୍ଥ ତହିଁ । ଅନ୍ୟ ଅନ୍ୟରେ ଫଳ କହି ॥
ଯେ ଶୁଣେ କୃଷ୍ଣବେଣୀ କଥା । ତାର ହରଇ ସର୍ବ ବ୍ୟଥା ॥
ଅନ୍ତେ ଲଭଇ ବିଷ୍ଣୁ ବାସ । ଭଣଇ ମହାଦେବ ଦାସ ॥

ଇତି ଶ୍ରୀ ପଦ୍ମପୁରାଣେ ଉତ୍ତରଖଣ୍ଡେ କାର୍ତ୍ତିକ ମାହାତ୍ମ୍ୟେ
କୃଷ୍ଣବେଣୀ ଚରିତ କଥନେ ନାମ ଏକତ୍ରିଂଶୋଽଧ୍ୟାୟଃ ।

---

## ଦ୍ୱାତ୍ରିଂଶ ଅଧ୍ୟାୟ

ଶ୍ରୀକୃଷ୍ଣ ଉବାଚ

ଇତି ତଦ୍ ବଚନଂ ଶ୍ରୁତ୍ୱା ପୃଥିର୍ବିସ୍ମିତ ମାନସଃ
ସଂପୂଜ୍ୟ ନାରଦଂ ଭକ୍ତ୍ୟା ବିସସର୍ଜ ତଦା ପ୍ରିୟେ ।

ଏମନ୍ତେ ନାରଦଙ୍କ ବାଣୀ । ସେ ପୃଥୁ ରାଜା କର୍ଣ୍ଣେ ଶୁଣି ॥
ବହୁତ ଧର୍ମ ଉପଦେଶ । ନୃପତି ହୋଇଲା ସନ୍ତୋଷ ॥
ନାରଦ ବାକ୍ୟ ମନେ ଧରି । ସଂସାରେ ଧର୍ମ ଉଦେ କରି ॥
ଜ୍ଞାନ ପାଇଲେ ଏକେ ଏକେ । ମୁନି ଯେ ଗଲେ ବ୍ରହ୍ମଲୋକେ ॥
ସେ ମୁନି ବଚନେ ଅମୃତ । ସଂସାରେ ହୋଇଲା ବିଖ୍ୟାତ ॥
ଯେ ତାହା ଶ୍ରୁତି ପଠେ ଶୁଣି । କି ଅବା ସୁଜନେ ବଖାଣି ॥
ଯେ ଜନ ଶ୍ରଦ୍ଧା ଯୁକ୍ତେ ପୁଚ୍ଛେ । ସେ ସବ ମୁକ୍ତିପଥ ଗଚ୍ଛେ ॥
ଏମନ୍ତେ କୃଷ୍ଣ ମୁଖୁ ଶୁଣି । ପୁଣି ପୁଚ୍ଛନ୍ତି ଠାକୁରାଣୀ ॥
ମୋର ସଂଶୟ ଦୂର କର । ହେ ପ୍ରଭୁ କରୁଣାସାଗର ॥
କଳହା ନାମେ ଯେଉଁ ନାରୀ । ସେ ସ୍ୱାମୀଦ୍ରୋହ ପାପ କରି ॥
ବନେ ପିଶାଚୀ ହୋଇଥିଲା । ବିପ୍ର ତାହାକୁ ଧର୍ମ ଦେଲା ॥
ସେ ଧର୍ମେ ହୋଇଲା ମୁକତ । ଏଥିକୁ ପୁଚ୍ଛଇ ଏମନ୍ତ ॥
ଯେବଣ ସ୍ତ୍ରୀ ମୂର୍ଖ ପଣେ । ନ ସେବେ ସ୍ୱାମୀର ଚରଣେ ॥
ଉତ୍ତମ କଥା ନ ଶୁଣଇ । ଧର୍ମ କେ ତାହା ନ ଜାଣଇ ॥
କେହ୍ନେ ନ ଦେବ ତାକୁ ଧର୍ମ । ଏମନ୍ତେ ହେବ ଯାର କର୍ମ ॥
ତାହାକୁ ଅଛୁ ଯେଉଁ ଗତି । ବିସ୍ତର କହ ଜଗଜ୍ଜ୍ୟୋତି ॥
କୃଷ୍ଣ ବୋଲନ୍ତି ପ୍ରିୟେ ଶୁଣ । ସଂସାରେ ବିଧାତା ଭିଆଣ ॥
ଜ୍ଞାନୀ ଅଜ୍ଞାନୀ ଦୁଇ ମତେ । ବିଶେଷେ ଅଛନ୍ତି ଜଗତେ ॥
ତାହାଙ୍କ ପାପ ପୁଣ୍ୟ ଫଳ । ଦିନକୁ ଦିନ କରି ଠୁଳ ॥
ବିଧାତା ଦେଇଅଛୁ ବାଣ୍ଟି । ଯାହାକୁ ଯେଉଁ କର୍ମ ଘଟି ॥
ତାହା କହିବା ବିଧିମତେ । ହେ ପ୍ରିୟେ ଶୁଣ ଏକ ଚିତ୍ତେ ॥
ସଂସାରେ ଗୃହଧର୍ମ ସାର । ଯାହା ଅତ୍ୟନ୍ତ ପ୍ରିୟ ମୋର ॥
ବୃକ୍ଷଙ୍କ ମଧ୍ୟରେ ତୁଳସୀ । ତିଥିରେ ବ୍ରତ ଏକାଦଶୀ ॥
କ୍ଷେତ୍ରେ ଦ୍ୱାରକା ପୁର ସ୍ଥାନ । ମାସେ କାର୍ତ୍ତିକ ବିଦ୍ୟମାନ ॥

କାର୍ତ୍ତିକ ବ୍ରତ ମନେ ଧରି । ସେ ମୋତେ ସେବେ ମୂକ କରି ॥
ତାର ଦୁର୍ଦ୍ଦଶା ଦୂର ଯାଇ । ଏକେ ସେ ଅନ୍ତେ ମୋତେ ପାଇ ॥
ଯେ ପୁଣ ଥାଇ ତାର ସଙ୍ଗେ । ପାପ ନ ରହେ ତାର ଅଙ୍ଗେ ॥
ସେହି ଲଭଇ ମୋର ଗତି । ଏଥିଉତ୍ତାରୁ ଶୁଣ ସତୀ ॥
ଯେ ଜନ ହେବ ଦଣ୍ଡଧାରୀ । ଯେ ଲୋକ ଗ୍ରାମେ ଅଧିକାରୀ ॥
ଯେ ପ୍ରାଣୀ କୁଳର ନାୟକ । ଏ ତିନ ମଧ୍ୟେ ଯେତେ ଲୋକ ॥
ଅର୍ଜନ୍ତି ପାପ ପୁଣ୍ୟ କର୍ମେ । ସେ ଷଡ଼ଭାଗ ହୋଇ ଗମେ ॥
କର୍ତ୍ତା ଲଭଇ ପାଞ୍ଚ ଭାଗ । ଅଧିକ ଭାରେ ଅଂଶେ ଭୋଗ ॥
ଭୋଜନ ପରଷିବା ଠାରେ । ଯେ ପରାପର ମନେ ଧରେ ॥
ଆପଣେ ସ୍ନେହ ଅନୁସରି । ପରକୁ ଅନ୍ନ କ୍ଷୁଦ୍ରକରି ॥
ସେ ଲୋକେ ଯେତେ ପାପ ଥାଇ । ତିନ ଭାଗରୁ ଅଂଶେ ପାଇ ॥
ଯେ ପାପ ପୁଣ୍ୟ କରିବାରେ । ବୁଦ୍ଧି ଦାୟକ ହୋଇ ତାରେ ॥
କି ଅବା କରେ ଉପଯୋଗ । ସେ ପ୍ରାଣୀ ଲଭେ ସମ ଭାଗ ॥
ଯେ ଜନ ପରେ ନିନ୍ଦା କରେ । ପିଶୁନ ବଚନେ ଧିକାରେ ॥
ସେ ତିନ ଅଂଶ ପାପ ପାଇ । ସେ ଯାହା ସଙ୍ଗେ ସଙ୍ଗ ହୋଇ ॥
ଉଭୟ ପାପ ପୁଣ୍ୟ ଯେତେ । ଚତୁର୍ଥ ଅଂଶ ଲଭେ ନିତ୍ୟେ ॥
ଯେ ଜନ ମହାପାପୀ କହି । ସୁବର୍ଣ୍ଣ ଚୋର ଗୁରୁଦ୍ରୋହୀ ॥
ବ୍ରହ୍ମ ହତ୍ୟାଦି କୃତଘନ । ଏ ଚାରି ଲୋକ ସଙ୍ଗଜନ ॥
ପାଞ୍ଚହେଁ ସମ ମହାପାପୀ । ଚତୁର୍ଥ ଅଂଶୀ ଅନ୍ୟ ରୂପୀ ॥
ଯେ କଳେ ପରଦ୍ରବ୍ୟ ହରେ । କି ଅବା ଆପେ ଚୋରି କରେ ॥
ତାନ୍ତ୍ରିକ ପଣେ ଧର୍ମ କରେ । ଅଧର୍ମେ ଅର୍ଥୀ ଅର୍ଥ ହରେ ॥
ଅର୍ଥୀର ପାପ ଯେତେ ଥାଇ । ତାନ୍ତ୍ରିକ ଦେହେ ବସେ ଯାଇ ॥
ଗୃହିଣୀ ପୁତ୍ର ଶିଷ୍ୟ ଭୃତ୍ୟ । ଏ ଚାରି ଜନ ଲୋକମତ ॥
ସୁଖରେ ସେବା ଅନୁକ୍ରମେ । କାରେଣୀ ହୋନ୍ତି ପ୍ରଭୁ ଧର୍ମେ ॥

ଦତ୍ତ ହରଣ କରେ ଯେହୁ । ଉଭୟ ପାପକର୍ତ୍ତା ସେହୁ ॥
ଗୃହସ୍ଥ ଧର୍ମ ଯେବେ କର । ନ ଅବା ପାପହିଁ ଆଚର ॥
କୁଟୁମ୍ବ ଜନଙ୍କୁ ପୁଚ୍ଛିବ । ପ୍ରଭୁ ସେବକ ପରୁଶିବ ॥
ଯୁବଣ୍ଡ ପାପ ପୁଣ୍ୟ ବେନି । ଷଡ଼ ଅଂଶରେ ସ୍ୱାମୀ ଘେନି ॥
ସେବକ କର୍ମ ଏହି ରୂପେ । ସ୍ୱାମନ୍ତ ହୃଦଗତେ ବ୍ୟାପେ ॥
ଯେବଣେ ଜନ ଋଣ କରି । ଶୁଦ୍ଧି ନ ପାରି ଯାଏ ମରି ॥
ସେ ଧର୍ମ ଅର୍ଜିଥାଇ ଯେତେ । ସାଧୁତା ଦ୍ରବ୍ୟ ଅନୁମତେ ॥
ଖାତକ ତହୁଁ ଧର୍ମ ପାଇ । ଯମ କରନ୍ତେ ବୁଝି ଦେଇ ॥
ଖାତକ ଧର୍ମ ଯେବେ ନାହିଁ । ସାଧୁ ପାପରେ ହୋଇ ଗ୍ରାହୀ ॥
ଦ୍ରବ୍ୟ ସମାନେ ପାପ ପାଇ । ଖାତକ ନର୍କେ ପଡ଼ୁଥାଇ ॥
ଯେ ଇଷ୍ଟ ଅର୍ଥେ ମାଗି ଦ୍ରବ୍ୟ । ଆଣି ଗ୍ରହଣ କରେ ସର୍ବ ॥
ଦାତା ଲଭଇ ଦେବା ଧର୍ମ । ଯେବେ ତା ଥାଇ ପାପକର୍ମ ॥
ଗ୍ରାହ୍ୟ ଅଙ୍ଗରେ ବସେ ଯାଇ । କହନ୍ତି ପ୍ରଭୁ ଶ୍ରୀବତ୍ସାଙ୍କୀ ॥
ଏମନ୍ତେ ପାପ ପୁଣ୍ୟ ଯେତେ । ସଂସାରେ ହେଉଥାଇ ନିତ୍ୟେ ॥
ଏକ ଆରେକ କର୍ମ ମେଣ୍ଟି । ବିଧାତା ଦେଇଅଛି ବାଣ୍ଟି ॥
କେବଳ ଜନ୍ମ କର୍ମ ସାର । ଆପଣେ ଦେଲେ ପାଇ ପାର ॥
ଯେବଣ ଲଭିବ ପୁଣ୍ୟ ଯଶ । ଚକଳେ ଆତ୍ମା କରେ ନାଶ ॥
ଏହି ପ୍ରକାରେ ପାପ ପୁଣ୍ୟ । ଘେନି ସଂସାରେ ଜନମାନେ ॥
ଆରୋହି କର୍ମମୟ ରଥେ । ସ୍ୱର୍ଗ ନରକ ବେନି ପଥେ ॥
ସାଧୁ ଅସାଧୁ ସଙ୍ଗ ଫଳେ । ଗତ ଆଗତ କାଳେ କାଳେ ॥
ପ୍ରାଣୀ ହୁଅନ୍ତି ଆତ ଜାତ । କହନ୍ତି ବସୁଦେବସୁତ ॥
କେବଳ ସଂସାର ସାଗରେ । ସୁଜନ ସଙ୍ଗେ ଥିଲେ ତରେ ॥
ଭଣଇ ମହାଦେବ ଦାସ । ସୁଜନ ଜନରେ ବିଶ୍ୱାସ ॥

ଇତି ଶ୍ରୀ ପଦ୍ମପୁରାଣେ ଉତ୍ତରଖଣ୍ଡେ କାର୍ତ୍ତିକମାହାତ୍ମ୍ୟେ ସଙ୍ଗ ଗୁଣ କର୍ମ କଥନେ ନାମ ଦ୍ୱାବିଂଶୋଽଧ୍ୟାୟଃ ।

# ତ୍ରୟୋବିଂଶ ଅଧ୍ୟାୟ

## ଶ୍ରୀ ଭଗବାନୁବାଚ

କାର୍ତ୍ତିକବ୍ରତସଂସର୍ଗ ପ୍ରାପିଷ୍ଟସ୍ୟାପି ମୋକ୍ଷଣଂ ।
ବକ୍ଷ୍ୟେଂଧନେଶ୍ୱରକଥାଂ ପ୍ରବୋଷ୍ଠ ଭବତାଂ ଶୃଣୁଂ ॥

କହନ୍ତି ସର୍ବ ଲୋକେଶ୍ୱର । ହେ ପ୍ରିୟେ ଶୁଣ ଧର୍ମସାର ॥
ସୁଜନେ ସଙ୍ଗେ ମେଳ ହୋଇ । ଥିଲେ ଉତ୍ତମ ଗତି ପାଇ ॥
ସେ କଥା କହିବି ପ୍ରସ୍ତାବେ । ଅବନ୍ତୀ ନଗ୍ର ମଧ୍ୟେ ପୂର୍ବେ ॥
ବ୍ରାହ୍ମଣ ନାମ ଧନେଶ୍ୱର । ବାଲ୍ୟତ କାଳୁ ଦୁସସ୍ୱର ॥
ବିଦ୍ୟା ନ ପଢି ଦୁଷ୍ଟ ମତେ । ଅସାଧୁ ବାଳକ ସଙ୍ଗତେ ॥
ନିତ୍ୟେ ବୁଲଇ ନଗ୍ରାନ୍ତରେ । ଫିମ୍ପ ବାଠୁଳ ଶର କରେ ॥
ବୃକ୍ଷଙ୍କ ତଳେ ଅନୁସରି । ନିତ୍ୟେ ପକ୍ଷୀଙ୍କ ପ୍ରାଣ ହରି ॥
ତାହାକୁ ବନ୍ଦୀ କରି ପେଷି । ତା ଅର୍ଥେ କ୍ଷୁଦ୍ର ଜୀବ ନାଶି ॥
ଜୁତ ପାଶିଧି ମଠ ଲୁଟେ୍ୟ । ଧନ ହରଇ ଏହି ମତେ ॥
ସ୍ନାନ ଭୋଜନେ ନାହିଁ ଶୁଚି । ଏମନ୍ତ ବାଳ କାଳୁ ବଞ୍ଚି ॥
ଯୁବା ସମୟେ ମହାବଳୀ । ସୁଜନ ସଙ୍ଗେ ନିତ୍ୟେ କଳି ॥
ଅସାଧୁ ଲୋକ ସଙ୍ଗେ ପ୍ରୀତି । ନିନ୍ଦା କରଇ ଧର୍ମ କୀର୍ତ୍ତି ॥
କୁଟୁମ୍ବ ପୋଷଣ ନିମନ୍ତେ । ବାଣିଜ୍ୟବୃତ୍ତି କରେ ନିତ୍ୟେ ॥
ଯାବତ ଦ୍ରବ୍ୟ କିଣି ରଖି । ପୁଣି ବିକଇ ଲବ୍ଧ ଦେଖି ॥
ଯାବତ ରସ ଗୁଣ ଲୁଣ । କାଷ୍ଠ ଅଙ୍ଗାର ଆଦି ତୃଣ ॥
ଦାରୁ ଗନ୍ଧକ ଲାଖ ଲୁହା । ବଳଦ ପୃଷ୍ଠେ ଭଡ଼ା ବୁହା ॥
ଚର୍ମ ପାଦୁକା ଆଦି କିଣି । ଆମିଷ ମୁଣ୍ଡେ ବହିଆଣି ॥
ଗୋ ମେଷ ଛାଗଳ ସହିତେ । କିଣି ବିକଇ ନିତ୍ୟେ ନିତ୍ୟେ ॥

ଗୃହଟେ ଲଭେ ପରବତ୍ତ । ଧନ ଲୋଭରେ ଖେଳେ ଜୂତ ॥
ହରଟେ ପର ଦ୍ରବ୍ୟେ ରସି । ଦୁର୍ଜନ ରଥୀ ମିଥ୍ୟାଭ୍ରଷି ॥
ଅତି କୃପଣମତି ଧରେ । ଦେଖିଲେ ବଅଇ ବେଶ୍ୟା ଘରେ ॥
ଏମନ୍ତ କେତେ କାଳ ଅନ୍ତେ । ବ୍ରାହ୍ମଣ ବାଣିଜ୍ୟ ନିମନ୍ତେ ॥
ଦ୍ରବ୍ୟ ବଳଦ ପୃଷ୍ଠେ କଲା । ଅନ୍ୟ ଦେଶକୁ ଚଳିଗଲା ॥
ଯେ ନଗ୍ର ମହାହଣ୍ଡି ନାମ । ବେନି ଯୋଜନ ସେହି ଗ୍ରାମ ॥
ସେ ଦେଶ ସମୁଦ୍ର ଉତ୍ତରେ । ନର୍ମଦା ନାମେ ନଦୀ ତୀରେ ॥
ନିର୍ମଳ ସ୍ୱାଦ ଶୀତ ପାଣି । ସ୍ନାନେ ସକଳ ଶୁଭଦାନୀ ॥
ସେ ପୁଣ୍ୟ ନଦୀ ବେନି ତୀରେ । ବହୁତ ଦେଶୁ ଦ୍ୱିଜବରେ ॥
ପବିତ୍ର କାଳ ଜାଣି ଆସି । କାର୍ତ୍ତିକ କୃତ୍ୟ ଉପଦେଶୀ ॥
ସଂକଳ୍ପ କରି ସେହି ବନେ । ରହି ଅଛନ୍ତି ସାଧୁଜନେ ॥
ତାହାଙ୍କୁ ଦେଖି ଧନେଶ୍ୱର । ମନରେ କରଇ ବିଚାର ॥
ମୁହିଁ ଏହାଙ୍କ ପାଶେ ରହି । ଦ୍ରବ୍ୟ ବିକଳି ଯହିଁ ତହିଁ ॥
ଏମନ୍ତ ବିଚାରି ମନରେ । ଆଶ୍ରମ କଲା ନଦୀ ତୀରେ ॥
ଗ୍ରାମ ଗୋଟୋଷ୍ଟେ ନିଜ ବାସ । ସମସ୍ତ ତେପୀଙ୍କ ପାଶ ॥
ବିପ୍ରଙ୍କ ମଧ୍ୟେ ଗୃହ ରଚି । ସଉଦା ଦ୍ରବ୍ୟ ତହିଁ ସିଞ୍ଚି ॥
ନିତ୍ୟେ କରଇ ବିକା କଣା । ଲବଧ ପାଇ ସେ ପୁରୁଣା ॥
ବିପ୍ରଙ୍କ ନିତ୍ୟାଚାର ଦେଖି । ଆନନ୍ଦେ ହେଉଥାଏ ସୁଖୀ ॥
ସେ ଧର୍ମତତ୍ତ୍ୱ ନ ପ୍ରମାଣି । କି କଉତୁକ ପ୍ରାପ୍ୟେ ମଣି ॥
ବିପ୍ରଙ୍କ ପ୍ରାତଃସ୍ନାନ ବିଧି । ପ୍ରମାଣ ଅଷ୍ଟକର୍ମ ସିଦ୍ଧି ॥
ସନ୍ଧ୍ୟା ତର୍ପଣ ଅବଲୋକ । ରେଚକ ପୂରକ କୁମ୍ଭକ ॥
ଆସନ ପାଦାସନ ଜପ । ନାନାପ୍ରକାରେ ବସ୍ତ୍ର ରୂପ ॥
ପବିତ୍ର ଆସନେ ବସାଇ । ପୂଜନ୍ତି ଧୂପ ଦୀପ ଦେଇ ॥
ଗନ୍ଧ ଚନ୍ଦନ ପୁଷ୍ପଫଳ । ନିବେଶି ନଇବେଦ୍ୟ ଜଳ ॥

ତୁଳସୀ ବୃକ୍ଷ ମୂଳେ ସ୍ଥାପି । ବିପ୍ରେ ପୂଜନ୍ତି ବିଷ୍ଣୁରୂପୀ ॥
ଏହି ଷୋଡ଼ଶ ଉପଚାର । ଦେଖି ଆନନ୍ଦ ଧନେଶ୍ୱର ॥
ନିଗମ ଶାସ୍ତ୍ର ଇତିହାସ । ନ ବୁଝି ଅର୍ଥ ଉପଦେଶ ॥
କେବଳ ସେ ସଂସ୍କୃତ ବାଣୀ । ଆନନ୍ଦ ହେଉଥାଇ ଶୁଣି ॥
ଆପଣେ ନିତ୍ୟେ ପ୍ରାତକାଳେ । ସ୍ନାନ କରଇ ଶୀତ ଜଳେ ॥
ରନ୍ଧନ ଘର ଅନ୍ନ ଭୁଞ୍ଜି । ବିପ୍ରଙ୍କ କର୍ମ ମନେ ହେଜି ॥
ବ୍ୟାପାର ଅର୍ଥେ ବୁଲି ଯାଇ । କାର୍ତ୍ତିକ କୃତ୍ୟ ଦେଖୁଥାଇ ॥
ଜନକୁ ଜନ ଯେତେ ଘାତ । କରନ୍ତି ପୁଣ୍ୟମାସେ ବ୍ରତ ॥
ଏମନ୍ତ ମାସକ ସମ୍ପୂର୍ଣ୍ଣେ । କାର୍ତ୍ତିକ ବ୍ରତ ଉଦ୍ୟାପନେ ॥
ବହୁତ ଉତ୍ସବ ବେଭାରେ । ବିଷ୍ଣୁ ପୂଜିଲେ ନିଘଣ୍ଟରେ ॥
କୃଷ୍ଣ ଚରିତ ଗୀତ ଗାଇ । ରଜନୀ ଉଜାଗର ହୋଇ ॥
ଦୀପ ବସାଇ ନୂଆ ଘୃତେ । ବିବିଧ ବାଦ୍ୟ ନୃତ୍ୟ ଗୀତେ ॥
ତୁଳସୀ ବୃକ୍ଷ ଆରୋପଣେ । ପୂଜିଲେ ଲକ୍ଷ୍ମୀନାରାୟଣେ ॥
ତା ଦେଖି ବିପ୍ର ଧନେଶ୍ୱର । ସହେ ହୋଇଲା ଉଜାଗର ॥
ପ୍ରଭାତେ ନିତ୍ୟକର୍ମ ସାରି । ଅନ୍ନ ଭୁଞ୍ଜିଲା ସୁସ୍ଥକରି ॥
ଅନେକ ଜନ ଯିବ ଘରେ । ଏମନ୍ତ ଭାବୁଛି ମନରେ ॥
ଘଟେ ଶୟନ କାଳେ ଆସି । ବିପ୍ରକୁ କାଳସର୍ପ ଦଂଶି ॥
ସର୍ପ ବିଘାତେ ଧନେଶ୍ୱର । ଗଇଲା ତୀର୍ଥବାସୀ ନର ॥
କହିଲା ସର୍ପଘାତ ମୋତେ । ଶୁଣି ବିସ୍ମୟ ସର୍ବେ ଚିତ୍ତେ ॥
ବିଷ ନାଶନ ବୁଦ୍ଧିକରି । କେବେହେଁ ନ ପାରିଲେ ହରି ॥
ସମସ୍ତେ କଲେ ହାହାକାର । ପ୍ରାଣ ଛାଡ଼ିଲା ଧନେଶ୍ୱର ॥
ତାର ନିକଟେ ଯେତେ ଥିଲେ । ପିଣ୍ଡକୁ ଅଗ୍ନିଦାହ କଲେ ॥
ଆତ୍ମାକୁ ଧରି ଯମଦୂତେ । ନିବନ୍ଧେ ବାନ୍ଧିଲେ ତୁରିତେ ॥
ପ୍ରେତ ସ୍ୱରୂପ ଦଣ୍ଡ ଦେଇ । ଯାତନା ଦେଶେ ନେଲେ ଯାଇ ॥

ଅନେକ ମାଡ଼ ମାର ବାଟେ । ଯଷ୍ଟି ପାଷାଣ କଣ୍ଟା ଘୁଟେ ॥
ତନାରେ ଚର୍ମଫାଶ ଦେଇ । ତପ୍ତ ଅଙ୍ଗାରେ ଘୋଷରାଇ ॥
ଅନେକ ଦୁଃଖ ତାଙ୍କୁ ଦେଲେ । ଯମ ସମ୍ମୁଖରେ ନେଇ କଲେ ॥
ଚିତ୍ରଗୁପତ ତାଙ୍କୁ ଦେଖି । ରକତ ବର୍ଣ୍ଣ କରି ଆଖି ॥
ବିପ୍ରଙ୍କୁ ଭର୍ତ୍ସି ବେନି ଜନେ । ବହୁତ ଧିକ୍କାର ବଚନେ ॥
ଅନେକ ଗାଳି ଦେଇ ତାଙ୍କୁ । ଯମ ଯେ ବୋଇଲେ ମନ୍ତ୍ରୀଙ୍କୁ ॥
ଏ କରିଅଛି କି କି ପାପ । ବୁଝି କହିବା ସିନା କୋପ ॥
କହନ୍ତେ କହିଲେ ଅଦ୍ୟାପି । ଏ ବ୍ରହ୍ମଘାତୀ ମହାପାପୀ ॥
ହତ୍ୟା ଏ କରିଅଛି ଯେତେ । ଆଉରି ପାପ ନାନା ମତେ ॥
କେ ତାହା ସଂକ୍ଷେପି କହିବ । ଶତ ବରଷ ନ ସରିବ ॥
ମନ୍ତ୍ରୀ ବଦନୁ ଏହା ଶୁଣି । ସକ୍ରୋଧେ କାଳ ଦଣ୍ଡପାଣି ॥
ପ୍ରେତପତିଙ୍କୁ ଅନାଇ । ଆଜ୍ଞା ଯେ ଦେଲେ ଜନ୍ମୁସାଇଁ ॥
ବୋଇଲେ ଏ ପାପୀକି ନିଅ । ଅଣ ଜପ୍ରେ ଧେ ଦଣ୍ଡ ଦିଅ ॥
ତପ୍ତ ତକଣ ଅଭକ୍ଷେକେ । ନଇକଣ ନେଇ କୁମ୍ଭୀପାକେ ॥
ଏମନ୍ତ ବାକ୍ୟ ଦୂତେ ଶୁଣି । ଧନେଶ୍ୱରଙ୍କୁ ଧରି ଆଣି ॥
ଦଣ୍ଡ ମନ୍ତ୍ର ଯେ ଦେଲେ ନେଇ । ବିପ୍ର ଜମ୍ପଇ ଭୟ ପାଇ ॥
କହଇ ମହାଦେବ ଦାସ । ଉଦ୍ଧର ଜଗତନିବାସ ॥

ଇତି ଶ୍ରୀ ପଦ୍ମପୁରାଣେ ଉତ୍ତରଖଣ୍ଡେ କାର୍ତ୍ତିକ ମାହାତ୍ମ୍ୟେ ଧନେଶ୍ୱର ବିପ୍ର ଚରିତେ ନାମ ତ୍ରୟୋବିଂଶୋଽଧ୍ୟାୟ ।

---

## ଚତୁର୍ବିଂଶୋ ଅଧ୍ୟାୟ

ଶ୍ରୀକୃଷ୍ଣ ଉବାଚ

ତତୋ ମୁଦ୍‌ଗର ନିର୍ଭିନ୍ନ ମୂର୍ଦ୍ଧାନଂ ପ୍ରେତପୋଽନୟତ୍
କୁମ୍ଭୀପାକେ କ୍ଷିପତ୍ୟାଶୁ ତୈଳ କ୍ୱଥନ ସଜ୍ଜିତେ ।

କହନ୍ତି ପ୍ରଭୁ ଆଦିମୂଳ । ସୁଜନ ଜନ ସଙ୍ଗ ଫଳ ॥
ଶୁଣ ସୁଜନ ଏକ ଚରିତ୍ର । ବିପ୍ରଙ୍କୁ ଧରି ଯମଦୂତ ॥
ଗର୍ଜନ୍ତି ଅତି କୋପଭରେ । ଲୌହମୁଦ୍‌ଗର ଧରି କରେ ॥
କଣ୍ଟକ ଶିଳାରେ ବସାଇ । ମୁଣ୍ଡରେ ପିଟନ୍ତି ବଡ଼ାଇ ॥
ଶରୀରେ ଯେତେ ଅସ୍ଥି ଦଣ୍ଡା । ମାଡ଼ରେ ସବୁ କଲେ ଗୁଣ୍ଡା ॥
ଅସ୍ଥି ଶୋଣିତ ମାଂସ ମିଶି । କୁଚିଳ ମାଟି ପ୍ରାୟେ ଦିଶି ॥
କୁନ୍ତ ମୂନରେ ଧରି ତୋଳି । ତଇଳ ଦ୍ରୋଣୀ ଚୁଲ୍ଲୀ ଜାଳି ॥
ଅନଳ ତେଜରେ ତକଣ । ଫୁଟଇ ଯେସନ୍ତେ ଅଗ୍ନି ବାଣ ॥
ଧନେଶ୍ୱର ବିପ୍ରକୁ ନେଇ । ସେ ତୈଳ ଦ୍ରୋଣୀରେ ପକାଇ ॥
ବ୍ରାହ୍ମଣ ପଡ଼ି ଅଗ୍ନି କୁଣ୍ଡେ । ତକ୍ଷଣେ ଧରି ଅନ୍ୟ ପିଣ୍ଡେ ॥
ଅପୂର୍ବ ରୂପ ଦିବ୍ୟ ଶୋଭା । ତୈଳ କୁଣ୍ଡରେ ହେଲେ ଉଭା ॥
ଅନଳ ତେଜ ଆଉ କାହିଁ । ପ୍ରେତପଗଣ ତାକୁ ଛୁଇଁ ॥
କହିଲେ ଜଳୁପତି ଆଗେ । ଆଶ୍ଚର୍ଯ୍ୟ କଥା ଶୁଣ ବେଗେ ॥
ମନ୍ତ୍ରୀ ସହିତେ ଜଳୁପତି । ମିଳଲେ ବିପ୍ର ଦଣ୍ଡ କତି ॥
ଏହି ସମୟେ ମୁନିବର । ବୋଲନ୍ତି ଏକ କର୍ମ ତୋର ॥
ଯମ ସ୍ଥମ୍ଭରେ ପରବେଶ । ଦେଖି ନମଇଁ ସୂର୍ଯ୍ୟଶିଷ୍ୟ ॥
କଲ୍ୟାଣ କରି ମୁନିବର । ନାରଦ ବ୍ରହ୍ମାଙ୍କ କୁମର ॥
ଏତେଡ଼ ଅଜ୍ଞାନ ତୋର ପିଣ୍ଡ । ବିଷ୍ଣୁ ଭକ୍ତକୁ ଦେଉ ଦଣ୍ଡ ॥
ଶୁଣ ରାଜନ କହୁ ତୋତେ । ଏ ବିପ୍ର ସାଧୁଙ୍କ ସଙ୍ଗତେ ॥
ମାସେ ରହିଲା ଏକ ମେଳେ । କାର୍ତ୍ତିକ କୃତ୍ୟ ଯେଉଁ ସ୍ଥଳେ ॥
ସେ ବ୍ରତ ମହିମା ଏମନ୍ତ । ଯେ କରେ ତା ପୁଣ୍ୟ ଅନନ୍ତ ॥
ତାଙ୍କ ସଙ୍ଗତେ ଏକ ଦିନେ । ଯଦି ମିଳନ୍ତି ପାପୀ ଜନେ ॥
ତାର କଳୁଷ ଯେତେ ଥାଇ । ଦର୍ଶନ ମାତ୍ରେ କ୍ଷୟ ଯାଇ ॥
ଏଥିକୁ ଶୁଣ ଉପମାନ । ଶୁଷ୍କ କାଷ୍ଠକୁ ଅଗ୍ନି ଭକ୍ଷେ ॥

ସେ ସଙ୍ଗ ଓଦା କାଷ୍ଠ ପିଣ୍ଡି । ସେକି ନୁହଇ ଚର୍ନ୍ନି ଧ୍ୱଂସି ॥
ଏମନ୍ତ ସାଧୁସଙ୍ଗ ଗୁଣ । ହେ ଦଣ୍ଡଧର ଏବେ ଶୁଣ ॥
ଏଡ଼େ ଅଜ୍ଞାନ ତୋର ପିଣ୍ଡ । ବିଷ୍ଣୁଭକ୍ତକୁ ଦେଉ ଦଣ୍ଡ ॥
ଏ ବିପ୍ର ମାସେ ପର୍ଯ୍ୟନ୍ତେ । କାର୍ତ୍ତିକ ବ୍ରତୀଙ୍କ ସଙ୍ଗତେ ॥
ସମ୍ପୂର୍ଣ୍ଣ ମାସେ ଥିଲା ରହି । ଏହା ଶରୀରେ ପାପ ନାହିଁ ॥
ଏହାକୁ ବାନ୍ଧିଲେ କଷଣ । ତୋର ବିପତ୍ତି ନିଷ୍ଟେ ଜାଣ ॥
ଏମନ୍ତ ବିଷ୍ଣୁରୁ କି ମନେ । ଏ ପଣ ଥିବ ସବୁଦିନେ ॥
ଏହି କାରଣ ଏହି ଦୂତେ । ସର୍ବଦା ଥିବେ କି ସଙ୍ଗତେ ॥
ଏମନ୍ତ ପ୍ରାପ୍ତେ ଅଛୁ ମଣି । ବିଷ୍ଣୁର ମାୟା ନାହିଁ ଜାଣି ॥
ତୋହର ପ୍ରାପ୍ତେ ଲକ୍ଷେ ଯମ । ଯାର ଭୃତ୍ୟକୁ ନୋହେ ସମ ॥
ଏହି ପ୍ରକାରେ ପଣ ପାନ୍ତି । ପଳକମାତ୍ରେ ଆନ ହୋନ୍ତି ॥
କେବଳ କଲ୍ପ କର୍ମ କଥା । କୀର୍ତ୍ତି ଅକୀର୍ତ୍ତି ବେନି ଯଥା ॥
ବିଷ୍ଣୁର କଉତୁକ ଅର୍ଥେ । ଭୁଞ୍ଜନ୍ତି ଆତଯାତ ପଥେ ॥
ଏହା ନ ଜାଣି ମୂର୍ଖପଣେ । ପ୍ରାଣୀକି ଦଣ୍ଡୁ ଅକାରଣେ ॥
ଅଳପ ଅଧିକାର ପାଇ । ଅର୍ଥ ମଦରେ ମତ୍ତ ହୋଇ ॥
ପ୍ରାଣୀଙ୍କ ଦୋଷ ନ ବିଚାରି । ରାଜସଗୁଣ ମନେ ଧରି ॥
ଯେତେ ଗଞ୍ଜଇ ପ୍ରଭୁ ପଣେ । ଆପେ ଭୁଞ୍ଜଇ ଶତଗୁଣେ ॥
ସବୁ ସମ୍ପଦ ଅର୍ଥ ଛାଡ଼ି । ଦେହ ଅନ୍ତରେ ନର୍କେ ପଡ଼ି ॥
ବହୁତ କଷ୍ଟ ଭୋଗ କରି । ସେଠାରେ ପ୍ରଭୁ ଭୃତ୍ୟ ସରି ॥
ଏମନ୍ତେ ଗୋବିନ୍ଦର ଖେଳ । ବଡ଼ ଉପରେ ଅଛି ବଡ଼ ॥
ଭୁ କମ୍ପା ଏହା ନ ବିଚାରୁ । ମନ୍ତ୍ରୀମାନଙ୍କୁ ନ ପଚାରୁ ॥
ଏ ଯେ କାରଣ ବେନି ଜନ । କି ଲେଖିଥାନ୍ତି ପ୍ରତିଦିନ ॥
ଦଣ୍ଡକୁ ଯୋଗ୍ୟ ଯେଉଁ ପ୍ରାଣୀ । ଏ କଥା ନ କହନ୍ତି ଜାଣି ॥
ଏଣୁ ତୋ ସଦ୍ଧ ଅବିବେକ । ଯେଣୁ ନାହାନ୍ତି ବିଜ୍ଞ ଲୋକ ॥

ଏଥିକୁ ଯେବେ ଅଛୁ ଭୟ । ବିଚାର କାର୍ଯ୍ୟ କର ରାୟ ॥
ଏବେ ହୋ ମନେ ତୋର ଥାଉ । ଯାହାକୁ ନ ଦଣ୍ଡିବୁ ଆଉ ॥
ସେ କଥା ଶୁଣ ଜନୁପତି । ଯେବଣ ଜନ ବିଷ୍ଣୁ ଭକ୍ତ ॥
ଗୋବିନ୍ଦ ଗୁଣ ଗୁଣି ଚିତ୍ତେ । ଯେ ଦିନ ହରୁଥିବ ନିତ୍ୟେ ॥
ବିଷ୍ଣୁ ପ୍ରୀତିରେ ତପୋଦାନ । କରିବ ତୀର୍ଥକୁ ଗମନ ॥
ଯଜ୍ଞାଦି ବ୍ରତ ଧର୍ମ କୀର୍ତ୍ତି । ସର୍ବ କଳ୍ପିତ ବିଷ୍ଣୁ ପ୍ରୀତି ॥
ଶ୍ରୀ ଏକାଦଶୀ ବ୍ରତ ରଜା । କାର୍ତ୍ତିକମାସେ ବିଷ୍ଣୁ ପୂଜା ॥
ମକର ମେଷ ଆଦି କରି । ଯେ ହୋଇଥିବ ବ୍ରତାଭ୍ୟାସୀ ॥
ତୁଳସୀ ସେବା ଦିନେ ଦିନେ । ଏମନ୍ତ ଭାବେ ଯେଉଁ ଜନେ ॥
ତୀର୍ଥ୍ୟ ମଣ୍ଡଳେ ଥିବ ରତ୍ନ । ତାଙ୍କ ସଙ୍ଗତେ ଯେବା ଥାଇ ॥
ଏ ସର୍ବଜନ ପୁଣ୍ୟମୟୁ । ଏହାଙ୍କୁ ନ ଦଣ୍ଡିବୁ ରାୟୁ ॥
ଯେତେବେହେଁ ଥିବ ପୂର୍ବଶାପ । ତେତେବେହେଁ ନ କରିବ କୋପ ॥
କ୍ଷଣେକେ କାର୍ତ୍ତିକ ବ୍ରତ୍ୟର । ଦିନେହେଁ ଥିବ ଯେଉଁ ନର ॥
ତାଙ୍କ ନିକଟେ ତୋର ଦୂତେ । ନ ଯିବେ ଆଉ କଦାଚିତେ ॥
ଏବେ ସ ବ୍ରାହ୍ମଣକୁ ଆଣି । ପ୍ରବୋଧି କହ ଦଣ୍ଡପାଣି ॥
ଏମନ୍ତ କହି ଯମ ଆଗେ । ମୁନି ଚଳିଲେ ଶୂନ୍ୟମାର୍ଗେ ॥
ଆଶ୍ଚର୍ଯ୍ୟ ହୋଇ ଜନୁପତି । ଦୂତଙ୍କୁ ରୁହିଁ କହୁଛନ୍ତି ॥
ବିପ୍ରକୁ ଆଣ ମୋର ପାଶ । ନ ପୁଣ କରିଥାଇ ରୋଷ ॥
ଏ ବିପ୍ର ଏଡ଼େ ଲୋକ ବୋଲି । ନ ବୁଝି ଦ୍ରୋହ କର୍ମ କଲି ॥
ଏବେ କରିବା ତାକୁ ବୋଧ । ଯେମନେ ଛାଡ଼ିବ ବିପ୍ର କ୍ରୋଧ ॥
ତୁମ୍ଭେହେଁ କହ ତାଙ୍କ ଆଗେ । ଯେ ଧର୍ମ ଧର୍ମଶାସ୍ତ୍ର ଯୋଗେ ॥
ଏମନ୍ତେ ରାଜା ମୁଖୁ ଶୁଣି । ପ୍ରେତପଗଣେ ସେହିକ୍ଷଣି ॥
ସେ ଧନେଶ୍ୱର ନାମେ ଦ୍ୱିଜ । ସ୍ୱଭାବେ ଦିଶୁଅଛି ତେଜ ॥
ତୈଳ ଦ୍ରୋଣୀରୁ ତାକୁ ଆଣି । ବିଶ୍ୱାସେ କହୁଛନ୍ତି ବାଣୀ ॥

ହେ ବିପ୍ର ଶୁଣ ସାବଧାନେ । ଯେ ଦଣ୍ଡ ମଣ୍ଡ ପାପପୂର୍ଣ୍ଣେ ॥
ତୁମ୍ଭଙ୍କୁ କହିବା ଥୋକାଏ । ଆଗତ ପଛେ ଉଦ୍ଧ ଭୟେ ॥
ପ୍ରଥମେ ଶୁଣ ଯମଦଣ୍ଡ । ଦେଖ ଏ ଆଗେ ନର୍କକୁଣ୍ଡ ॥
ଲକ୍ଷଣ ଶତ ନାମ ବହି । ନର୍କ ସମୁଦ୍ର ଅଛି ରହି ॥
ସପତ ନର୍କ ଏଥି ଶ୍ରେଷ୍ଠ । ଏହାଙ୍କ ମଧ୍ୟେ ବେନି ଜ୍ୟେଷ୍ଠ ॥
ଯେ ରଉରବ କୁମ୍ଭୀପାକ । ଅତି ଦୁଃସହ ଘୋର ନର୍କ ॥
ତହିଁ ପଡ଼ନ୍ତି ଯେଉଁମାନେ । କହିବା ଶୁଣ ସାବଧାନେ ॥
ଆମ୍ଭେ ଯେ ଯମ ଆଜ୍ଞା ଘେନି । ପାପୀଙ୍କି ଆଣୁ ସଞ୍ଜୀବନୀ ॥
ପଥ ଦୁର୍ଗମ ଯମଆନେ । ଦେଖିଅଛ ଯେ ବେନଡେ ନେ ॥
ତାହା କହିବା ଅବା କେତେ । ଏଠାରେ ଦଣ୍ଡ ଅଛି ଯେତେ ॥
ସେ କଥା ଶୁଣ ଦ୍ୱିଜ ଶ୍ରେଷ୍ଠ । ଯେଉଁ ପାପୀଙ୍କ ଯେଉଁ କଷ୍ଟ ॥
କେବଳ ବିଷ୍ଣୁ ଭକ୍ତ ଜନେ । ଏହା ନ ଦେଖନ୍ତି ନୟନେ ॥
ସେ ଦଣ୍ଡ ପାପୀ ଜନେ ତ୍ରାସ । କହଇ ମହାଦେବ ଦାସ ॥
ସୁଜନେ ବିଷ୍ଣୁ ଆଶ୍ରେ କର । ଯମ ଦଣ୍ଡକୁ ଯେବେ ଡର ॥

ଇତି ଶ୍ରୀ ପଦ୍ମପୁରାଣେ ଉତ୍ତରଖଣ୍ଡେ କାର୍ତ୍ତିକ ମାହାତ୍ମ୍ୟେ
ଧନେଶ୍ୱର ବିପ୍ର ନରକ ନିସ୍ତାରଣେ ନାମ ଚତୁର୍ବିଂଶୋଽଧ୍ୟାୟଃ ।

—•*•—

## ପଞ୍ଚବିଂଶ ଅଧ୍ୟାୟ

### ଶ୍ରୀକୃଷ୍ଣ ଉବାଚ

ନାରଦସ୍ୟ ବଚଃ ଶ୍ରୁତ୍ୱାସ ତଦା ପ୍ରେତପୋଽବ୍ରବୀତ୍
ପ୍ରଦର୍ଶୟନ୍ନୈତାନ୍ ସର୍ବାନ୍ନମାନ୍ନୁଚ ବାଚଂ ପ୍ରଦା ।

ଏଥି ଅନ୍ତରେ କଥା ଶୁଣ । ଦ୍ୱିଜ ଅଗ୍ରତେ କ.ନଗଣ ॥
କହନ୍ତି ଯମଦଣ୍ଡ କଥା । ପାପୀଜନଙ୍କର ବ୍ୟବସ୍ଥା ॥
ହେ ବିପ୍ର ଶୁଣ ଏକ ମନେ । ସଂସାରେ ଜନ୍ମି କେଉଁ ଜନେ ॥

ଶ୍ରୀଗୁରୁ ଚରଣେ ନ ସେବ । ଜଗନ୍ନାଥରେ ଅଭାବ ॥
ଉତ୍ତମ ଜନ ଦୂର କରି । କୁଜନ ମେଳେ ଧନ ହରି ॥
ଗୁରୁ ନିନ୍ଦକ ଗୁରୁ ଦ୍ରୋହୀ । ଗୁରୁ ବଷସ୍ତେ ଗର୍ବ ବହି ॥
ଏମନ୍ତ ପାପୀ ଯେବେ ମରି । ତା ପ୍ରାଣ ପ୍ରେତପିଣ୍ଡେ ଭରି ॥
ଭୁରତେ ଧରି ଯେନ ଆସୁ । ନାସା ଶ୍ରବଣ ବେଗେ ନାଶୁ ॥
ସେ ରନ୍ଧ୍ରେ ଲୌହ କଳା ମାରି । ନର୍କେ ନବେଶୁ ବାନ୍ଧକରି ॥
ଯାବତ ଯମ ଅଧିକାରେ । ତାବତ ଥାଇ ନର୍କଘୋରେ ॥
ସେ ନର୍କ ନାମ କୁମ୍ଭୀପାକ । ଅତି ଦୁର୍ଗନ୍ଧ ଦୁଃଖାତ୍ମକ ॥
ଅଶେଷ ମହାପାପୀ ଜନେ । କୃମି ଶରୀରେ ସେହି ସ୍ଥାନେ ॥
ଅନନ୍ତ କୋଟି କୋଟି ହୋଇ । ଶ୍ରେଷ୍ଠ ପାପୀଙ୍କ ତନୁ ଖାଇ ॥
ଏବେ ହେ ଶୁଣ ଦ୍ୱିଜବର । ଅଗ୍ନି ନ ସେବେ ଯେଉଁ ନର ॥
ତାହାକୁ ଦଣ୍ଡ ଅଛି ଯେତେ । ସେ କଥା ଶୁଣ ଏକଚିତ୍ତେ ॥
ଅଗ୍ନି ଯେ ସ୍ୱୟଂ ନାରାୟଣ । ସଂସାରେ ପରମ କାରଣ ॥
ଜଗତ ନିସ୍ତାରିବା ପାଇଁ । ଭଜେ ଅନନ୍ତ ମୂର୍ତ୍ତି ହୋଇ ॥
ଚର ଅଚର ସର୍ବ ଭୂତେ । ପ୍ରତ୍ୟକ୍ଷ ପ୍ରକାଶ ଜଗତେ ॥
ସେ ବ୍ରହ୍ମ ଅଗ୍ନି ତୋଷ କରି । ଘରେ ସଂସାର ଯାନ୍ତି ତରି ॥
ଯେଣେ ଅନଳ ହୋଏ ତୋଷ । କହିବା ତହିଁର ସନ୍ଦେଶ ॥
ଯେ ଅଗ୍ନି ପ୍ରକାଶ ଜଗତେ । ବିପ୍ର ମୁଖବ ଦ୍ରବ୍ୟ ଘୃତେ ॥
ଆବର ଯେତେ ନରନାରୀ । ଜଠର ଅଗ୍ନି ତୋଷ କରି ॥
କ୍ଷୁଧାର୍ତ୍ତଜନେ ଦେଇ ଅନ୍ନ । ସ୍ଥାବରେ ଦେବ ଜଳଦାନ ॥
ଆପଣା ଶକ୍ତି ଅନୁକ୍ରମେ । ଅଗ୍ନି ପୂଜିବ ତଥା ଧର୍ମେ ॥
ଏମନ୍ତ ନ କରି ଯେ ଜନ । ଆପଣା ସୁଖେ ବଞ୍ଚେ ଧନ ॥
ଦରିଦ୍ର ଜନେ ଦୟା ନାହିଁ । ତାହାକୁ ବୋଲି ଅଗ୍ନି ଦ୍ରୋହୀ ॥
ସେ ପାପୀ ଅନ୍ତକାଳେ ଆସି । ଆତ୍ମ ଦଣ୍ଡରେ ହୁଏ ଧ୍ୱଂସି ॥

ସେ ପାପୀ ବେକ କର କାଟି । ତପତ ତକ୍‌କ ଣ ଆଡ଼ି ॥
ଟୂଳି ପୂରଇ ତାର ତୁଣ୍ଡେ । ପକାଉଁ ନେଇ ନର୍କ କୁଣ୍ଡେ ॥
ସେ ନର୍କ ରଉରବ ନାମ । ଅନଳ ତେଜ ଘୋରତମ ॥
ଅତି ଦୁର୍ଗନ୍ଧ ଧୂମମୟ । ସେ ନର୍କେ ପଡ଼ ପାପୀକାୟ ॥
ତକ୍ଷଣେ ସେ ନଙ୍ଗଳ ରୂପେ । ଘୋର ନରକ ଅନୁତାପେ ॥
କ୍ଷୁଧା ଅନଳେ ଜଳେ ପେଟ । ଦାବାଗ୍ନି ଯେସ୍ନେ ତରୁ କୋଟ ॥
ସେହି ପ୍ରକାରେ କ୍ଷୁଧା ଦୁଃଖ । କେ ତାକୁ ଅବା ଦେବ ଭକ୍ଷ ॥
କିଛି ହିଁ ନ ପାରଇ ଖାଇ । କାନ୍ଦଇ ଘୋର ନର୍କେ ଥାଇ ॥
ସେ ସାରେ ଥାଇ ଯେତେ ଦଣ୍ଡ । ତେତେ ବରଷ ନର୍କକୁଣ୍ଡ ॥
ଅତି କଠୋରେ ପଡ଼ିଥାଇ । ତହୁଁ ସ୍ଥାବର ଦେହ ପାଇ ॥
ଷଡ଼ଋତୁର ତାପ ସହି । ବନ ଅନଳେ ଦେହ ଦହି ॥
ଏମନ୍ତେ ଶତେ ଜନ୍ମ ଥାଇ । ମନୁଷ୍ୟ ଦେହ ତେବେ ପାଇ ॥
ବସ୍ତ୍ର ଏ ସ୍ୱୟଂ ବସ୍ତ୍ରମୟେ । ତାରେ ଅପ୍ରାଧି ଯେସ୍ନେ ହୁଏ ॥
ଉତ୍ତମ ଦ୍ରବ୍ୟ ବସ୍ତ୍ର କରେ । ନ ଦେଇ ନ ଖେବେ ଉପୁରେ ॥
ବ୍ରାହ୍ମଣ ବଚନ ନ କରି । ମୂର୍ଖ ସ୍ୱଭାବେ ନିନ୍ଦା କରି ॥
ଏମନ୍ତ ପାପୀ ଆସନ୍ତେ ଆଣି । ଗୋଡମେ ବାନ୍ଧ ପାଦପାଣି ॥
ବେକ ନସୂକ ତାର ତାଡ଼ । ମୁଣ୍ଡେ ପ୍ରହାର ଲୁହାବାଡ଼ ॥
ଲୁହା ମଞ୍ଜୁଷା ବାନ୍ଧ ବେଳେ । ପକାଉ ପୂତିଗନ୍ଧ ନର୍କେ ॥
ଯେତେ ବ୍ରାହ୍ମଣ ଦ୍ରୋହ କରି । ତେତେ ଯୁଗ ଅନ୍ତରେ ତରି ॥
ଦେବତାଙ୍କୁ ଯେ ନିନ୍ଦା କରେ । ସେ ପ୍ରାଣୀ ପ୍ରେତତନୁ ଧରେ ॥
ତପତ କର୍ଦ୍ଦମ ନର୍କେ । ତାକୁ ପକାଇ ଯମ ଲୋକେ ॥
କାକ କୁକ୍କୁର ଶିବାମାନେ । ପାପୀଙ୍କି ଖାଉଥାନ୍ତି ବନେ ॥
ଯାବତ ଥିଲେ ପାପୀ ଲୋକ । ତାବତ ପଡ଼ିଥାଇ ନର୍କେ ॥
ଯେ ଗୋରୁ ପୋଷି କରେ ହେଳା । ହଜିଲେ ନ କରେ ସନ୍ଧୋଳା ॥

ବ୍ୟାଧି ପୀଡ଼ିତ ବୃଦ୍ଧକାଳେ । ସେବା ଯେ ନ କରେ କୁଶଳେ ॥
ସେ ମହାପାପୀ ଯମପୁରେ । ପଡ଼େ ରୌରବ ନରକରେ ॥
ଯୋଧିଙ୍କ ରୂପେ ମହାକଷ୍ଟୀ । ତାର ଉପରେ ଶିଳା ବୃଷ୍ଟି ॥
ପଡ଼େ ମୁଦ୍ଗର ବାଡ଼ି । ତପ୍ତ ନିଗଡ଼ରେ ପଡ଼ି ॥
ଗୋ ଅଙ୍ଗେ ପ୍ରେମ ଯେତେ ଥାଇ । ତେତେ ବରଷ ନର୍କେ ଯାଇ ॥
ପୁଣି ଜନ୍ମଇ ଗୋରୁରୂପେ । ଏ କଥା ଅଟଇ ସ୍ୱରୂପେ ॥
ଅତିଥି ଯାର ଗୃହବାସେ । ହଙ୍କାଡ଼ା ଦେଇ ନିରାଶେ ॥
ଅନ୍ନ ଦେବାକୁ ଶକ୍ତ ଥାଇ । ନିରାଶ କରି ବାହୁଡ଼ାଇ ॥
ସେ ଗୃହସ୍ଥ ଧର୍ମ ଥାଇ ଯେତେ । ଗମଇ ଅତିଥି ସଙ୍ଗତେ ॥
ସେ ଗୃହୀ ଅନ୍ତକାଳେ ଆସି । ଶିମୁଳ ବୃକ୍ଷତଳେ ବସି ॥
ଭିକ୍ଷୁକ ରୂପ ଧରି ଦୁଃଖେ । ଅନ୍ନ ମାଗଇ ଅତି ଶୋକେ ॥
ଏ ଯେ ନିରାଶ ଯମପୁରୀ । କେ ତାକୁ ଦେବ ଅନ୍ନ ବାରି ॥
ଦେଇ ନ ଥିଲେ ପାଇ ନାହିଁ । ସକଳ ଶାସ୍ତ୍ରେ ଏହା କହି ॥
ଅଧିକ ଦଣ୍ଡ ଅଛି ଯେତେ । କହିବା ଶୁଣ ଏକଚିତ୍ତେ ॥
ଅତିଥେ ଅଭ୍ୟାଗତ ଯେହୁ । ଅଟନ୍ତି ଅଭିଗମ୍ୟବନ୍ତ ସେହୁ ॥
ତ ର ଜୀବନ ଯମଆଗେ । କ୍ଷୁଧାରେ କାନ୍ଦଇ ବିକଳେ ॥
କାନ୍ଦିଲେ ଯମଦୂତେ ଧରି । ନିଷ୍ଠୁର ମୁଖେ ମୁଖେ ମାରି ॥
ଅଣ୍ଟାରେ ଦଉଡ଼ି ଲଗାଇ । ତପତ ବାଲିରେ ଚଲାଇ ॥
ତୁଣ୍ଡେ ପୂରଇ ଇଟାମାଟି । ତଳୁରେ କଣ୍ଟା ଗୁନ୍ଥି ପିଟି ॥
ଏମନ୍ତେ ନାନା ଦଣ୍ଡ ଦେଇ । ନରକେ ନିବେଶନ୍ତି ନେଇ ॥
ନାରକ ନାମେ ଦୁଷ୍ଟ ଆସି । ଅନବରତେ ବନ୍ଧ ଅସି ॥
ସେ ଅସିଧାରେ ପାପୀ ଦେହେ । ନିରତେ କାଟୁଥାନ୍ତି କୋହେ ॥
ଏମନ୍ତେ ଅଗ୍ନି ଦ୍ରୋହୀ ନର । ଯୁଗ ଅନ୍ତରେ ହୋଏ ପାର ॥
ଯେ ପୁତ୍ର ପତ୍ନୀ ସେବ ବଞ୍ଚେ । ଧର୍ମ ନ କରି ଧନ ସଞ୍ଚେ ॥

ସେ ଜନ ମୃତ୍ୟୁମୂଳେ ଯେତେ । ଭୁଷ ଅଙ୍ଗାର ହୁଏ ତେତେ ॥
ଯମ ଭୁବନେ ତାହା ଭୁଞ୍ଜି । ନଷ୍ଠୁର ନର୍କେ ତନୁ ଗଞ୍ଜି ॥
ସୁତ୍ରସ ଜନ୍ମଯାଏ ବଂଶେ । ସେ ନର ଥାଇ ନର୍କବାସେ ॥
ଯେ ଜନ ଅବିବେକ ପଣେ । ଭୃତ୍ୟଙ୍କୁ ଦଣ୍ଡେ ଅକାରଣେ ॥
ତାର ଜୀବନ ଅନ୍ତକାଳେ । ପକାଇଁ ହେବ ନର୍କସ୍ଥଳେ ॥
ସେ ମାଂସ କର୍କଟ କୁମ୍ଭୀର । ମତ୍ସ୍ୟ ମଗର ସୁସମ୍ବର ॥
ଏମନ୍ତେ ଜଳଚର ଜୀବେ । ପାପୀଙ୍କୁ ଖାଉଥାନ୍ତି ସର୍ବେ ॥
ସେ ପୁଣି ତ୍ରିନପୁର ଗତେ । କଞ୍ଚିତ ଧର୍ମ ତାର ଥିଲେ ॥
ନରକୁ ହୁଅଇ ନସ୍ତାର । ଏବେ ହୋ ଶୁଣ ଦ୍ୱିଜବର ॥
ଯେବଣ ଜନ ଜ୍ଞାନହୀନେ । ଜନ୍ତୁ ବଧଇ ଶ୍ରଦ୍ଧାମନେ ॥
ସେ ପ୍ରାଣୀ ପରଲୋକେ ଆସି । ସାତ ଚଣ୍ଡାଳ ରୂପ ଦିଶି ॥
ଅନେକ ମାଡ଼ ମାରୁ କରେ । ପ୍ରାଭବ ଏହଇ ଶରୀରେ ॥
ପୁଣି ତା ନାଶାବନ୍ଧ ବନ୍ଧ । ପାଟ ଦଉଡ଼ି ଚର୍ମ୍ମ ବାନ୍ଧ ॥
କଡ଼ଶୀ କଣ୍ଟା କଣ୍ଠେ ଭରି । ଗଳାରେ ବନ୍ଧି ଯତ୍ନ କରି ॥
ପାପୀଙ୍କି ଧରି ଯମ ଲୋକେ । ପକାନ୍ତି ନିରପେକ୍ଷ ନର୍କେ ॥
ସେ ନର୍କେ ପଡ଼ି ଜନ୍ତୁ ଦ୍ରୋହି । ଅତି ଆତୁରେ ଲୋଡ଼େ କାହ୍ନି ॥
ସେ ନର୍କେ ବୁଡ଼ି ପାପୀ ପଡ଼ି । ଶରୀରେ ଯାଉଥାଏ ସଡ଼ି ॥
ନିସତେ ବଡ଼ିଲେ ନରକେ । ଯୋକ ଲାଗନ୍ତି ଦେହ ଯାକେ ॥
ଉପରେ ଥାଇ ଲୌହ କାକ । ଚଞ୍ଚୁରେ ଚର୍ଚ୍ଚନ୍ତି ଜମୁକ ॥
ଏମନ୍ତେ ଦୁଷ୍ଟ ଜୀବ ଯେତେ । ପାପୀଙ୍କୁ ପୀଡ଼ିବା ନିମନ୍ତେ ॥
ନରକ ତୀରେ ତୀରେ ଥାନ୍ତି । ପାପୀଙ୍କି ଦେଖି ପ୍ରାଭବନ୍ତି ॥
କ୍ଷିତିରେ ଜନ ଥିବା ଯାଏ । ନରକେ ପଡ଼ିଥାଇ କାନ୍ଦୁ ॥
ଯେ ନର ଦୟା କ୍ଷମା ହିନୁ । ସଂସାରେ ବଢ଼ୁଥାଇ ତନୁ ॥
ସେ ଦେହ ଅନ୍ତେ ଯମପୁରେ । ତାକୁ ଦଣ୍ଡନ୍ତି ଲୌହକାରେ ॥

ଲୌହ ମଞ୍ଜୁଷ ବେକେ ଲଦ । ମୁଣ୍ଡରେ ଲୌହଶଙ୍କୁ ଛେଦ ॥
ତପତ ଲୁହା ଭୁଣ୍ଡେ ଭରି । ଲୁହାର ବାଡ଼ି ଘେନ ମାରି ॥
ତକ୍ଷଣେ ଲୌହପାଶ ଦେଇ । ଲୌହ ମଞ୍ଜୁଷ ମଧ୍ୟ ନେଇ ॥
ତପତ ବୈତରଣୀ ଜଳେ । ସେ ପାପୀ ଥାଇ ଚିରକାଳେ ॥
କବା ସୁକୃତ କରିଥାଇ । ଯୁଗ ଅନ୍ତରେ ପାର ପାଇ ॥
ହେ ବିପ୍ର ଶୁଣ ହେତୁ କରି । ଯେବଣ ଜନ କରେ ଦ୍ୱେଷ ॥
ସ୍ୱଜନ ଜନଙ୍କର କପଟ । ଯେ ପରଦାରରେ ଲମ୍ପଟ ॥
ଏ ତିନ ମହାପାପୀ କାଳେ । ପଡନ୍ତି ଘୋର ନର୍କସ୍ଥଳେ ॥
ପୂଯ ଶୋଣିତ ଶୁକ୍ର ମଳ । ଏ ସବୁ ମିଶି ଯେଉଁ ଜଳ ॥
ତିନହେଁ ପଡ଼ିଥାନ୍ତି ତହିଁ । ପାପୀଙ୍କି ଅନୁସରି ଲଭ୍ୟ ॥
ଯେ ଜନ ପରର ନନ୍ଦା କରି । ତା ମୁଖେ ଗୃଧ୍ରଙ୍କ ପ୍ରହାର ॥
ସାଧୁ ହିଂସନ୍ତି ଯେଉଁ ମୂଢ଼ । ତାଙ୍କୁ ବସାଇ କଣ୍ଟାକୁଢ଼େ ॥
ଅଭକ୍ଷ ଭକ୍ଷନ୍ତି ଯେ ଜନ । ତା ବାସ ନରକ ସଦନ ॥
ହେଠ ବଦନେ ପଡ଼ିଥାଇ । ଊର୍ଦ୍ଧ୍ୱକୁ କରି ପାଦ ଦୁଇ ॥
ଯେ ନିଜ ଜାତି ଧର୍ମ ଛଣ୍ଡି । କୀଟଙ୍କ ଦଂଶେ ତାକୁ ଦଣ୍ଡି ॥
ଏହି ପ୍ରକାରେ ଏକ ଏକ । ପାପୀଙ୍କ ଦଣ୍ଡ ପରଲୋକ ॥
ଏହା ନ ଜାଣି ଜଡ଼ ମୂର୍ଖ । ଅମ୍ଭାକୁ ଦେଉଥାନ୍ତି ଦୁଃଖ ॥
ଦୂତଙ୍କ ମୁଖୁ ଏହା ଶୁଣି । ବିପ୍ର ଚିନ୍ତଇ ଚକ୍ରପାଣି ॥
ପୁଣି ପୁଚ୍ଛଇ ବିପ୍ରବର । ହେ ଧର୍ମଦୂତେ କୃପାକର ॥
ମାୟା ସଂସାରେ ଦେହ ବନ୍ଧି । ଏତେ ଅଜ୍ଞାନ ଅବା କାହିଁ ॥
ଯେତେ କହିଲ ପାପଗତି । କେ ଏଥୁ ତରିବ ନିବର୍ତ୍ତି ॥
ଏଥିକୁ ପ୍ରତିକାର କସ । କହିବା ଜ୍ଞାନ ଉପଦେଶ ॥
ବିପ୍ର ବଚନେ ଯମଦୂତେ । ବୋଲନ୍ତି ଶୁଣ ଏକଚିତ୍ତେ ॥
ଆମ୍ଭେ କହିଲୁ ଯେତେ କଥା । ପାପୀ ଲୋକଙ୍କ କର୍ମ ଯଥା ॥

ଅଜ୍ଞାନେ କର ମହାପାପ । ଶସ୍ତ୍ରରେ କହୁଛନ୍ତି ତାପ ॥
ଯେବଣ ଜନ ଏହା ଶୁଣି । ଆତ୍ମାର ହିତ ପରମାଣି ॥
କାର୍ତ୍ତିକ କୃତ୍ୟ ମହାବ୍ରତ । ଶରଣ ଯିବ ରମାକାନ୍ତ ॥
ତାର ସକଳ ପାପ ଧ୍ୱଂସି । ଅଚଳା ପୁରେ ଯାଇ ବସି ॥
ଏ ଧ୍ରୁବ ବାକ୍ୟ ନଗଧାର । ଆପଣାଠାରୁ ହେତୁ କର ॥
ତୁ ଯେବେ କାର୍ତ୍ତିକ ମାସରେ । ନ ଥାନ୍ତୁ ସାଧୁ ସଙ୍ଗତରେ ॥
ତୋର ସୁରତ କାହିଁ କାଳେ । ନରକେ ଥାନ୍ତୁ ଏତେବେଳେ ॥
ଏବେ ନସ୍ତରିଲୁ ଦୁସ୍ତରୁ । କାର୍ତ୍ତିକ ବ୍ରତ ମହିମାରୁ ॥
ଏମନ୍ତ ବୋଲି ଯମଦୂତେ । ତକ୍ଷଣେ ବ୍ରାହ୍ମଣ ସଙ୍ଗତେ ॥
ମିଳିଲେ ଜନ୍ତୁପତି ଆଗେ । ବିପ୍ରଙ୍କୁ ଦେଖି ଅନୁରାଗେ ॥
ଯମ ବୋଲନ୍ତି ଦ୍ୱିଜ ଶୁଣ । ତୁମ୍ଭର ଅଛି ଏତେ ଗୁଣ ॥
ମୁହିଁ ନ ଜାଣି କଲି ଦୋଷ । ତୁମ୍ଭେ ଯେ ମହତ ପୁରୁଷ ॥
ମୋ ଦୋଷ ନ ଘେନିବ ମନେ । ଏବେ ଶୁଣିମା ବାକ୍ୟମାନେ ॥
କସ ହମ୍ଭେ ଇଚ୍ଛାକର । ଦେବ ମୁଁ ମାଗି ଘେନ ବର ॥
ସେ ଧର୍ମରାଜ ସୁପ୍ରସନ୍ନେ । ବିପ୍ର କହୁଛି ତୋଷମନେ ॥
ହେ ପ୍ରଭୁ ଜନ୍ତୁଙ୍କର ପତି । ତୋତେ ଗୋଚର ସର୍ବଗତି ॥
ସକଳ ଧର୍ମାଧର୍ମ ଜାଣୁ । ପ୍ରାଣୀଙ୍କ କର୍ମ ପରମାଣୁ ॥
ତୁ ଯେ ଭକତି ଯାରେ କହୁ । ସେ ଅନ୍ୟ ମାର୍ଗେ ଯିବ କାହୁଁ ॥
ଏବେ ତୁ କର ମୋତେ ଦୟା । ଯେ ଦେହପରେ ନାହିଁ ମାୟା ॥
ସେହି ସ୍ୱରୂପ ମୋତେ କର । ଜନ୍ମ ମରଣେ ମୋର ଡର ॥
ଏଣୁ ନୋହିବ ମୋର ଦେହ । ଦେହ ବହିଲେ ଲାଗେ ମୋହ ॥
ମୋହରୁ ଲୋଭ ହୁଏ ଜାତ । ଲୋଭୁ ଅଶେଷ ପାପଗ୍ରସ୍ତ ॥
ପାପ ସକାଶୁ ଜନ୍ମ ମୃତ୍ୟୁ । କେହି ନ ଜାଣେ ଏଥି ହେତୁ ॥
ମୁଁ ଏହା ଅନୁଭବୁ ଜାଣି । ତୁମ୍ଭଙ୍କୁ କହୁଅଛି ପୁଣି ॥

ଜାତ ନୋହିବ ଯୋନିଦ୍ୱାରେ । ରହିବ ପର ଉପକାରେ ॥
ଏମନ୍ତ ଆଜ୍ଞା ଦଣ୍ଡ ମୋତେ । ଯେବେ ସ୍ମୃଦୟୀ କଲ ଚିତ୍ତେ ॥
ବିପ୍ର ବଚନେ ଜନ୍ତୁପତି । ବୋଇଲେ ଦେବା ଏହି ଗତି ॥
ଏବେ ତୁ ଯକ୍ଷଲୋକେ ରହ । ସହସ୍ର ଯୁଗ ଭୋଗ ପାଅ ॥
ଅପୂର୍ବ ଦିବ୍ୟ ରୂପ ଧରି । ବିଳସ ଧନପତି ଶିରୀ ॥
ତଦଅନ୍ତରେ ମଧ୍ୟପୁରେ । ଆସିବୁ ଜନ ଉପକାରେ ॥
ନଦୀ ସ୍ୱରୂପେ ମଧ୍ୟସ୍ଥଳେ । ବହିବୁ ସୁଶୀତଳ ଜଳେ ॥
ସରଯୂ ନାମେ ପୁଣ୍ୟ ତୀର୍ଥ । ସ୍ନାନେ ପ୍ରାଣୀଙ୍କ ମନୋରଥ ॥
ହୋଇବ ସର୍ବ କାମ ସିଦ୍ଧି । ପୁଣି ତୋ ତୀରେ ଦୟାନିଧି ॥
ଅଯୋଧ୍ୟା ନାମେ ପୁଣ୍ୟ କ୍ଷେତ୍ର । ଶ୍ରୀରାମ ନାମେ ହେବେ ଖ୍ୟାତ ॥
ଜାତ ହୋଇବେ ନରହରି । ଏକେ ଚତୁର୍ଦ୍ଧା ରୂପ ଧରି ॥
ଲକ୍ଷ୍ମୀ ଯେ ସୀତା ନାମ ବହି । ତୋର ନିକଟେ ଥିବେ ରହି ॥
ତୋ ଜଳ ସ୍ନାନ ପାନ କରି । ଆନନ୍ଦେ ଲକ୍ଷ୍ମୀ ନରହରି ॥
ତୋତେ ମୁକତି ଗତି ଦେବେ । ସମସ୍ତେ ସୁଖ ଭୁଞ୍ଜି ଏବେ ।
ଏମନ୍ତେ ଜନ୍ତୁପତି ବାଣୀ । ପୁଷ୍ପ ବିମାନେ ସେହିକ୍ଷଣି ॥
ବିପ୍ର ଗମିଲା ଯକ୍ଷପୁରେ । ଗନ୍ଧର୍ବଗଣ ସଙ୍ଗତରେ ॥
ଅଳକାପୁରେ ହେଲା ଯାଇ । ରହିଲା ଦିବ୍ୟ ଭୋଗ ପାଇ ॥
ଶୁଣ ଗୋ ଦେବୀ ସର୍ବାଶ୍ରମା । ଏମନ୍ତ କାର୍ତ୍ତିକ ମହିମା ॥
ନୟନେ ଦେଖି ଧନେଶ୍ୱର । ଅଶେଷ ଦୁଃଖୁ ହେଲା ପାର ॥
ଯେ ଜନ ଏ ବ୍ରତେ ବିଶ୍ୱାସ । ତା ଭୃତ୍ୟ ମହାଦେବ ଦାସ ॥

ଇତି ଶ୍ରୀ ପଦ୍ମପୁରାଣେ ଉତ୍ତରଖଣ୍ଡେ କାର୍ତ୍ତିକ ମାହାତ୍ମ୍ୟେ ଧନେଶ୍ୱର ବିପ୍ର ମୋକ୍ଷଣେ ନାମ ପଞ୍ଚବିଂଶୋଽଧ୍ୟାୟଃ ।

—✱—

## ଷଡ଼ବିଂଶ ଅଧ୍ୟାୟ

### ସୂତ ଉବାଚ

ଇତ୍ୟୁକ୍ତ୍ୱା ବାସୁଦେବୋଽପି ସତ୍ୟଭାମାମତ ପ୍ରିୟାଂ
ସାୟଂ ସନ୍ଧ୍ୟାଦିକଂ କର୍ତ୍ତୁଂ ଜଗାମ ଜନମାଗୃହଃ ॥

ଶୁଣ ସକଳ ତପୋବନ । କାର୍ତ୍ତିକ ମହିମା ଏମନ୍ତ ॥
ଶ୍ରୀକୃଷ୍ଣ ମୁଖୁ ସତ୍ୟା ଶୁଣି । ଆନନ୍ଦ ମନେ ଠକୁରାଣୀ ॥
ପଦ୍ମ ଚରଣେ ଶିର ଦେଇ । ଉଠି ସ୍ୱାମୀଙ୍କର ଭକ୍ତ ହୋଇ ॥
ଶିରେ ନଂଦେଶି ବେନ ପାଣି । ବୋଲନ୍ତି ଶୁଣ ଗୁଣମଣି ॥
ତୁମ୍ଭର ଅଂଶେଷ ମହିମା । ଶୁଣି ଲଭିଲି ସୁଖସୀମା ॥
କେବଳ ମାଗୁଅଛୁ ଏତେ । ସଦା ସୁଦୟା ଥିବ ମୋତେ ॥
କାର୍ତ୍ତିକ ବ୍ରତ ଧର୍ମ ଫଳ । କେବେହେଁ ନୋହିବ ବିଫଳ ॥
ଏହି ସୁଦୟା ମୋତେ ଆଜ । କୃଷ୍ଣ ବୋଇଲେ ଅସ୍ତୁ ହେଉ ॥
ଏମନ୍ତ ଆଜ୍ଞା ଦେଇ ହରି । ସତ୍ୟଭାମାଙ୍କ କର ଧରି ॥
ନିଜ ଭୁବନେ ବିଜେ କଲେ । ପ୍ରାଣୀଙ୍କି ସଦଗତି ଦେଲେ ॥
ତାଙ୍କ ବଚନ ପୁଣ୍ୟଶ୍ଳୋକ । କହିଲେ ସୂତ ପୌରାଣିକ ॥
ହେ ମୁନିମାନେ ତୁମ୍ଭେ ଶୁଣ । କାର୍ତ୍ତିକ ବ୍ରତ ଯେତେ ଗୁଣ ॥
ସକଳ ବ୍ରତ ମଧ୍ୟେ ସାର । ଭବ ନଦୀର କର୍ଣ୍ଣଧାର ॥
ଯେ ଏହା ମନେ ଜ୍ଞାନେ ଧରି । କାର୍ତ୍ତିକେ ବିଷ୍ଣୁ ଆଶ୍ରେ କରି ॥
ସ୍ନାନ ହବିଷ୍ୟ ଦୀପଦାନ । ତୁଳସୀ ମୂଳେ ଉଦ୍ୟାପନ ॥
ଏ ସୂତ୍ର ଭାବରେ ଯେ ଭଜେ । ଈପ୍ସିତେ ଚତୁର୍ବର୍ଗ ଭୁଞ୍ଜେ ॥
ଏ ବାକ୍ୟ ଶୁଣି ମୁନିମାନେ । ପୁଚ୍ଛନ୍ତି ସୂତ ସନ୍ନିଧାନେ ॥
ହେ ସୂତ ଲୋମହରଷଣି । ସଂସାର ମଧ୍ୟେ ପୁଣ୍ୟ ପ୍ରାଣୀ ॥
ଯେତେ କହିଲ ପୁଣ୍ୟ ଫଳ । କାର୍ତ୍ତିକ ଧର୍ମ କଲ ମୂଳ ॥
ଯେ ଜନ କାର୍ତ୍ତିକ ନ କରି । ସେ ଜନ ସଂସାରୁ ନ ତରି ॥

ଏମନ୍ତ କହିଲ ଯେ ତୁମ୍ଭେ । ଏଥକୁ ପଚାରୁଛୁ ଅମ୍ଭେ ॥
ଯେବଣ ପ୍ରାଣୀ ଏ ମହିମା । ଶୁଣି ନଥିବ ଶ୍ରୁତି ସୀମା ॥
ସେ ପୁଣି ସାଧୁ ମୁଖୁ ଶୁଣି । ଏତେ କରଣ ବୋଲି ଜାଣି ॥
ବ୍ୟାଧିବନ୍ଧନ ବନ୍ଧବଶେ । ଅଥବା ଥିବ ପରବଶେ ॥
କାର୍ତ୍ତିକ ବ୍ରତ ଆଗମନେ । ସଂକଳ୍ପ କରି ଆବାହନେ ॥
ବସ୍ତୁ ପ୍ରୀତିରେ ବ୍ରତ କରି । ଭବସାଗରୁ ଯିବେ ତରି ॥
ଏମନ୍ତ କଳ୍ପି ପ୍ରାଣୀ ଚିତ୍ତେ । ବିଚାର କରୁଥିବ ନିତ୍ୟେ ॥
ସେ ପୁଣି କାର୍ତ୍ତିକ ନିକଟେ । କି ଅବା ପଡ଼ିବ ସଙ୍କଟେ ॥
ରାଜ୍ୟ ଦୁର୍ଭିକ୍ଷ କ୍ଷିତିଭ୍ରଷ୍ଟେ । କିବା ବାନ୍ଧବ ଜନେ କଷ୍ଟେ ॥
ପର ଆୟତ୍ତେ ପଡ଼ିଥିବ । କି ଅବା ଆପେ ନାଶ ଯିବ ॥
ଏମନ୍ତେ ବିଘ୍ନ ଅନାୟତ୍ତେ । ସେ ପ୍ରାଣୀ ତରିବ କେମନ୍ତେ ॥
ଏଥକୁ କହ ପ୍ରତିକାର । ତୁମ୍ଭେ ସର୍ବଜ୍ଞ ବୁଦ୍ଧି କର ॥
ଏମନ୍ତ ମୁନିଙ୍କ ବଚନେ । ସୂତ କହନ୍ତି ସାବଧାନେ ॥
ହେ ପୁଣ୍ୟ ଆତ୍ମା ମାନେ ଶୁଣ । ଯେ ପଦ୍ମ ପୁରାଣେ ପ୍ରମାଣ ॥
ଉତ୍ତରଖଣ୍ଡେ ଯଥା ମାନ । କହି ଅଛନ୍ତି ପଦ୍ମଯୋନି ॥
ସେ ଧର୍ମ କାର୍ତ୍ତିକ କୃତ୍ୟରେ । ଯେବଣ ଜନ ବାଞ୍ଛା କରେ ॥
ତାର ଶରୀରେ ପାପ ଯେତେ । ବାହାର ହୁଅଇ ତ୍ୱରିତେ ॥
ହଗତେ ବାମ ପାଶେ ଥାଇ । କାର୍ତ୍ତିକ ଅନ୍ତେ କ୍ଷୟ ଯାଇ ॥
ଯଦି କାର୍ତ୍ତିକ ଅପ୍ରବେଶ । ପ୍ରାଣୀ ନିଧନ ଆୟୁ ଶେଷ ॥
ସେ ଲଭେ ଦେବଙ୍କ ସ୍ୱରୂପ । ତା ଭୁଲେ ନ ରହଇ ପାପ ॥
ଯେବେ ଜୀବନେ ବର୍ତ୍ତି ଥାଇ । କାର୍ତ୍ତିକ ଆଦ୍ୟ ବିଘ୍ନ ହୋଇ ॥
ତିନ ପ୍ରକାରେ ତପୀମାନେ । ଗୃହ ପ୍ରଦେଶେ କିବା ବନେ ॥
ଏମନ୍ତ ହେଲେ ଅକର୍ତ୍ତବ୍ୟ । କେବେହେଁ ବ୍ରତ ନ ଛାଡ଼ିବ ॥
ଯେ ଅକର୍ତ୍ତବ୍ୟ ବ୍ରତାରମ୍ଭ । ତା ଧର୍ମ କହିଲେ ନ ସରେ ॥

କଳ୍ପରେ କଲେ ପୂଜାବିଧି । ସହସ୍ର ଗୁଣରେ ପ୍ରସିଦ୍ଧି ॥
ବିଶେଷେ ହରିହର ଆଳ । କାର୍ତ୍ତିକ କୃତ୍ୟ ମହାଫଳ ॥
ଏ କେବଳ ସ୍ଥଳ ଯହିଁ ନାହିଁ । ଅନ୍ୟ ଦେବଙ୍କୁ ଭଜ ତହିଁ ॥
ଯେବେ ନ ଥିବ ଦେବଆଳେ । ଗ୍ରାମେ ତୁଳସୀ ବୃକ୍ଷମୂଳେ ॥
ତୁଳସୀ ଯବ ନ ଦେଖିବ । ଧାତ୍ରୀ ବୃକ୍ଷକୁ ଆରାଧିବ ॥
ଯାହାକୁ ଟକ୍‌ଜଣ ନ ମିଳ । ପର ଜାଗରେ ପ୍ରତିପଳ ॥
ନିଦ୍ରବ୍ୟ ଉଦ୍ୟାପନ ବିଧି । ବିପ୍ର ବଚନେ ଫଳ ସିଦ୍ଧି ॥
ବିପ୍ର ବୈଷ୍ଣବ ଯେବେ ଦେଖି । ବିଷ୍ଣୁ ଦର୍ଶନ ତୁଲେ ଦେଖି ॥
ଯଦ୍ୟପି ସୁସ୍ଥାନ ନ ପାଇ । ବଟ ଅଶ୍ୱତ୍ଥ ମୂଳେ ଯାଇ ॥
କରିବ କାର୍ତ୍ତିକ ବିଧାନ । ତେଣେ ହୋଇବ ମହାପୁଣ୍ୟ ॥
ହବିଷ୍ୟ ଅନ୍ନ କରି ଭୋଗ । ଆମିଷ ଦ୍ରବ୍ୟ ପରିତ୍ୟାଗ ॥
ଏମନ୍ତ ଅକର୍ତ୍ତବ୍ୟ କାଳେ । କାର୍ତ୍ତିକ ବ୍ରତ ଯେବା ପାଳେ ॥
କଳ୍ପରେ ଆରାଧନା କରେ । କାର୍ତ୍ତିକ ଧର୍ମ ପାଇ ଭଲେ ॥
ଅପରେ ସହସ୍ର ଗୋରୁଦାନ । ଫଳ ଲଭଇ ଦୁଃଖୀଜନ ॥
ବିଷ୍ଣୁ ଶ୍ରୀମୁଖ ଆଜ୍ଞା ଅଛି । ଏଥେ ସଂଶୟ ନାହିଁ କିଛି ॥
କହଇ ମହାଦେବ ଦାସ । କର୍ତ୍ତିକ ବ୍ରତେ ମୋର ଆଶ ॥

ଇତି ଶ୍ରୀ ପଦ୍ମପୁରଣେ ଉତ୍ତରଖଣ୍ଡେ କର୍ତ୍ତିକ ମାହାତ୍ମ୍ୟେ
କାର୍ତ୍ତିକବ୍ରତ ବିହିତ ଧର୍ମ କଥନେ ନାମ
ଷଡ଼ବିଂଶୋଽଧ୍ୟାୟଃ ।

—※—

## ସପ୍ତବିଂଶ ଅଧ୍ୟାୟ

ଋଷୟ ଊଚୁଃ

କଥଂ ତୁଳସ୍ୟାଶ୍ୱତ୍ଥବଟୌ ଗୋବ୍ରାହ୍ମଣସମୌ କୃତୌ
ସର୍ବେଭ୍ୟୋଽପି ତରୁଭ୍ୟୋଽମୂ କସ୍ମାତ୍ ପୂଜ୍ୟତମୌ ମତୌ ॥

ହେ ସୂତ ଶୁଣ ସାବଧାନେ । ତୁମ୍ଭେ କହିଲ ବଦ୍ୟମାନେ ॥
ବଟ ପିପ୍ପଳ ବୃକ୍ଷମୂଳେ । ଥାନ୍ତି କାର୍ତ୍ତିକ ବ୍ରତ ଫଳେ ॥
ସେଠାରେ ବ୍ରତ କରି କଲେ । ଧର୍ମ ପ୍ରାପତ ହେବ ଭଲେ ॥
ଏ କଥା ଶୁଣି ତୁମ୍ଭ ଠାରୁଁ । ମନୁ ସଂଶୟ ଦୂର ହେଉ ॥
ସଂସାରେ ଅଛୁ କେତେ ବୃକ୍ଷ । ଏ କେନ କର୍ମା ହେଲେ ମୁଖ୍ୟ ॥
ଏ କଥା କହ ମୁନିବର । ଶୁଣି ସଂଶୟ ହେଉ ଦୂର ॥
କହନ୍ତି ସୂତ ମହାଜ୍ଞାନୀ । ଶୁଣନ୍ତି ଶୌନକାଦି ମୁନି ॥

ସୂତ ଉବାଚ

ଯେ ବ୍ରହ୍ମା ବିଷ୍ଣୁ ବିରୂପାକ୍ଷ । ସ୍ଥାବରରୂପ ତିନ ବୃକ୍ଷ ॥
ପଳାଶ ପିପ୍ପଳ ନ୍ୟଗ୍ରୋଧ । ଏ ତିନ ସ୍ଥାବର ପ୍ରସିଦ୍ଧ ॥
ଯେଣୁ ଏ ବୃକ୍ଷ ରୂପ ଧରି । ସେ କଥା ଶୁଣ ତପସ୍ୱୀ ॥
ପୂର୍ବେ ଯେ ଉମା ହର ସଙ୍ଗେ । ଏକାନ୍ତ ସ୍ଥାନେ କ୍ରୀଡ଼ାରଙ୍ଗେ ॥
ରହିଲେ କନ୍ଦର୍ପ ବଳାସେ । ତା ଜାଣି ସକଳ ତ୍ରିଦଶେ ॥
ବ୍ରହ୍ମା ସହିତେ ବ୍ରହ୍ମଋଷି । ଗଲେ ଏକସ୍ଥାନେ ବସି ॥
ଈଶ୍ୱର ଅଙ୍ଗ ଦ୍ରବ ହେଲେ । ଦେବଙ୍କୁ ନ ରଖିବ ଭଲେ ॥
ପୂର୍ବେ ଯେ ବୀର ଜଳନ୍ଧର । ରୁଦ୍ର ଅଙ୍ଗରୁ ଅବତାର ॥
ଦେବଙ୍କୁ ଯେତେ ଶାସ୍ତି ଦେଲ । ସେ କଥା କହ୍ନ ନ ସରିଲ ॥
ଏବେ ଈଶ୍ୱର ଅଂଶେ ସୁତ । ପାର୍ବତୀ ଗର୍ଭୁ ହେଲେ ଜାତ ॥
ବଳେ ହୋଇବ ମହାବଳୀ । ତେଜେ ସବୁରି ଦର୍ପ ଦଳି ॥
ହୋଇବ ତିନିପୁରେ ରଜା । ଦେବଙ୍କୁ କରିବ ପରଜା ॥
ଏଥକୁ ଲାଗୁ ଅଛୁ ଭୟ । କେଉଁଠୁ ନ କଲେ ଉପାୟ ॥
ପଛନ୍ତେ ହେବ ପରମାଦ । ଏମନ୍ତ ବିଷ୍ଣୁ ମନେ ଖେଦ ॥
ଦେବଙ୍କ ମନ ଦୁଃଖ ଜାଣି । ବିଷ୍ଣୁଙ୍କୁ ବୃଷ୍ଟି କୃଶପାଣି ॥
ବୋଇଲେ ଶୁଣ ସାବଧାନେ । ଯାହା କହିଲେ ଭୃତ୍ୟମାନେ ॥

ଏ କଥା ଅଟଇ ପ୍ରମାଣ । ସ୍ୱଭାବେ ରୁଦ୍ର ତମ ଗୁଣ ॥
ତହୁଁ ଯେ ହେବ ଉତପତ୍ତି । ସେ ନଷ୍ଟେ ଧ୍ୱଂସିବ ଧରଣୀ ॥
ତୁ ନାଥ ଜଗତ ଠାକୁର । ଏଥିକୁ କହ ପ୍ରତିକାର ॥
ବ୍ରହ୍ମା ବଚନେ ଜଗଜ୍ଜ୍ୟୋତି । ବୋଲନ୍ତି ଶୁଣ ବେଦପତି ॥
ଯାହା କହିଲ ଜନ୍ମ ହେତେ । ସେକଥା ଯୋଗାଇଲ ମୋତେ ॥
ଏବେ ଈଶ୍ୱର ରତିରଙ୍ଗ । ଯେଉଁ ପ୍ରକାରେ ହେବ ଭଙ୍ଗ ॥
ତହିଁକି ଉଦଯୋଗ କର । ଷମ ନୁହନ୍ତି ସୁରାସୁର ॥
ପୂର୍ବେ ଈଶ୍ୱର ତପୋଭଙ୍ଗେ । କନ୍ଦର୍ପ କହିଲ ଅନଙ୍ଗେ ॥
ଏବେ କେ ଭରସା କରିବ । ଈଶ୍ୱର ସନ୍ନିଧିକୁ ଯିବ ॥
ଏଥିକୁ ଆନ ଷମ ନୋହେ । କେବଳ ତୁମ୍ଭେ ଆମ୍ଭେ ଦୁହେଁ ॥
ହର ନିକଟେ ଚାଲ ଯିବା । ଆମ୍ଭଙ୍କୁ ଦେଖି ଦେଖା ଦେବା ॥
ଛୁଡ଼ିବେ ସୁରତି ମୁହାଁସ । ଆମ୍ଭର ଫିଟିବ ସନ୍ଦେଶ ॥
ଏମନ୍ତ କହି ଦେବ ହରି । ବ୍ରହ୍ମାଙ୍କ କର କରେ ଧରି ॥
ଗଲେ ଯେ କପିଳାସ ପୁରେ । ହର ଗଉରୀ ଯେଉଁଠାରେ ॥
ବ୍ରାହ୍ମଣ ରୂପ ଧରି ବେଗେ । ଉଭା ହୋଇଲେ ତାଙ୍କ ଆଗେ ॥
ଓଁକାର କଲେ ବେଦଧ୍ୱନି । ଶୁଣି ଶଙ୍କର ଲଜ୍ଜା ଘେନି ॥
ନିରପେକ୍ଷି ପାର୍ବତୀ ସଙ୍ଗତ । ବ୍ରହ୍ମା ନିକଟେ ଉପଗତ ॥
ନିଜ ସ୍ୱରୂପେ ତିନ ମୂର୍ତ୍ତି । ଲାଜେ ରହିଲେ ମଥା ପୋତି ॥
ତା ଦେଖି ଉମା କଲେ କୋପ । ବୋଇଲେ ଏତ ମହାପାପ ॥
ଏଡ଼େ ଅମାନ୍ତ କାହା ଘରେ । ପ୍ରଭୁ ହେଯା ଏକାନ୍ତରେ ॥
ଅନ୍ୟ ପୁରୁଷ ଆସି ମିଳେ । ଏମନ୍ତ ଅଛି କେଉଁକାଳେ ॥
ନଷ୍ଟପୁ କଲେ ମୋତେ ହିଂସା । ଭାଙ୍ଗିଲ ସ୍ୱାମୀ ସ୍ନେହ ଆଶା ॥
ରତି ଭଗ୍ନରେ ଯେତେ ବ୍ୟଥା । ତୁମ୍ଭେକ ନ ଜାଣ ସେ କଥା ॥
କୀଟ ପତଙ୍ଗ ପଶୁ ଆଦ । ଏ ରତିଖାନ ଜାଣିବ ଯନ୍ଦ ॥

ସର୍ବେ ଜାଣନ୍ତି ରତି ସୁଖ । ବିଚ୍ଛେଦ ଅଛି ଯେତେ ଦୁଃଖ ॥
ତାହା ନ ଜାଣନ୍ତି ବିଟପ । ତୁମ୍ଭର ଜ୍ଞାନ ସେହିରୂପେ ॥
ଏଣୁ ସ୍ଥାବର ରୂପ ହୁଅ । କେବେହେଁ ଏ ସୁଖ ନ ପାଅ ॥
ଏମନ୍ତ ବୋଲି ଶାପ ଦେଇ । ସେଠାରୁ ଗଲେ ମହାମାଈ ॥
ତକ୍ଷଣେ ବ୍ରହ୍ମା ବିଷ୍ଣୁ ହର । ପ୍ରତ୍ୟକ୍ଷେ ହୋଇଲେ ସ୍ଥାବର ॥
ବ୍ରହ୍ମା ପଳାଶ ରୂପଧରି । ପିପ୍ପଳ ବୃକ୍ଷ ହେଲେ ହରି ॥
ଶିବ ହୋଇଲେ ବଟବୃକ୍ଷ । ଅଶେଷ ସ୍ଥାବରଙ୍କ ମୁଖ୍ୟ ॥
ଯେ ଶୁଣେ ଏ ବୃକ୍ଷ ଚରିତ । ହରଇ ଜନ୍ମର ଦୁଷ୍କୃତ ॥
କହଇ ଦାସ ମହାଦେବ । ଯେ ପ୍ରଭୁ ବ୍ରହ୍ମା ବିଷ୍ଣୁ ଶିବ ॥
ସେ ଏକ ଆତ୍ମା ହସ୍ତ ମୂର୍ତ୍ତି । ଖଣ୍ଡିବେ ତ୍ରିଗୁଣ ବିପତ୍ତି ॥

ଇତି ଶ୍ରୀ ପଦ୍ମପୁରାଣେ ଉତ୍ତରଖଣ୍ଡେ କାର୍ତ୍ତିକ ମାହାତ୍ମ୍ୟେ ହସ୍ତୋଦେବ
ସ୍ଥାବର କଥନେ ନାମ ସପ୍ତବିଂଶୋଽଧ୍ୟାୟଃ ।

---

## ଅଷ୍ଟାବିଂଶ ଅଧ୍ୟାୟ

ସୂତ ଉବାଚ

ଏବଂ ସା ପାର୍ବତୀ ଦେବାନଶପତ୍ କ୍ରୁଦ୍ଧ ମନସା
ତସ୍ମାଦ୍ ବୃକ୍ଷତ୍ୱମାପନ୍ନା ସର୍ବେ ଦେବଗଣା କଳ ।

ହେ ମୁନିଜନେ ଶୁଣ ଏବେ । ପାର୍ବତୀ ଶାପେ ତିନି ଦେବେ ॥
ସ୍ୱଦେହେ ହୋଇଲେ ସ୍ଥାବର । ବିରଞ୍ଚି ଆଦି ହରିହର ॥
ଏକଥା ଜାଣି ଦେବଲୋକେ । ମନେ ବିଷାଦ ଗୁରୁ ଶୋକେ ॥
ବ୍ରହ୍ମର୍ଷିଙ୍କୁ ଆଗକରି । ଯହିଁ ଅଛନ୍ତି ଶିବ ନାରୀ ॥
ସେଠାରେ ମିଳି ସୁର ମୁନି । ଯେ ଯାହା ପତ୍ନୀ ସଙ୍ଗେ ଘେନି ॥
ହର ଭୁବନେ କପିଳାସେ । ମିଳିଲେ ଗଉରୀଙ୍କ ପାଶେ ॥
ସ୍ତୁତି ବଚନେ ଦେବତାଏ । ବୋଲନ୍ତି ଶୁଣ ମହାମାୟେ ॥

ଯେ ବ୍ରହ୍ମା ଶିବ ନାରାୟଣ । ଅଶେଷ ବ୍ରହ୍ମାଣ୍ଡ କାରଣ ॥
ଜଗତେ ଯେତେ ଜୀବଜନ୍ତୁ । ଏ ତିନି ଦେବଙ୍କର ହେତୁ ॥
ରାଜସ ସାତ୍ତ୍ୱିକ ତାମସ । ଉତ୍ପତ୍ତି ପାଳନ ବିନାଶ ॥
ଏଣେ ଏ ବ୍ରହ୍ମା ବିଷ୍ଣୁ ଶିବ । ତୋର ମାୟାରେ ତିନି ଦେବ ॥
ସଂସାର ଆତଯାତ କରେ । ଅନାଦି ତ୍ରିଗୁଣ ବିହରେ ॥
ତୁ ଆଦି ଶକ୍ତି ମହାମାୟେ । ତୋ ମନୁ ଜଗତ ଉଦୟେ ॥
ଏ ତିନି ଜଗତ ଅଧିପ । ତୁ ତାଙ୍କୁ କଲୁ ବୃକ୍ଷ ରୂପ ॥
ତେଣୁ ଜଗତ ଜନେ ଦୁଃଖୀ । ଜଗତକର୍ତ୍ତାଙ୍କୁ ନ ଦେଖି ॥
ତୁ ଦେବୀ ଦୟାକର ଏବେ । ଯେ ତିନି ଦେବ ରୂପ ପୂର୍ବେ ॥
ସେରୂପ ହେଉ ପରାପତ । ନୋହିଲେ ନ ରହେ ଜଗତ ॥
ଏମନ୍ତେ ଦେବଙ୍କ ବଚନେ । ଶୁଣି ସନ୍ତୋଷ ଦେବୀ ମନେ ॥
ପ୍ରସନ୍ନ ଶରୀର ନନ୍ଦିନୀ । ନିଜ ସ୍ୱାମୀରେ ଦୟା ଘେନି ॥
ବୋଲନ୍ତି ଶୁଣ ଦେବଲୋକେ । ପୂର୍ବେ ଯେ ବ୍ରାହ୍ମଣର ଶାପେ ॥
ନଦୀ ହୋଇଲେ ସର୍ବ ଦେବେ । ସେହି ବିସ୍ତର କଲି ଏବେ ॥
ହିଂସା କହିଲ ମୋର ତହିଁ । ଏଣୁ ସ୍ଥାବର ରୂପ ହୋଇ ॥
ସଂସାରେ ଥିବେ ସର୍ବ ସୁରେ । ଅଶେଷ ଜନ ଉପକାରେ ॥
ନଦୀ ସ୍ଥାବର ରୂପ ଧରି । ଅଶେଷ ଜନ ହିତକାରୀ ॥
ଏ ପୁଣ୍ୟଫଳେ ନିଜ ଦେହ । ଘେନି ଯେ ଯାହା ଥିବେ ରହ ॥
କେବଳ ବ୍ରହ୍ମା ବିଷ୍ଣୁ ହର । ଏ ଯେଉଁ ରୂପରେ ସ୍ଥାବର ॥
ତାଙ୍କୁ ସଂସାରେ ପୂଜାବିଧି । ସକଳ ଦେବେ କର ସିଦ୍ଧି ॥
ଯାହାକୁ ଯେମନ୍ତ ଭକତି । ପ୍ରଜା ପାଳନେ ନ୍ୟାୟ ନୀତି ॥
ବୃକ୍ଷ ରୂପକୁ ସେବା କରି । ପ୍ରାଣୀ ସଂସାରୁ ଯିବେ ତରି ॥
ଏମନ୍ତ ବେଦଶାସ୍ତ୍ରେ ଲିହି । ଅପରାଧୀକି ଦଣ୍ଡ ଏହି ॥
ଏମନ୍ତେ ଦେବୀ ବାକ୍ୟ ମାନି । ସେଠାରୁ ଗଲେ ସୁରମୁନି ॥

ସକଳ ଦେବେ ବୃକ୍ଷରୂପେ । ରହିଲେ ଗୋବନ୍ଦ ସମୀପେ ॥
ଆବର ପର ହିତକାରୀ । ତହୁଁ ଯେ ଯାହା ରୂପ ଧରି ॥
ଗଉରୀ ବାକ୍ୟ ଅନୁକମ୍ପେ । ମିଳିଲେ ସୁଧର୍ମା ମଣ୍ଡପେ ॥
ବ୍ରହ୍ମା ସହିତେ ରୁଦ୍ର ହରି । ସର୍ବେ ବସିଲେ ସଭା କରି ॥
ସଙ୍ଗ ସମ୍ମୁଖେ ବେଦବର । ବୋଲନ୍ତି ଶୁଣ ସର୍ବ ସୁର ॥
ପାର୍ବତୀ ଶାପେ ସର୍ବ ଦେବେ । ବୃକ୍ଷ ସ୍ୱରୂପ ହୋଇ ଏବେ ॥
ବନ ପର୍ବତ ଗ୍ରାମ ପୁରେ । ରହିବେ ପର ଉପକାରେ ॥
ସଂସାରେ ଯେତେ ଜୀବଜନ୍ତୁ । ମନୁଷ୍ୟ ଦେବ ସର୍ବ ହେତୁ ॥
ସେ ତୁମ୍ଭମାନଙ୍କୁ ଆରାଧି । କରିବ ସର୍ବ କାମ ସିଦ୍ଧି ॥
ମୋର ବଚନ ପ୍ରତିପାଳ । ଅକାର୍ଯ୍ୟେ ପତ୍ର ହିଁ ନ ତୋଳ ॥
ସୁକାର୍ଯ୍ୟେ ପତ୍ର ପୁଷ୍ପ ଫଳ । ବକଳ କାଠ ଆଦି ମୂଳ ॥
ଅବଶ୍ୟ ନେବେ ପ୍ରାଣୀମାନେ । ଉପେକ୍ଷା କରି ଏତେଦିନେ ॥
ଦ୍ୱାଦଶୀ ସଙ୍କ୍ରାନ୍ତି ଜାଣି । ଯେବଣ ଦିନେ କ୍ଷୟ ଶଶୀ ॥
ଦେବତା ଆଳେ ନବା ପତେଥ । ଯେ ବୃକ୍ଷ ରୋପିଥିବ ହସ୍ତେ ॥
ଦୁର୍ଲ୍ଲଭ ଫଳ ପୁଷ୍ପମାନ । ଏହା ନ କରିବ ଛେଦନ ॥
ଯେ ଜନ ଛେଦିବ ଅଜ୍ଞାନେ । ତାର ନିବାସ ନର୍କସ୍ଥାନେ ॥
ନରକୁ ନିସ୍ତରିବେ ଯେବେ । ଅନ୍ଧବେ ଜାତ ହେବ ତେବେ ॥
ଆବର ଶୁଣ ଦେବଗଣେ । ମୁଁ ଯେ ପଳାଶ ବୃକ୍ଷ ବନେ ॥
ରହିବ ବ୍ରହ୍ମା ନାମ ବହି । ଲୋଡ଼ନ୍ତା ଆଉ ନାହିଁ କେହି ॥
କେବଳ ଅନ୍ୟ ସ୍ଥାନେ ବରି । ପତ୍ର ପଲ୍ଲବ ଆଦି କରି ॥
ବ୍ରତ ବନ୍ଧିତ ବ୍ରହ୍ମ ଦଣ୍ଡେ । ହୋମ ସମିଧ କରି କୁଣ୍ଡେ ॥
ମୋ ପୁଷ୍ପ ଶିବ ପରେ ଦେବ । ଏଣେ ଅଶେଷ ପୁଣ୍ୟ ହେବ ॥
ଏଥୁ ଯେ ଅନ୍ୟ କାର୍ଯ୍ୟେ ପୁଣି । ମୋ ଦେହ ଶସ୍ତ୍ର ଯେଣ ହାଣି ॥
ତାର ସୁକୃତ ଫଳ ଯେତେ । ବିନାଶ ହୋଇବ ତୁରିତେ ॥

ଏବେ କହିବା କର୍ମ ଖଣ୍ଡ । ଯେ ହରିହର ଦେବ ମୂର୍ତ୍ତି ॥
ସେ ବଟ ବୃକ୍ଷରାଜ ବନ । ବୃକ୍ଷଙ୍କ ମଧ୍ୟେ ମୋକ୍ଷଦାନ ॥
ସେ ଦେବ ବୃକ୍ଷ ଏକ ସ୍ଥାନେ । ରୋପଣ କରିବ ଯତ୍ନାନେ ॥
ପାଳିବ ଅତି ଯତ୍ନ କରି । ମନରେ ଇଷ୍ଟ ଜ୍ଞାନ ଧରି ॥
ଏରୂପେ ବୃକ୍ଷ ଆରାଧନେ । ସଂସାରୁ ନିସ୍ତରିବ ଜନେ ॥
ଏକ ଆସନେ ଯେଉଁ ନର । ଭଜନ କରଇ ହରିହର ॥
ପୂଜା କରନ୍ତି ନିତ୍ୟେ ନିତ୍ୟେ । ପଞ୍ଚ ସମ୍ଭାର ବିଧିମତେ ॥
ସର୍ବ ଜପିବ ଯାହା ବିଧି । ତେଣେ ଯେତେକ କର୍ମ ସିଦ୍ଧି ॥
ସେ ଧର୍ମ ଫଳ ଦନେ ଦନେ । ବଟ ଅଶ୍ୱତ୍ଥ ଆରାଧନେ ॥
ସକଳ ପାପ ହେବ ନାଶ । ଅନ୍ତେ ଅଲେଖ ପୁରେ ବାସ ॥
ଏ ଫଳ ହୋଇବ ନିଶ୍ଚୟେ । ଆବର ଶୁଣ ଦେବତାଏ ॥
ଯେ ଜନ ମୋ ବଚନ ମେଣ୍ଟି । ବଟ ପିପ୍ପଳ ବୃକ୍ଷ କାଟି ॥
ସେ ସର୍ବ ଦେବ ଦ୍ରୋହ କରେ । ତାକୁ ନିବାସ ନର୍କ ଘୋରେ ॥
କହଇ ମହାଦେବ ଦାସ । ବ୍ରହ୍ମା ବଚନେ ଉପଦେଶ ॥

ଇତି ଶ୍ରୀ ପଦ୍ମପୁରାଣେ ଉତ୍ତରଖଣ୍ଡେ କାର୍ତ୍ତିକ ମାହାତ୍ମ୍ୟେ
ତ୍ରିଦେବ ସ୍ଥାବର ଚରିତ କଥନେ ନାମ
ଅଷ୍ଟାବିଂଶୋଽଧ୍ୟାୟଃ ।

—ଃ୦ଃ—

## ଊନତ୍ରିଂଶ ଅଧ୍ୟାୟ

ସୂତ ଉବାଚ

ଅଶ୍ୱତ୍ଥରୂପୀ ଭଗବାନ୍ ବିଷ୍ଣୁରେବ ନ ସଂଶୟଃ
ରୁଦ୍ରରୂପୀ ବଟସ୍ତଦ୍ୱତ୍ ପଳାଶୋ ବ୍ରହ୍ମରୂପ ଧୃକ୍ ॥

ହେ ମୁନିଗଣେ ଶୁଣ ତୋଷେ । ବ୍ରହ୍ମାଙ୍କ ବାକ୍ୟ ଉପଦେଶେ ॥

ସୁର ଅସୁର ନରକୁଳେ । ଯେ ସାଧୁଜନ ସତ୍ୟ ସ୍ଥଳେ ॥
ଅମ୍ବର କୁଶଳ ବସ୍ତର । ବଟ ପିପ୍ପଳ ସେବାକର ॥
ଲଭିଲେ ମୁକତି ଭକତି । ଖଣ୍ଡିଲେ ଅଶେଷ ଦୁର୍ଗତି ॥
ଶୁଣ ଶଉନକ ମୁନିମାନେ । ବଟ ପିପ୍ପଳ ଆରାଧନେ ॥
ମୂର୍ଖ ଜନଙ୍କ ଜ୍ଞାନ ଅର୍ଥେ । ବିସ୍ତାର କଲେ ଶାସ୍ତ୍ରପଥେ ॥
ମାନ୍ୟେ ଅମାନ୍ୟେ ଧର୍ମାଧର୍ମେ । ଜ୍ଞାନେ ଅଜ୍ଞାନେ କର୍ମାକର୍ମେ ॥
ଯାହା କହିଲେ ମୁନିମାନେ । ସେ କଥା ଶୁଣ ସାବଧାନେ ॥
ଗଉରୀ ଶାପେ ସଦାଶିବ । ସ୍ଥାବର ରୂପ ଦେବଦେବ ॥
ସଂସାରେ ବଟବୃକ୍ଷ ରୂପେ । ପ୍ରକାଶ ହେଲେ କଳ୍ପେ କଳ୍ପେ ॥
ତେଣୁ କଳପ ବୃକ୍ଷ ନାମ । ତା ପୃଷ୍ଠେ ପୁରୁଷୋତ୍ତମ ॥
ପ୍ରଳୟ ଜଳେ ବାସ କରି । ବାଳ ମୁକୁନ୍ଦ ନାମ ଧରି ॥
ତେଣୁ ସେ ବୃକ୍ଷ ଅତି ପ୍ରୀତି । ସ୍ୱଭାବେ ହରିହର ମୂର୍ତ୍ତି ॥
କେବେହେଁ ଭିନ୍ନାଭିନ୍ନ ନୋହେ । ଦ୍ୱିଶାଖ ରୂପ ଏକା ଦେହେ ॥
ଏମନ୍ତ ମହିମା ପ୍ରତ୍ୟକ୍ଷେ । ସେ ହରିହର ବଟବୃକ୍ଷେ ॥
ସେ ବୃକ୍ଷ ପୂଜା କରେ ଯେହୁ । ଅଶେଷ ଫଳ ଲଭେ ସେହୁ ॥
ତେଣୁ ସେ ବୃକ୍ଷକୁ ଆରାଧି । ପାଳନେ ସର୍ବ କାର୍ଯ୍ୟ ସିଦ୍ଧି ॥
ଯେବଣ ଜନ ଜ୍ଞାନ ଚିତ୍ତେ । ବଟ ବିନାଶେ ଶସ୍ତ୍ରାଘାତେ ॥
ତାର ସୁକୃତ ଯେତେ ଥାଇ । ବୃକ୍ଷ ଛେଦନ ମାତ୍ରେ ଯାଇ ॥
କପିଳା ବଧ କଲା ଦୋଷ । ତାଙ୍କରେ ହୋଏ ପରବେଶ ॥
ପୁଣି ସଂସାରେ ଯେତେ ଜନ । କରଇ ଶିବ ଦରଶନ ॥
ସେ ଧର୍ମ ପ୍ରାପତ ନୁହଇ । ଅନ୍ତେ ନରକେ ପଡ଼େ ଯାଇ ॥
ଏକ ବୃକ୍ଷକେ ଏକ ଯୁଗ । ନରକେ ହୋଇଥାଇ ସଙ୍ଗ ॥
ତଦ ଅନ୍ତରେ ରବିତଳେ । ଜାତ ହୁଅଇ ଗିରିମାଳେ ॥
କୋଲ୍ହୁ ମଲ୍ଲାର ରୂପ ଧରି । ଭଲ୍ଲୁ ହିଂସନେ ବନ ହରି ॥

କେବେହେଁ ନ ଲଭିବ ସୁଖ । ପୁଣି ନରକେ ଯାଇ ଦୁଃଖ ॥
ଏ ଗତି ଲଭଇ ପ୍ରତ୍ୟକ୍ଷ । ଏବେ କହିବା ବସ୍ତ୍ରୁ ବୃକ୍ଷ ॥
ଯେ ସର୍ବ ବୃକ୍ଷ ପରେ ରଜା । ତିନି ଲୋକରେ ଯାଙ୍କୁ ପୂଜା ॥
ପିପ୍‌ପଳ ବୃକ୍ଷ ରୂପେ ହରି । ଯେ ତାଙ୍କୁ ଆରାଧନା କରି ॥
ଉତ୍ତମ ସ୍ଥାନେ ନେଇ ରୋପି । ମୂଳେ ଚଉରାବନ୍ଧ ସ୍ଥାପି ॥
ଶୀତଳ ଜଳ ଦେଇ ନତ୍ୟେ । ପୂଜା କରିବ ଭକ୍ତିମତେ ॥
ଦର୍ଶନ ସ୍ପର୍ଶନ ସ୍ମରଣ । ଦଣ୍ଡ ପ୍ରଣାମ ପ୍ରଦକ୍ଷିଣ ॥
ଏମନ୍ତେ ସପ୍ତଧା ଭକତି । ବୃକ୍ଷେ ଚିନ୍ତିବ ବସ୍ତ୍ରୁ ମୂର୍ତ୍ତି ॥
ସ୍ତୁତି କରିବ ଯେ ଉକର । ବୋଲିବ ନମୋ ବୃକ୍ଷେଶ୍ୱର ॥
ହେ ଲକ୍ଷ୍ମୀକାନ୍ତ ଶୁକ୍ଳ ତନୁ । ଶ୍ରୀଭୁଜେ ଶଙ୍ଖ ଚକ୍ର ଧନୁ ॥
ଗଦା ଖଡ଼୍‌ଗ ତୀକ୍ଷଣ ଶର । ମୁକ୍ତ ଅମ୍ବୁଜ ଅଷ୍ଟ କର ॥
କୌସ୍ତୁଭଧର ପୀତବାସ । ଅଖିଳ ନାଥ ହୃଷିକେଶ ॥
ବୃକ୍ଷସ୍ୱରୂପୀ ଭକ୍ତବନ୍ଧ । ମୋତେ ଉଦ୍ଧର କୃପାସିନ୍ଧୁ ॥
ଏମନ୍ତ ବାକ୍ୟେ ସ୍ତୁତି କରି । ବୃକ୍ଷ ସ୍ୱରୂପୀ ନରହରି ॥
ସେବା କରିବ ଯେଉଁ ଜନ । କେତେ କହିବା ତାର ପୁଣ୍ୟ ॥
ଶୌନକ ଆଦ ବ୍ରହ୍ମମୁନ । ଭୃଗୁ ନାରଦ ମହାଜ୍ଞାନ ॥
କଣ୍ୱ କପିଳ ଶୁକ ଯତି । ଯେ ଅମ୍ବରୀଷ ନରପତି ॥
ଧ୍ରୁବ ଭକତ ପ୍ରହଲ୍ଲାଦ । ଜପ୍ଯ ବଜପୂ ସୁଖପ୍ରଦ ॥
ସୁଶୀଳ ଅତିଶୀଳ ମୂଳେ । ଯେ ଭକ୍ତଜନ ବସ୍ତ୍ରୁ ସ୍ଥଳେ ॥
ସେ ଲୋକମାନଙ୍କର ଗତି । ପାଇବେ ବୃକ୍ଷରାଜେ ଭକ୍ତି ॥
ଅନେକ ଜନ୍ମେ ଥିଲେ ପାପ । ଅଙ୍ଗରେ ନ ଲାଗିବ ତାପ ॥
ଜୀବନ୍ତେ ହୋଇଥିବ ସୁଖୀ । ତା ବଂଶେ ଦରିଦ୍ର ନ ଦେଖି ॥
ନିର୍ମଳ ହୋଇଥିବ କୁଳ । ପୃଥିବୀ ଥିବ ଯେତେ କାଳ ॥
ଆପଣେ ଥିବ ବସ୍ତ୍ରୁ ଗ୍ରାମେ । ଏମନ୍ତେ ବୃକ୍ଷ ସେବା ଧର୍ମେ ॥

ଆବର କହିଛନ୍ତି ମୁନି । ପିପ୍ପଳ ଚତୁର୍ବର୍ଗଦାତା ॥
କେବଳ ଆତ୍ମଶୁଦ୍ଧି ମୂଳ । ସେବିଲେ ପାଇ ପୁଣ୍ୟଫଳ ॥
ଯେବଣ ବୃକ୍ଷର ମହିମା । ଅନନ୍ତ ଗୁଣ ପୁଣ୍ୟସୀମା ॥
ଅଶ୍ୱତ୍ଥ ବୃକ୍ଷମୂଳେ ବସ୍ତି । ବ୍ରହ୍ମମୁନିଙ୍କି ସେବି ରହି ॥
ଦେବଗଣଙ୍କ ତୁଲେ ହରି । ବୃକ୍ଷ ମଧ୍ୟରେ ବିଜେ କରି ॥
ଅନନ୍ତ ସିଦ୍ଧିଗଣ ତୁଲେ । ଶଙ୍କର ଶିଖରେ ରହିଲେ ॥
ନାନାଦି ଯଜ୍ଞ ବ୍ରତ ଫଳେ । ବିଶ୍ରାମ କଲେ ଦଳେ ଦଳେ ॥
ସକଳ ଦାନ ତୀର୍ଥ ଧର୍ମ । ଅଶେଷ ନ୍ୟାୟ କୀର୍ତ୍ତି କର୍ମ ॥
ସର୍ବ ସୁକୃତ ଫଳମାନ । ଥାନ୍ତି ପିପ୍ପଳ ସନ୍ନିଧାନ ॥
ବାସୁକି ଆଦି ନାଗ ଲୋକେ । ବୃକ୍ଷ ଶିଖରେ ଏକେ ଏକେ ॥
ବିଷ୍ଣୁ ଭକତ ଆଗେ ରହି । ଏମନ୍ତ ଗୁଣ ଅଛି ଯହିଁ ॥
ସେ ମହା ସ୍ଥାବର ପିପ୍ପଳ । ପ୍ରତ୍ୟକ୍ଷେ ନାରାୟଣ ତୁଲ୍ୟ ॥
ସେବିଲେ ସର୍ବ କର୍ମ ସିଦ୍ଧି । ଯେ ଜନ ତାରେ ଅପରାଧି ॥
ସେ ମହାପାପୀ ବିଷ୍ଣୁଦ୍ରୋହୀ । ତାର ସୁଗତି ଆଉ କାହିଁ ॥
ଯେ ବିଷ୍ଣୁବୃକ୍ଷ କରେ ନାଶ । ଲଭଇ ବ୍ରହ୍ମହତ୍ୟା ଦୋଷ ॥
ବୃକ୍ଷରୁ ପତ୍ର ଯେତେ ଝଡ଼ି । ଭୂମି ଉପରେ ଥାଇ ପଡ଼ି ॥
ତେତେ ବରଷ କୁମ୍ଭୀପାକେ । ପଡ଼ନ୍ତି ବୃକ୍ଷଘାତୀ ଲୋକେ ॥
ଯେ ବିଷ୍ଣୁବୃକ୍ଷୁ ପତ୍ର ତୋଳି । ସେ ଛେଦେ ବ୍ରହ୍ମାଙ୍କ ଅଙ୍ଗୁଳି ॥
ଏମନ୍ତେ ମହାପାପ ପାଇ । ସେ ବୃକ୍ଷେ ଉଠେ ପାଦଦେଇ ॥
ତା ପାପ କହିଲେ ନ ସରେ । ଗୁରୁ ମସ୍ତକେ ପାଦ ମାରେ ॥
ଯେ ବୃକ୍ଷେ ଅନଳ ଲଗାଇ । ମୂଳେ ବା ଅମେଧ୍ୟ ପକାଇ ॥
ଏ ସର୍ବ ଅପରାଧ ଫଳେ । ପଡ଼ଇ ଘୋର ନର୍କସ୍ଥଳେ ॥
ପୁଣ ନରକୁ ଯେବେ ତରି । ଚଣ୍ଡାଳ ଗୃହେ ଅବତରି ॥
ଅନ୍ଧ ପାଗଳ ଜଡ଼ମତେ । ରକତ ବାତ ବ୍ୟାଧି ଯେତେ ॥

କୁରୂପ କୁବୁଦ୍ଧ କୁନଖେ । ଏମନ୍ତ ଚନ୍ତୁ ବନ୍ଧୁ ଦୁଃଖେ ॥
ସଂସାରେ ଜାତ ହୋଇଥାଇ । ବିଷ୍ଣୁ ଭଜିଲେ ଶୁଦ୍ଧ ହୋଇ ॥
ଏ କଥା ଶୁଣ ସାଧୁଜନେ । ଅଶ୍ୱତ୍ଥ ବୃକ୍ଷ ଆରାଧନେ ॥
ବିଷ୍ଣୁ ଭକତି ଫଳ ପାଇ । ଅନ୍ତେ ବୈକୁଣ୍ଠେ ବସେ ଯାଇ ॥
ଏମନ୍ତେ ମହିମା ସ୍ଥାବର । କେବଳ ଦିନ ଶନିର ବାର ॥
ଅଶ୍ୱତ୍ଥ ବୃକ୍ଷ ନ ଛୁଇଁବ । ସପ୍ତମ ବାରେ ଆରାଧିବ ॥
ସର୍ବଦା ଦିନ ରାତ୍ରିକାଳେ । ନ ବସ ବିଷ୍ଣୁ ବୃକ୍ଷ ତଳେ ॥
ସନ୍ଧ୍ୟାରେ ସ୍ମରଣ ନ କର । ଛୁଇଁଲେ ହତ ହୁଏ ଶିର ॥
ଶନିବାରରେ ପୂଜା ବିଧି । କଲେ ସକଳ ଧର୍ମ ସିଦ୍ଧି ॥
କହିଲ ମହାଦେବ ଦାସ । ଏ ପଦ୍ମପୁରାଣେ ପ୍ରକାଶ ॥
ଉତ୍ତର ଖଣ୍ଡେ ବିଦ୍ୟମାନେ । ଯାହା କହିଲେ ମୁନିଜନେ ॥
ଏ କଥା ହେନ ହେତୁ କର । ନରେ ସଂସାରୁ ଯିବେ ତରି ॥

ଇତି ଶ୍ରୀ ପଦ୍ମପୁରାଣେ ଉତ୍ତରଖଣ୍ଡେ କାର୍ତ୍ତିକ ମାହାତ୍ମ୍ୟେ ବଟ
ପିପ୍ପଳ ମହିମା କଥନେ ନାମ ଊନତ୍ରିଂଶୋଽଧ୍ୟାୟଃ ।

—*—

## ତ୍ରିଂଶ ଅଧ୍ୟାୟ

ଅଶ୍ୱତ୍ଥସ୍ୟ ଚ କଥିତଂ ସୂତ ବୋଧିତରୋସ୍ତଥା
ସ୍ପୃଶ୍ୟଶ୍ଚ କଥଂ ପ୍ରାପ୍ତସ୍ତଥାସ୍ୟଂ ସୌରିବାସରେ ॥

ବଟ ପିପ୍ପଳ ଧର୍ମବାଣୀ । ଶୌନକ ଆଦି ମୁନି ଶୁଣି ॥
ଆନନ୍ଦ ହୋଇ ମହାଜନେ । ପୁଣି ସଂଶୟ ହେଲା ମନେ ॥

ଶୌନକ ଉବାଚ

ସୂତମୁନିଙ୍କ ମୁଖ ଚାହିଁ । ବୋଲନ୍ତି ଶୁଣ ପୁଣ୍ୟଦେହୀ ॥
କିମ୍ପା ଅଶ୍ୱତ୍ଥ ବୃକ୍ଷମୂଳେ । ବିଶ୍ରାମ ଦୋଷ ରାତ୍ରିକାଳେ ॥
ଆବର ଅର୍କବାର ଦିନ । ଛୁଇଁଲେ ହତ ହୁଏ ପୁଣ୍ୟ ॥

ଏ କଥା କହ ପରମ ଣି । ଆନ୍ତ ହରଷ୍ୟ ସାଜ ଶୁଣି ॥
ଏମନ୍ତେ ମୁନିଙ୍କ ବଚନେ । ସୂତ କହନ୍ତି ଚେଷମନେ ॥

ସୂତ ଉବାଚ

ବୋଲନ୍ତି ଶୁଣ ସର୍ବ ମୁନି । ପୂର୍ବେ ଯେ ସୁରାସୁର ବେନି ॥
ବ୍ରହ୍ମା ସନ୍ନିତେ ହରିହର । ମନ୍ଦରେ ମନ୍ଥିଲେ ସାଗର ॥
ସେ କ୍ଷୀର ଜଳଧି ମନ୍ଥନୁ । ଲକ୍ଷ୍ମୀ ସନ୍ନିତେ କାମଧେନୁ ॥
କୌସ୍ତୁଭ ଆଦି ରତ୍ନମଣି । ଅମୃତ ବିଶଲ୍ୟକରଣୀ ॥
ଅଷ୍ଟନାୟିକା ଅଷ୍ଟନିଧି । ଚତୁର୍ବର୍ଗ ଫଳ ସିଦ୍ଧି ॥
ଐରାବତ ଉଚ୍ଚୈଃଶ୍ରବା । ଏ ଆଦି ଯେତେ ଦ୍ରବ୍ୟ ଅବା ॥
କେତେ କହିବା ପରମାଣି । ତୁମ୍ଭେ ତ ପୂର୍ବେ ଅଛ ଶୁଣି ॥
ଏମନ୍ତ ସମୁଦ୍ର ମନ୍ଥନେ । ଯାହା ପାଇଲେ ସୁର ଗଣେ ॥
ସେ ସର୍ବ ତୈଲୋକ୍ୟ ଦୁର୍ଲ୍ଲଭ । ଦେବଙ୍କୁ ଦେଲେ ପଦ୍ମନାଭ ॥
ଆପେ ଲକ୍ଷ୍ମୀଙ୍କି ଲଭି ହରି । ନିଜ ଭୁବନେ ବିଜେ କରି ॥
ସୁଖରେ ବଇକୁଣ୍ଠପୁର । ସୁକୃତଜନ ସୁଖଘର ॥
ଯହିଁ ବସନ୍ତି ଯେତେ ପ୍ରାଣୀ । ଯୁଗ ନିମିଷ ପ୍ରାୟେ ମଣି ॥
ଗୋବିନ୍ଦ ରୂପ ଦରଶନେ । ନିତ୍ୟେହେଁ ସୁଖ ଜାତ ମନେ ॥
ଏମନ୍ତ ମନ୍ଦିରେ ମୁରାରି । ଲକ୍ଷ୍ମୀ ସନ୍ନିତ ବିଜେ କରି ॥
ପ୍ରଭୁଙ୍କ ଅନୁରାଗ ମଣି । ଗୁମୁରେ କ୍ଷୀରୋଦ ଦୁଲଣୀ ॥
ସନ୍ମୁଖେ ଯୋଡ଼ି କେନକର । ବୋଲନ୍ତି ବଚନ ମଧୁର ॥
ହେ ପ୍ରଭୁ ପ୍ରଭୁ ପୁଣ୍ୟମୟ । ଯା ମନୁ ବ୍ରହ୍ମାଣ୍ଡ ଉଦୟ ॥
ବ୍ରହ୍ମାଣ୍ଡନାଥ ବିଶ୍ୱେଶ୍ୱର । ବ୍ରହ୍ମାଣ୍ଡ ଯାର ଖେଳଘର ॥
ବ୍ରହ୍ମସ୍ୱରୂପୀ ବ୍ରହ୍ମଜ୍ଞାନୀ । ବ୍ରହ୍ମ ବିଲଗ୍ନ ବ୍ରହ୍ମମୁନି ॥
ଏଣୁ ଏ ଅଶେଷ ବ୍ରହ୍ମାଣ୍ଡ । ବାଲୁକା ପ୍ରାଏ ହୋଏ ରୁଣ୍ଡ ॥
ତୁମ୍ଭ ଶରୀରେ ଲୋମମୂଳେ । ଉଦୟ ଅସ୍ତ କାଳେ କାଳେ ॥

ଏଣୁ ଏ ଅଶେଷ ମହିମା । କେ ଜାଣିପାରେ ଗୁଣସୀମା ॥
କେବଳ ଭକ୍ତଜନ ହିତେ । ଗୁଣ ବିସ୍ତାର ବହୁମତେ ॥
ସଂସାର ହୋଇଛୁ ପ୍ରକାଶ । ଅନାଦି ମହତ ପୁରୁଷ ॥
ଅଶେଷ ଜନ ଅନ୍ତର୍ଯ୍ୟାମୀ । ପର ଅପର ଆତ୍ମାରାମୀ ॥
ସକଳ ହୃଦପଦ୍ମେ ରହି । ଏଣୁ ଅଶେଷ ଭାବଗ୍ରାହୀ ॥
ଭବର ଭବ ଦୀନବନ୍ଧୁ । ସୁଜନ ଜନ କୃପାସିନ୍ଧୁ ॥
ଶରଣଜନ ସୁଖରାଶି । ମୁହିଁ ତୁମ୍ଭର ନିଜ ଦାସୀ ॥
ତେଣୁ ଏ ଶ୍ରୀଚରଣ ତଳେ । ଜଣାଉଅଛୁ ଭକ୍ତିବଳେ ॥
ପ୍ରସନ୍ନେ ଶୁଣ ଅନ୍ତର୍ଯ୍ୟାମୀ । ମୋ ଜ୍ୟେଷ୍ଠ ଭଗ୍ନୀ ଅଲକ୍ଷଣୀ ॥
ବିରୂପ ଦେଖି ଅଙ୍ଗଶୋଭା । କେହି ନେ ହିଲେ ତାକୁ ବିଭା ॥
ତାହାକୁ ଚାହିଁ ମୋର ପିତା । ବରୁଣ ମନେ ମହା ଚିନ୍ତା ॥
ସ୍ୱଭାବେ ଯୁବାକନ୍ୟା ଗୃହେ । ଯେ ରଖିଥାଇ ଅବିବାହେ ॥
ତାର ସୁକୃତ ଯେତେ ଥାଇ । ଦୁହିତା ଯୋଗୁ ନାଶ ଯାଇ ॥
ଏମନ୍ତ ଅଛି ଶାସ୍ତ୍ର ଧର୍ମେ । ଯୋଗେ ଜ୍ୟେଷ୍ଠ ଦୁହିତା କର୍ମେ ॥
ଯଦ୍ୟପି ନ ମିଳିବ ବର । ତା ରୂପ ଦେଖି ଅସୁନ୍ଦର ॥
ଏଥିକୁ ଶୋଚନା ନ କର । ତା ରୂପ ଅନୁରୂପେ କର ॥
ଜ୍ୟେଷ୍ଠ ଝିଅକୁ ବିଭା ଦେବ । ପୁଣି କନିଷ୍ଠ ଯେବେ ଥିବ ॥
ତାହାକୁ ପଛେ ବିଭା କର । ତେବେ ସେ ଧର୍ମ ରଖିପାର ॥
ଏ କଥା ଜାଣନ୍ତି ନା ସର୍ବେ । ସେ କଥା ବିପରୀତ ଏବେ ॥
ଜଳଧି ରାଜା ତବ ପ୍ରୀତେ । ଆଗେ ପ୍ରଦାନ କଲା ମୋତେ ॥
ଜ୍ୟେଷ୍ଠା କୁମାରୀ ଗୃହେ ରଖି । ଅନବରତ ମନେ ଦୁଃଖୀ ॥
ସେ ଦୁଃଖ ତାପ ମୋର ହୃଦେ । ତେଣୁ ଜଣାଏ ତୁମ୍ଭ ପାଦେ ॥
ତୁମ୍ଭେ ଯେ ଜଗତ କରତା । ଜାଣ ସକଳ ଜନ ଚିନ୍ତା ॥
ହେ ପ୍ରଭୁ ଭକ୍ତ ସେନ ମୋର । ସେ ଅଲକ୍ଷ୍ମୀକି ବିଭାକର ॥

ଏମନ୍ତ ଲକ୍ଷ୍ମୀ ମୁଖୁ ଶୁଣି । ଅଶେଷ ଜନ ଚିନ୍ତାମଣି ॥
ସେ ଯେଣୁ ସର୍ବ ଭୂତେ ବାସ । ପରମଦୟାଳୁ ପୁରୁଷ ॥
ପ୍ରିୟା ବଚନେ ସ୍ନେହ ବନ୍ଧ । ତକ୍ଷଣେ ଗରୁଡ଼ ଆରୋହି ॥
ସେ ଋଷି ଉଦ୍ଦାଳକ ନାମେ । ମିଳିଲେ ତାହାଙ୍କ ଆଶ୍ରମେ ॥
ବିଷ୍ଣୁଙ୍କୁ ଦେଖି ତପସ୍ୱୀ । ଆନନ୍ଦେ ପୂଜାବିଧି କରି ॥
ସେ ପୂଜା ଷୋଡ଼ଶ ପ୍ରକାରେ । ପୂଜିଲ ଗୋବିନ୍ଦ ପଦ୍ମରେ ॥
ସନ୍ତୋଷେ ଯେବେ ପୂଜାବିଧି । କହନ୍ତି କରୁଣା-ଜଳଧି ॥
ହେ ମୁନିଶ୍ରେଷ୍ଠ ତୁମ୍ଭେ ଶୁଣ । ତୁମ୍ଭ ସଙ୍ଗତେ ବନ୍ଧୁପଣ ॥
ଆମ୍ଭର କରିବାକୁ ଇଚ୍ଛା । ହେ ମୁନି ତୁମ୍ଭର କି ବାଞ୍ଛା ॥
ଆମ୍ଭ କମଳା ଭଗ୍ନୀ ଜ୍ୟେଷ୍ଠ । ବିଶ୍ୱରେ ସବୁ ଚନ୍ଦ୍ର ଶ୍ରେଷ୍ଠ ॥
ତାହାକୁ ତୁମ୍ଭେ ବିଭା ହୁଅ । ଯେବେ ଆମ୍ଭରେ ଅଛି ପ୍ରିୟ ॥
ତୁମ୍ଭେ ପରମ ସାଧୁ ଅଟ । ଆମ୍ଭ ମନକୁ ତୁମ୍ଭେ ଖଟ ॥
ସାଧୁ ସଙ୍ଗତେ ବନ୍ଧୁପଣ । ଏ କଥା ପରମ କାରଣ ॥
ମୁନି ସୁଜନଜନ ବନ୍ଧୁ । ହସି କହନ୍ତି କୃପାସିନ୍ଧୁ ॥
ପ୍ରଭୁଙ୍କ ମୁଖ ପ୍ରିୟ ବାକ୍ୟ । ଶୁଣି ସାନନ୍ଦ ଉଦ୍ଦାଳକ ॥
କର ଅଞ୍ଜଳି ଶିରେ ଦେଇ । ବୋଇଲେ ନମ୍ରଭାଳି ମୁନି ॥
ହେ ପ୍ରଭୁ ଜଗତଜୀବନ । ଯେ ତୁମ୍ଭ ଶ୍ରୀମୁଖ ବଚନ ॥
ସେ ଆଜ୍ଞା ଅଲଙ୍ଘିତ ମୋର । ତୁମ୍ଭେ ଯେ କରୁଣା ସାଗର ॥
ଅସାଧୁ ମହାଦେବ ଦାସ । କ୍ଷମା କରିବା ମୋର ଦୋଷ ॥
ବନ୍ଧୁ ପ୍ରାର୍ଥନା ବାକ୍ୟ ଶୁଣି । ହେଉ ବୋଇଲେ ଚକ୍ରପାଣି ॥

ଇତି ଶ୍ରୀ ପଦ୍ମପୁରାଣେ ଉତ୍ତରଖଣ୍ଡେ କାର୍ତ୍ତିକ ମାହାତ୍ମ୍ୟେ
ବିଷ୍ଣୁ ଉଦ୍ଦାଳକ ପୁର ପ୍ରବେଶେ ନାମ ବିଂଶୋଽଧ୍ୟାୟଃ ।



# ଏକତ୍ରିଂଶ ଅଧ୍ୟାୟ

## ସୂତ ଉବାଚ

ଘୃଣାସ୍ପଦାଂ ଦୀର୍ଘଶ୍ରବଣାଂଦାକୃତିଂ ଚଭୃତ ମତ
ଜଭ୍ୟଞ୍ଚାଂ ରକ୍ତନୟନାଂ ରୁକ୍ଷପିଙ୍ଗଶିରୋରୁହାଂ ॥

ତହୁଁ ର ମହିମା ଅନେକ । କହନ୍ତି ସୂତ ପୌରାଣିକ ॥
ଶୁଣ ସକଳ ମୁନିଗଣେ । ଗୋବିନ୍ଦ ଆଜ୍ଞା ପ୍ରମାଣେ ॥
ମିଳି ସକଳ ବ୍ରହ୍ମଋଷି । ବରୁଣ ପୁରେ ଦୂତ ପେଷି ॥
ଜ୍ୟେଷ୍ଠା କନ୍ୟାକୁ ଅଣାଇଲେ । ବିଭା ମଣ୍ଡପେ ଉଭା କଲେ ॥
ଅନେକ ଲୋକେ ମିଳି ତହିଁ । କନ୍ୟାକୁ ଦେଖୁଛନ୍ତି ରହି ॥
ସ୍ୱଭାବେ ଅଲକ୍ଷ୍ମୀ ତା ନାମ । ରୂପ ତା ବିପରୀତ କର୍ମ ॥
ପୃଥୁ ଶରୀର ବୃଦ୍ଧା ଜନ । ବିଶାଳ ହୃଦ କଟୀ କ୍ଷୀଣ ॥
ପିଙ୍ଗଳ କେଶ ଲମ୍ବ କର୍ଣ୍ଣ । ରକତ ନେତ୍ର ଘର୍ଘାନନ ॥
ଦ୍ୱିପଖା ଚୂଲି ମଧ୍ୟ ଝିଙ୍କା । ପର୍ବତ ଦିଶଇ ନାସିକା ॥
ଅତି ଓସାର ବେନି ପାଟି । ଶ୍ରବଣ ପର୍ଯ୍ୟନ୍ତେ ଯୋଡ଼ି ॥
ହସିତେ କର୍ଣ୍ଣ ଦନ୍ତପନ୍ତି । ଦିଶଇ ଭୟଙ୍କର ମୂର୍ତ୍ତି ॥
ଜିହ୍ୱା ଖଡ଼ଗ ପ୍ରାୟେ ଜାଣି । ଓଷ୍ଠ ଉନ୍ନତ ଖର ବାଣୀ ॥
ଦୀର୍ଘ ଚରଣ କ୍ଷଦ୍ର କର । ଅଙ୍ଗେ ଯେ ବସ୍ତ୍ର ଅଳଙ୍କାର ॥
କିଛି ନ ଦିଶେ ତାକୁ ଶୋଭା । ବଣିଜ ପ୍ରାୟେ ହୋଇ ଉଭା ॥
କାକର ପ୍ରାୟ ବକ୍ର ଦୃଷ୍ଟି । ଶ୍ରୀମନ୍ତ ରୂପ ଦେଖି କଷ୍ଟି ॥
ତାହାକୁ ଦେଖି ସର୍ବ ଲୋକେ । ଆଶ୍ଚର୍ଯ୍ୟ ମଣୁଛନ୍ତି ଥୋକେ ॥
ତହୁଁ ଆଦେଶେ ଉଦ୍ଦାଳକ । ସ୍ୱଭାବେ ସୁଜ୍ଞ ସୁବିବେକ ॥
କନ୍ୟା ବିଗୁଣ ନ ବାଛିଲେ । ଅଲକ୍ଷ୍ମୀକୁ ସେ ବିଭା କଲେ ॥
ବିଭା କରାଇ ମୁନିଗଣ । ବ୍ରହ୍ମା ସହିତେ ନାରାୟଣ ॥
ଯେ ଯାହା ପୁରେ କଲେ ବିଜେ । ଏଥୁ ଅନ୍ତରେ ଶୁଣ ଦ୍ୱିଜେ ॥

ଅଲକ୍ଷ୍ମୀକି ଯେ ସଙ୍ଗେ ଘେନ । ସେଠାରୁ ଉଦ୍ଦାଳକ ମୁନି ॥
ନିଜ ଆଶ୍ରମେ ଯାଇ ମିଳି । ସୁବର୍ଣ୍ଣ ଦେଲେ ହୁଳହୁଳି ॥
ମଙ୍ଗଳ ବର୍ଦ୍ଧି କଲେ ଆଣି । ତା ଦେଖି ସାଗର ଦୁଲଣୀ ॥
ସୁଖ ନ ଭଜି ତାର ମନେ । ପ୍ରବେଶ ମୁନି ସନ୍ନିଧନେ ॥
ତହିଁ ଶୁଣିଲା ବେଦ ଧ୍ୱନି । ଆକୁଳ ହୋଇଲା କାମିନୀ ॥
ହୋମର ଅଗ୍ନି ଧୂମବାସେ । ବିପ୍ର ନାରୀଙ୍କ ଧର୍ମ ହାସେ ॥
ଅଲକ୍ଷ୍ମୀ ଦେହେ ଦୁଃଖଲାଗେ । ଘରୁ ବାହାର ହେଲା ବେଗେ ॥
ଦାଣ୍ଡରେ ଉଭା ହେଲା ଆସି । ତା ଦେଖି ଉଦ୍ଦାଳକ ଋଷି ॥
ନିଜ ଘରଣୀ ଆଗେ ମିଳି । ବଚନ କହନ୍ତି ଉତାଳି ॥
କାନ୍ତା ତୁ ମୋର ଗୃହ ଛାଡ଼ି । ସକଳ ଲଜ୍ଜା ଦୂରେ ଏଡ଼ି ॥
ଦାଣ୍ଡରେ ଆସି ହେଲୁ ଉଭା । ଏ ମୋତେ ନ ଦିଶିଲା ଶୋଭା ॥
ଆବର କାନ୍ଦୁଅଛୁ କୋହେ । କି ଅବଗୁଣ ମୋର ଗୃହେ ॥
ତା ଘେନ ଆକୁଳ ମୋ ଦେହ । କେ କି ବୋଇଲା ମୋତେ କହ ॥
ଏମନ୍ତ ମୁନି ମୁଖୁ ଶୁଣି । ଅଲକ୍ଷ୍ମୀ କହୁଅଛି ବାଣୀ ॥
ହେ ମହାଋଷି ତୁମ୍ଭେ ଶୁଣ । ମୋଠାରେ ଅଛି ଯେତେ ଗୁଣ ॥
ତାହା କହିବି ତୁମ୍ଭ ଆଗେ । ହେ ନାଥ ଶୁଣ ଅନୁରାଗେ ॥
ମୁଁ ଯେ ବରୁଣ ରଜା ଝିଅ । ଯାବତ ବାଦେ ମୋର ପ୍ରିୟ ॥
ଯେବଣ ଗୃହେ ନିତ୍ୟ କଳି । ଏକ ଆରକେ ବାହୁଆଳି ॥
ପୁତ୍ର ଭାର୍ଯ୍ୟା ଦାସ ଦାସୀ । ପ୍ରଭୁଙ୍କୁ ନିନ୍ଦୁଥିବେ ବସି ॥
ମଧୁର ସଂସ୍କାର ନ କର । ପଦାର୍ଥ କରୁଥିବେ ସ୍ୱେର ॥
ଯହିଁ ଶକଟ ଦ୍ୟୁତ ଖେଳ । ମିଥ୍ୟା କପଟ ମାଡ଼ଗୋଳ ॥
ପରଦାର ପ୍ରୀତିରେ ରସି । ଏକ ଆରକେ ପରିହାସୀ ॥
ପରକୁ କହୁଥିବେ ନିନ୍ଦ । ଆପଣା ଗୁଣ ହିପୁା ବଢ ॥
ଗବଙ୍କୁ କରୁଥିବେ ହିଂସା । ଏମନ୍ତ ସ୍ଥାନେ ମୋର ବସା ॥

ଯହିଁ ନ ରହେ ମୋର ମନ । ସେ କଥା ଶୁଣ ତପୋଧନ ॥
ବେଦ ବଚନ ଆଦି ଗୀତ । ଯେ ବାକ୍ୟ ଗୋବିନ୍ଦ ଚରିତ ॥
ଏହା ମୁଁ ନ ଶୁଣିବ କର୍ଣ୍ଣେ । ଯେ ବାଦ୍ୟ ମଙ୍ଗଳ ବିଧାନେ ॥
ନୟନେ ନ ଦେଖଇ ଯାହା । ସେ କଥା ଶୁଣ ମୋର ତାହା ॥
ସ୍ତ୍ରୀ ଶିଶୁ ପୁରୁଷ ଆଦିକରି । ଯେ ଜନ ସୁନ୍ଦର ସୁବେଶ ॥
ସୁନ୍ଦିଯ୍ୟାବନ୍ତ ଶୁଦ୍ଧଚିତ୍ତେ । ସୁବେଶ ହୋଇଥିବ ନିତ୍ୟେ ॥
ସୁସଞ୍ଚସ୍ଥରେ ଥିବେ ରହି । ମୁଁ ତାହା ନ ପାରଇ ସହି ॥
ହବିଷ୍ୟ ଅନ୍ନ ଶୁଦ୍ଧ ପାତେ । ଯେ ପୁଣ୍ୟତୀର୍ଥ ପୁଣ୍ୟକ୍ଷେତେ ॥
ଏଣେ ସନ୍ତୋଷ ଯାର ମନ । ମୋ ଦେହ ତାରେ କମ୍ପମାନ ॥
ଗନ୍ଧ ଚନ୍ଦନ ଜାତି ପୁଷ୍ପ । ମୁଁ ନ ସେନଇ ତାର ବାସ ॥
ଆମିଷ ବାସ ଛହିଁ ନାହିଁ । ମୁଁ ତହିଁ ନ ପାରଇ ରହି ॥
ଭୁମ୍ଭ ମଧରେ ଘୃତବାସ । ହୋମ ଅନଳ ଧୁମବାସ ॥
ମୁଁ ତାହା ନ ପାରଇ ସହି । ବେଦ ବଚନେ ମୋର ଦେହି ॥
ବାତେ କଦଳୀ ପ୍ରାୟେ କମ୍ପେ । ଗରୁଡ଼ ଆଗେ ଯେସନେ ସର୍ପେ ॥
ମୂର୍ଚ୍ଛି ହୋଇଲି ସେହିମତ । ଦେଖି ତୁମ୍ଭର ଏହି ଗତି ॥
ଯଦ୍ୟପି ଅଛୁ ମୋତେ ଆଶ । କୁତ୍ସିତ ସ୍ଥାନେ କର ବାସ ॥
ଏମନ୍ତ କହି ସିନ୍ଧୁଜେମା । ପୁଣି କାନ୍ଦଇ ଅଲକ୍ଷମା ॥
ଏ ବାକ୍ୟ ଶୁଣି ମହାଋଷି । ଚିନ୍ତାସାଗରେ ଗଲେ ଭାସି ॥
ହୃଦରେ ବିଚାରନ୍ତି ରହି । ଏ ଥିଲେ ଭଲଗତି ନାହିଁ ॥
ଯଣ ଆୟୁଶ ସୁତ ବିତ୍ତ । କ୍ଷଣେକେ କରିପାରେ ହତ ॥
ଏ ନାଶ ଥିବ ଯାର ଘରେ । ତାର ପ୍ରମାଦ କାହିଁ ଦୂରେ ॥
ସନ୍ନିଧେ ଥିବ ସର୍ବକାଦେ । ଏ ଧର୍ମ ଧ୍ୱଂସିଂସା ପ୍ରମାଦେ ॥
ଏ କୁଳ କଳଙ୍କିଣୀ ସଲ । ବେଳହୁଁ ଉପେକ୍ଷିଲେ ଭଲ ॥
ପୁରାଣେ କହୁଛନ୍ତି ମୁନି । କଳହା ସ୍ତ୍ରୀ ଶିଶୁ ଦୁର୍ବାଦିଣୀ ॥

ସ୍ୱାମୀକି ନନ୍ଦ ବନ୍ଦ ପରେ । ତାହାଙ୍କୁ ନ ରଖିବ ଘରେ ॥
ତେବେ ଉତ୍ପ୍ରୋଧ ଘରେ ରଖି । ପଶ୍ଚାତେ ହୁଏ ବଡ଼ ଦୁଃଖୀ ॥
ସକଳ ଧର୍ମ ନାଶ ଯାଇ । ଅନ୍ତେ ନରକ ଗତି ପାଇ ॥
ଏ କଥା ଜାଣଇ ମୁଁ ଭଲେ । କି ପ୍ରୟୋଜନ ଏଥୁ ଥିଲେ ॥
ସଦନେ ରଖି ନ ହେ ଗାଇ । ନିର୍ଜନେ ନବାସିବା ନେଇ ॥
ଏମନ୍ତ ଚାହିଁ ମହାମୁନି । ଅଲକ୍ଷମାକୁ ସଙ୍ଗେ ଘେନି ॥
ନେତେଦୁହେଁ ଦୂରେ ଦ୍ୱୀପାନ୍ତରେ । ଜନ ଅଗମ୍ୟ ବନଘୋରେ ॥
ଅଶ୍ୱତ୍ଥ ବୃକ୍ଷତଳେ ଯାଇ । ସେ ପତି ପତ୍ନୀ ଉଭହୋଇ ॥
ଦେଖ ବନ ଶନଶ୍ଚର ବାର । ଧର୍ମ ସୁମତି ମୁନିବର ॥

ଅଶ୍ୱତ୍ଥ ବୃକ୍ଷମୂଳେଽପିନ୍ନଲକ୍ଷ୍ମୀ ସ୍ୱପିତ୍ସଷଣଂ ।
ଆବାସ ସ୍ଥାନମାଲୋକ୍ୟ ଯାବନ୍ନାପ୍ୟାମ୍ୟହଂ ପୁନଃ ॥

ଅଲକ୍ଷମାକୁ ଛନ୍ଦ କହି । ଏଠାରେ ଥାଅ ତୁମ୍ଭେ ରହି ॥
ଚୋର ଶଂଧା ଯଦି ଅବା । ସେ କଥା ନିଶ୍ଚୟ କରିବା ॥
ଏବେ ତୁ ଏହିଠାରେ ରହ । ମନରେ ସଂଶୟ ନ ବାଅ ॥
ଭକ୍ଷ୍ୟ ପଦାର୍ଥ ତୋ ନିମନ୍ତେ । ଘେନି ମୁଁ ଆସିବି ତୁରିତେ ॥
ସ୍ୱାମୀ ବଚନେ ସିନ୍ଧୁ ସୁତା । ମନରୁ ଦୂର କରି ଚିନ୍ତା ॥
ଅଶ୍ୱତ୍ଥ ତରୁ ମୂଳେ ବସି । ସେଠାରୁ ଉଦ୍ଦାଳକ ଋଷି ॥
ନିଜ ଅଶ୍ରମେ ଯାଇ ମିଳି । ମନେ ଚିନ୍ତିଲେ ବନମାଳୀ ॥
କହଇ ମହାଦେବ ଦାସ । ଉଦ୍ଧିର କ୍ଷୀରୋଦ ନିବାସ ॥

ଇତି ଶ୍ରୀ ପଦ୍ମପୁରାଣେ ଉତ୍ତରଖଣ୍ଡେ କାର୍ତ୍ତିକ ମାହାତ୍ମ୍ୟେ ଅଲକ୍ଷ୍ମୀ ବନ ନିବାସେ ନାମ ଏକତ୍ରିଂଶୋଽଧ୍ୟାୟଃ ।

—✱—

# ଦ୍ୱାତ୍ରିଂଶ ଅଧ୍ୟାୟ

ପୃଥୁ ଉବାଚ

ସାପି କୋଧିତରେମ୍ମ୍ଳେ ଭର୍ତ୍ତ୍ରାଗମନୋତ୍ସୁକା ।
ଦୁଃଖିତା ନିବ୍ଦନସ୍ୟାନ୍ତେ ରୁଦନ୍ତୀ ଚ ପୁନଃ ପୁନଃ ॥

ହେ ମୁନିଜନ ଏବେ ଶୁଣ । ଅଲକ୍ଷ୍ମୀ କନ୍ୟା କର୍ମ ଗୁଣ ॥
ପିପ୍ପଳ ବୃକ୍ଷତଳେ ବସି । ସ୍ୱାମୀ ଆଗମ ଅଭିଳାଷୀ ॥
ନଷ୍ଟେ ଆସିବ ବୋଲି ଜାଣି । ଦଶଦିଗକୁ ଚାହିଁ ପୁଣି ॥
ଅନବରତେ ଦେଇ ଦୃଷ୍ଟି । ନ ଦେଖି ମନେ ମହା କଷ୍ଟି ॥
ଭୃଶାୟୁ ଧନ ବାଟ ଚାହିଁ । ଅତି ଆକୁଳ ତାର ଦେହି ॥
ନିରନ୍ତେ କରଇ ରୋଦନ । ଉଲ୍ଲୂକ ପ୍ରାୟେ ଘୋର ସ୍ୱନ ॥
ରୋଦନ କଲେ ଉଚ୍ଚସ୍ୱରେ । ଶବଦେ ଚତୁର୍ଦ୍ଦିଗ ପୂରେ ॥
ତରସ୍ତ ହୋଇଲେକେ ଶୁଣି । ବୈକୁଣ୍ଠ ପୁରେ କମଳମା ॥
ଶବଦ ଅନୁସରି କଣ୍ଠେ । ଜାଣିଲେ ନିଜ ଭଗ୍ନୀ ବନେ ॥
ନିରକ୍ଷ ହୋଇ କାନ୍ଦୁଅଛି । ଗୃହସ୍ଥ ତନ୍ତ ତାକୁ ଲେଛି ॥
ଏମନ୍ତ ଭାଳି ଦେବୀ ଚିତ୍ତେ । କହିଲେ ପ୍ରଭୁଙ୍କ ଅଗ୍ରତେ ॥
ହେ ନାଥ ଶୁଣ ସାବଧାନେ । ମୋ ଜ୍ୟେଷ୍ଠ ଭଗ୍ନୀ ଘୋରବନେ ॥
ସ୍ୱାମୀ ଛାଡ଼ିଲେ କର୍ମଦୋଷେ । ସଖା ସୋଦର ନାହିଁ ପାଶେ ॥
ଅନାଥ ହୋଇ ଘୋର ବନେ । କାନ୍ଦୁଅଛି ସେ ଦୁଃଖ ମନେ ॥
ତୁମ୍ଭେ ତା ସନ୍ନିଧିକୁ ଯାଇ । ଆଶ୍ୱାସି ରଖ ଭଲଠାଇଁ ॥
ଯେମନ୍ତେ ନ ପାଏ କଷଣ । ନୋହିଲେ ମୋର ପୁରେ ଆଣ ॥
ଏମନ୍ତେ କମଳା ବଚନେ । ଜଗତପତି ତୋଷମନେ ॥
ତକ୍ଷଣେ ଗରୁଡ଼ ଆରୋହି । ଅଲକ୍ଷ୍ମୀ କନ୍ୟା ଅଛି ଯହିଁ ॥
ସେଠାରେ ହୋଇଲେ ପ୍ରବେଶ । ଜଗନ୍ନାଥ ପୀତବାସ ॥
ଦିବ୍ୟ ସ୍ୱରୂପେ ତେଜ କର । ଦେଖି ଉଠିଲା ଦ୍ୱିଜନାରୀ ॥

ହେଧ ସମ୍ଭାଳି ଧୈର୍ଯ୍ୟ ବନ୍ଧ । ଚକ୍ଷୁ ଉହାଡ଼େ ଉଭା ହୋଇ ॥
ପ୍ରଭୁଙ୍କୁ ଦେଖି ମନେ ତୁଷ୍ଟି । ବଙ୍କ ବଦନେ ବଙ୍କ ଦୃଷ୍ଟି ॥
ତା ମନ ଜାଣି ଅନ୍ତର୍ଯ୍ୟାମି । ବଚନ କହୁଛନ୍ତି ସ୍ୱାମୀ ॥

ଶ୍ରୀକୃଷ୍ଣ ଉବାଚ

ବୋଲନ୍ତି ଶୁଣ ସିନ୍ଧୁଜେମା । ତୁମ୍ଭ କନିଷ୍ଠା ଭଗ୍ନୀ ରମା ॥
ମୋତେ ପେଷିଲେ ତୁମ୍ଭ ପାଶ । ତାର ପୁରକୁ ଯିବ ଆସ ॥
ସେ ପୁର ବଇକୁଣ୍ଠ ନାମ । ସର୍ବ ସମ୍ପଦ ସୁଖ ଧାମ ॥
ଅନେକ ତପ କରି ତପୀ । ନିସ୍କାମେ ମୋର ନାମ ଜପି ॥
ସାତ୍ତ୍ୱିକ ଭାବ ହେଲେ ଚିତ୍ତେ । ମୋ ରୂପ ଚିନ୍ତି ସର୍ବଭୂତେ ॥
ସୁଦୟା କରି ପ୍ରାଣୀଠାରେ । ବସନ୍ତି ଯାଇ ସେହି ପୁରେ ॥
ସେ ପୁରେ ମୋତେ ଦେଖି ତୋଷ । ଖଣ୍ଡନ୍ତି ଜନ୍ମ ମୃତ୍ୟୁ କ୍ଳେଶ ॥
ଭୁବନ ଏମନ୍ତ ଦୁର୍ଲଭ । ସୁକୃତି ଜନଙ୍କୁ ସୁଲଭ ॥
କଷ୍ଟତେ ଅଙ୍ଗେ ନାହିଁ ତ୍ରାସ । ତୁମ୍ଭେ ଚଳିଁକ ଯିବ ଆସ ॥
ତୁମ୍ଭ କନିଷ୍ଠା କମଳଳା । ବୈକୁଣ୍ଠପୁରେ ଠାକୁରାଣୀ ॥
ତାଙ୍କ ସଙ୍ଗତେ ଯେତେ ଦାସୀ । ଜଣଜଣଙ୍କେ ଗୁଣରାଶି ॥
ଅନେକ କାଳଯାଏ କହି । ବର୍ଣ୍ଣିହିଁ ନ ପାରିବ ବହି ॥
ଏମନ୍ତ ମହିମା ସେ ପୁର । ସୁର ମୁନିଙ୍କୁ ଅଗୋଚର ॥
ଚଳିଁକ ଯିବା ଶୁଭ ବେଗେ । କମ୍ପାଇ ଥିବ ବନ ଭାଗେ ॥
ବିଷ୍ଣୁ ବଚନେ ଯେ ଅଲକ୍ଷ୍ମୀ । ବୋଲଇ ଶୁଣ ଦେବସ୍ୱାମୀ ॥
ପୂର୍ବେ ଯେ ସୃଷ୍ଟି ଅନ୍ତକାଳେ । ସକଳ ଆତ୍ମା ଏକମେଳେ ॥
ତ୍ରିଗୁଣବନ୍ଧ ମୁକ୍ତ ହୋଇ । ରହିଲେ ତବ ଗର୍ଭେ ଯାଇ ॥
ସୁକୃତ ଯାକ ସଙ୍ଗେ ଗଲା । ଦୁଷ୍କୃତ ଭାଗ ଯେତେ ଥିଲା ॥
ସେ ସର୍ବ ପଙ୍କରୂପେ ପଡ଼ି । ପ୍ରଳୟ ଜଳେ ଥିଲା ବୁଡ଼ି ॥
ଏମନ୍ତ କେତେ କାଳ ଗଲା । ପୁଣି ତୋ ଲୀଳା ପ୍ରକାଶିଲା ॥

ତୋ ରଜଗୁଣେ ବ୍ରହ୍ମା ଜାତ । ସଞ୍ଜିଲ ଅଶେଷ ଜଗତ ॥
ଚର ଅଚର ମୂଳେ ଜୀବ । ସପରେ ଜାତ କଲ ସର୍ବ ॥
ପ୍ରଥମେ ଧର୍ମ ଉତ୍ପାଦିଲ । ପୂର୍ବେ ଯେ ପାପ ପଙ୍କେ ଥିଲ ॥
ସଂସାରେ ପ୍ରବର୍ତ୍ତି ନ ପାରି । ଲଜ୍ଜାରେ କନ୍ୟାରୂପ ଧରି ॥
ଜନକରାଜନ ପୁରେ ଜନ୍ମ । ତେଣୁ ମୋ ନାମ ଅଲକ୍ଷଣି ॥
ସୁଧର୍ମ ବୋଲି ଯେତେ କଥା । ମୋତେ ଲାଗଇ ବଡ଼ ବ୍ୟଥା ॥
ସୁସ୍ଥାନେ ନ ପାରଇ ରହି । କହିଲି ଶୁଣ ଭାବଗ୍ରାହୀ ॥
ଆବର ବଇକୁଣ୍ଠ ପୁର । ସେ ମୋ କନିଷ୍ଠା ଭଗ୍ନୀଘର ॥
ତହିଁକି ଯିବି ମୁଁ କେମନ୍ତେ । ତା ଶିରୀ ନ ସୋହାଇ ମୋତେ ॥
ତାର ସୁନ୍ଦର ରୂପ ଦେଖି । ମୋ ମନ ହେଉଥାଇ ଦୁଖି ॥
କେମନ୍ତେ ଥିବ ତାର ପାଶ । ଆବର ମୋର କର୍ମ ଦୋଷ ॥
ଲୋକେ ବୋଲନ୍ତି ଯାହା ଭଲ । ମୁହିଁ ଜାଣଇ ତାହା ସଲ ॥
ଏଥିକୁ ଶୁଣ ଦେବ ସ୍ୱାମୀ । ତୁମ୍ଭେ ଯେ ସର୍ବ ଅନ୍ତର୍ଯ୍ୟାମୀ ॥
ସକଳ ଜନ ମନ ଜାଣ । ମୋ କଥା କମାଇ ନ ଶୁଣ ॥
ଏବେ ମୋ ମନ ଅନୁସରି । ସ୍ଥାନ ବାଛିବ ନରହରି ॥
ମୋ ଭାବେ କରିବ ମୁଁ ରାଜ୍ୟ । ସ୍ୱାମୀ ସଙ୍ଗତେ ନାହିଁ କାର୍ଯ୍ୟ ॥
ଏ ବାକ୍ୟ ଶୁଣି ଚକ୍ରପାଣି । ଯେ ଯାହା ନିଜ କର୍ମ ଜାଣି ॥
ବୋଲନ୍ତି ଶୁଣ ଜ୍ୟେଷ୍ଠାବାଳୀ । ଯେବଣ ଘରେ ନିତ୍ୟ କଳି ॥
ତହିଁ ତୁ କରିଥିବୁ ବାସ । ଯେ ମିଥ୍ୟାଭାଷୀ କୁପୁରୁଷ ॥
ତାର କନ୍ଧରେ ଥିବୁ ବସି । ଯେ ପରଦାର ଅର୍ଥେ ଆସି ॥
ପର ନିନ୍ଦକ ପର ପୀଡ଼େ । ଇଷ୍ଟ ଦର୍ଶନେ ଦୁଃଖେ ପଡ଼େ ॥
ଅଙ୍ଗ ଅଶୁଚି ହୋଇଥାଇ । ଯେ ଦେବ ଦରଶନେ ଯାଇ ॥
ସ୍ନାନ ଭୋଜନ ମୋ ଭଜନେ । ଯେ ଭାଷେ ରସେ କୁବଚନେ ॥
ଚଣ୍ଡାଳେ ହେବ ସମ୍ଭାଷଣ । ଯେବେ ଅପାଙ୍କେ ମହାଦାନ ॥

ଯେ ପ୍ରୀତିହୀନ ଜନ ସଙ୍ଗେ । ତୁ ବସିଥିବୁ ତାର ଅଙ୍ଗେ ॥
ଜୁଆଡ଼ ଖେଳ ଯେତେ ରସ । ପର ସ୍ତ୍ରୀଙ୍କୁ ପରିହାସ ॥
ଜାଲ ଜନ୍ତ୍ରାଳ ବନ ଜୁଇ । ଜନ୍ତୁ ବିନାଶ ଯେତେ ଠାଇଁ ॥
ତାହା ଯେ ଦେଖୁଥିବ ତୋଷେ । ତୁ ଥିବୁ ତାର କନ୍ଧ ଦେଶେ ॥
ବଟ ଅଶ୍ୱତ୍ଥ ବେଲ ଲିମ୍ବ । ଧାତ୍ରୀ ତୁଳସୀ ଚୂତଦ୍ରୁମ ॥
ଏ ଆଦି ଦେବ ତରୁମାନ । ଯେ ଜନ କରିବ ଛେଦନ ॥
ତୁ ତାର ଅଙ୍ଗେ ବସିଥିବୁ । ତୋହର ଭାବ ତାଙ୍କୁ ଦେବୁ ॥
ଯେ ଜନ ଧର୍ମ ଶାସ୍ତ୍ର ନିନ୍ଦ । ଗୋ ପ୍ରଭୁ ସୁଜନ ନ ବନ୍ଦ ॥
ତ ତ ଜନମ ଗୁରୁପାଦେ । କପଟ ସ୍ନେହ ପାର ହୃଦେ ॥
ଏମନ୍ତ ଜନ କାନ୍ଧେ ବସି । ତାର ସୁକୃତ ଶୀଘ୍ର ଧ୍ୱଂସି ॥
ଆବର ଶୁଣ ଅଲକ୍ଷମୀ । ଯେ ନାରୀ ବିନା କାମେ ଭ୍ରମି ॥
ପରେ କହଇ ପରକଥା । ସ୍ୱାମୀ ସେନେହେଁ ପାଇ ବ୍ୟଥା ॥
ପୁଷ ଦୁହିତା ବନ୍ଧୁଜନେ । କଳି ଉଆନ୍ତି ଅନୁକ୍ଷଣେ ॥
ଗୁରୁଜନଙ୍କୁ ଯେହୁ ନିନ୍ଦ । ନିଚିତେ ହେଉଥାନ୍ତି ଧନ୍ଦ ॥
ଏମନ୍ତ ସ୍ତ୍ରୀଙ୍କ ସଙ୍ଗତେ । ତୁ ରମ ଅନୁରାଗ ଚିତ୍ତେ ॥
ରାତ୍ରେ ଅଶ୍ୱତ୍ଥ ବୃକ୍ଷ ତଳେ । ଭୂତ ପିଶାଚଗଣ ମେଳେ ॥
ଆନନ୍ଦେ ବଞ୍ଚିବୁ ରଜନୀ । ଯେବଣ ଦିନ ତୋତେ ମୁନି ॥
ଆଣି ଗୁଡ଼ିଲ ବନ ଘୋରେ । ନିବାସି ଗଲ ନିର୍ଜନରେ ॥
ବୋଲନ୍ତି ପ୍ରଭୁ ଚକ୍ରଧର । ତୋତେ ହୋଇଲା ଦୁଃଖଘୋର ॥
ଅଶ୍ୱତ୍ଥ ବୃକ୍ଷ ତଳେ ବସି । ଚିନ୍ତା ସାଗରେ ଗଲୁ ଭାସି ॥
ଆମ୍ଭେ ପ୍ରସନ୍ନ ହେଲୁ ଏବେ । ଆଉ କ ଦୁଃଖ ଥିବ ତେବେ ॥
ଆଜହୁଁ ଶନିବାର ଦିନ । ପୂଜା କରିବେ ମୋତେ ଜନ ॥
ଅଶ୍ୱତ୍ଥ ବୃକ୍ଷ ମୋ ସ୍ୱରୂପୀ । ସ୍ପର୍ଶନେ ହୋଇବ ନିଷ୍ପାପୀ ॥
ଦର୍ଶନେ ବିଘ୍ନ ଯିବ ନାଶ । ଅନ୍ତେ ତା ବଇକୁଣ୍ଠେ ବାସ ॥

ଲଭିବେ ଅକ୍ଷୟ ମୁକତି । ଯେ ଶୁଣିବାରେ ମୋ ଭକତି ॥
ତୁ ଯେ ସେବନ ମୋ ସନ୍ନିଧି । ପୂଜା ପାଇବୁ ଅବରୋଧି ॥
କ୍ଷୁଧା ପାଇବୁ ତୋର କାୟେ । ପୁଣି ସପତ ଦିନଯାଏ ॥
ସଂସାରେ ଭ୍ରମୁଥିବୁ ସୁଖେ । ଅଶ୍ୱତ୍ଥ ତଳେ ନିଶ ମୁଖେ ॥
ପ୍ରେତଗଣଙ୍କ ମେଳେ ଥିବୁ । ତାହାଙ୍କ ଗତି ଆଚରିବୁ ॥
ଯେ ଜନ ବୃକ୍ଷରାଜ ମୂଳେ । ବସିବ ଯାଇ ସନ୍ଧ୍ୟାକାଳେ ॥
ତୁ ବିଶ୍ରାମିବୁ ତା ଶରୀରେ । ସେ ଦୁଃଖୀ ହେବ ଇହପରେ ॥
ଏମନ୍ତ କହି ବ୍ରହ୍ମରଷି । ଖଗ ଆସନେ ଯାଇ ବସି ॥
ନିଜ ଗୃହକୁ କଲେ ବିଜେ । ଘେନି ବାନ୍ଧବ ଦେବରାଜେ ॥
କହନ୍ତି ସୂତ ମୁନିବର । ଏ ହେତୁ ଅଶ୍ୱତ୍ଥ ସ୍ଥାବର ॥
ରଜନୀକାଳେ ଅସ୍ପରଶ । ପୂର୍ବେ ଯେ ଅଛି ତାର ଦୋଷ ॥
ତେଣୁ ଆଦିତ୍ୟବାର ଦିନେ । ନ ଛୁଇଁ ବ୍ରହ୍ମାଙ୍କ ବଚନେ ॥
ଏ କଥା ଅନ୍ୟ ଶାସ୍ତ୍ର ଯୋଗେ । କହିଅଛି ଯେ ତୁମ୍ଭ ଆଗେ ॥
ନିଶ୍ଚେ ସର୍ବଦା ଦିବା ନିଶି । ପିପଳ ଗ୍ରୁମ୍ଭାରେ ନ ବସି ॥
ଯଦ୍ୟପି ବସିବ ଅଜ୍ଞାନେ । ପବିତ୍ର ହେବ ହୋମଦାନେ ॥
ଏ କଥା ସର୍ବ ଶାସ୍ତ୍ରେ ମାନ । କହନ୍ତି ସୂତ ମହାମୁନ ॥
ଏ ପଦ୍ମପୁରାଣ ବିଧାନେ । କହିଲି କାର୍ତ୍ତିକ ବର୍ଣ୍ଣନେ ॥
ଉତ୍ତରଖଣ୍ଡେ ଧର୍ମବାଣୀ । ଯେ ତିନି ଲୋକରେ ଚଳଣି ॥
ଭବ ଭବାନୀ ବିଷ୍ଣୁ ବିଧି । ଏ ଚାରି ବଚନ ପ୍ରସିଦ୍ଧି ॥
ପବିତ୍ର ପୁରାତନ ବାଣୀ । ଯେ ଭଣେ ଅବା କର୍ଣ୍ଣେ ଶୁଣି ॥
ସେ ପ୍ରାଣିମାନଙ୍କର ଗତି । କେତେ କହିବା ଫଳଶ୍ରୁତି ॥
ଯେ ଗୃହେ ଆଦ୍ୟ ପ୍ରାନ୍ତ କରି । କାର୍ତ୍ତିକ ବ୍ରତ ଫଳସରି ॥
ସାଗର ଆଦି ତୀର୍ଥ ଧର୍ମ । ବଦରୀ ଆଦି ବନାଶ୍ରମ ॥
ଦ୍ୱାରକା ଆଦି କ୍ଷେତ୍ରସ୍ଥାନେ । ଗମିବ ବିଷ୍ଣୁ ଦରଶନେ ॥

ଯଜ୍ଞାଦି ବ୍ରତ ଫଳ ଯେତେ । ଯାବତ କାର୍ତ୍ତି ଜଳକ୍ରୀଡେ ॥
ଅଶେଷ ଦାନ ମାନ୍ୟ ଫଳ । ସକଳ ଧର୍ମ କର ଠୁଳ ॥
ଲେଖିବ ଦ୍ୱିଗୁଣ ପ୍ରମାଣେ । କ ତୁଲ୍ୟ ଶ୍ରୀପଦ୍ମପୁରାଣେ ॥
ବଢେଷେ ବଂଶ ବର୍ଦ୍ଧମାନ । ଉତ୍ତମ ବିଦ୍ୟା ଧନ ଜନ ॥
କାର୍ତ୍ତିକ ମହିମା ଯେ ଶୁଣି । ଶ୍ରବଣେ ସର୍ବ ଧର୍ମ ଜାଣି ॥
ହୃଦେ ରଖିଲେ ଯତ୍ନ କରି । ଅଶେଷ ଜନ୍ମ ପାପ ହରି ॥
ବଢ଼ଇ ଯଶ ଆୟୁ ଧର୍ମ । ଶିଷ୍ୟ ସମ୍ପଦ ଶୁଭକର୍ମ ॥
ବିଶେଷ ହୁଏ ଧର୍ମବାନ । ଉତ୍ତମ ଜ୍ଞାନ ଧନ ଜନ ॥
ଅବଶ୍ୟ ଲଭଇ ଏତେକ । କେବେହେଁ ନ ଲଗେ ପାତକ ॥
ନଳିନୀ ଜଳେ ଯେହ୍ନେ ଆପ । ପଦ୍ମପୁରାଣେ ତେହ୍ନେ ପାପ ॥
ଶରୀରେ ପୀଡ଼ା ନ ପାଅଇ । ଶ୍ରବଣ ମାତ୍ରେ ଗୁଡ଼ି ଯାଇ ॥
ନାନାଦି ତାପ କ୍ଳେଶ ବ୍ୟାଧି । ଦୁଃସ୍ୱପ୍ନ ମନ୍ଦଗୁଣ ବୁଦ୍ଧି ॥
ସର୍ପ ବିଷ ତ ଗ୍ରହ ଦୋଷ । ରାଜ ତସ୍କର୍ଯ୍ୟ ରିପୁ ତ୍ରାସ ॥
ଅଗ୍ନି ଉପୃତ ବ୍ୟାଘ୍ର ଭୟ । ସର୍ବ ଦୁରିତ ଯାଇ କ୍ଷୟ ॥
ଜୀବନ୍ତେ ସୁଖୀ ହୋଇଥାଇ । ଅନ୍ତେ ଗୋବିନ୍ଦପୁରେ ଯାଇ ॥
ବିଷ୍ଣୁର ଅତି ପ୍ରିୟତମେ । ରହନ୍ତି ପାରିଷଦଗଣେ ॥
କହିଲେ ସୂତ ମହାଜ୍ଞାନୀ । ଶୁଣି ସନ୍ତୋଷ ସର୍ବ ମୁନି ॥
ଯେବନଲେ ଧର୍ମ ଉପଦେଶ । କାର୍ତ୍ତିକ ମହିମା ବିଶେଷ ॥
ଯେ ଧର୍ମ ତିନିଲୋକରେ ମଣ୍ଡି । ଅନେକ ଜନ୍ମ ପାପ ଖଣ୍ଡି ॥
ବିଷ୍ଣୁର ଅତି ପ୍ରିୟ ବ୍ରତ । ମହା କାର୍ତ୍ତିକ ଯଥାକୃତ୍ୟ ॥
ଅଶେଷ ଜନଙ୍କ କାରଣେ । ମୁନି ଯେ କହିଲେ ପୁରାଣେ ॥
ଏ ସାର ପ୍ରତିପାଳେ ଯେତୁ । ତାହାଙ୍କ ଭାଗ୍ୟ କେବା କହୁ ॥
ଅନ୍ତେ ଉତ୍ତମ ଗତି ପାଇ । ବୈକୁଣ୍ଠ ପୁରେ ବସେ ଯାଇଁ ॥
ସେ ଧର୍ମ ଭାଗ୍ୟ ଉପଦେଶ । ବର୍ଣ୍ଣିଲେ ମହାଦେବ ଦାସ ॥

ଏ ଗ୍ରନ୍ଥର ଯୋଗ୍ୟ ହେବ କାହିଁ । କେବଳ କୃପା ଭକ୍ତଗ୍ରାହ୍ୟ ॥
ତେଣୁ ଏ ଗ୍ରନ୍ଥ ପରକାଶ । ସୁଜନେ ନ ଦେଖିବ ଦୋଷ ॥

ଇତି ଶ୍ରୀ ପଦ୍ମପୁରାଣେ ଉତ୍ତରଖଣ୍ଡେ କାର୍ତ୍ତିକ ମାହାତ୍ମ୍ୟେ
ଅଲକ୍ଷ୍ମୀ ସ୍ଥାନ ନିରୂପଣେ ଦ୍ରବ୍ୟଗୁଣ ଦୋଷ
ବର୍ଣ୍ଣନେ ନାମ ଦ୍ୱାତ୍ରିଂଶୋଽଧ୍ୟାୟଃ ।




ମୁଦ୍ରାକର :—ଶ୍ରୀ ଲକ୍ଷ୍ମୀଧର ଦାସ, ଦୁର୍ଗା ପ୍ରେସ,
ଖଟବିନ୍ ସାହି, କଟକ-୧